# ଇତିହାସ ପୃଷ୍ଠାରେ ପିପିଲି

ପ୍ରଫେସର ଜଗନ୍ନାଥ ପଟ୍ଟନାୟକ, ଏମ୍.ଏ., ଡି.ଲିଟ୍.

ସହଯୋଗୀ

ଶ୍ରୀ ରମେଶ ଚନ୍ଦ୍ର ମହାପାତ୍ର,

ଏମ୍.ଏ.,ଡିପ୍ଲୋମା ଇନ୍ ଜର୍ଣ୍ଣାଲିଜିମ୍

ପ୍ରକାଶକ

ଶ୍ରୀ ଜନାର୍ଦ୍ଧନ ପଟ୍ଟନାୟକ

ଦଣ୍ଡବାଟୀ, ଦାଣ୍ଡମୁକୁନ୍ଦପୁର, ପିପିଲି



Digitized by srujanika@gmail.com

# ଇତିହାସ ପୃଷ୍ଠାରେ ପିପିଲି

ଲେଖକ:
ପ୍ରଫେସର ଜଗନ୍ନାଥ ପଟ୍ଟନାୟକ
ଏମ.ଏ.,ଡ଼ି.ଲିଟ୍.

ସହଯୋଗୀ:
ରମେଶ ଚନ୍ଦ୍ର ମହାପାତ୍ର
ଏମ୍.ଏ,ଡିପ୍ଲୋମା ଇନ୍ ଜର୍ଣ୍ଣାଲିଜିମ୍

ପ୍ରକାଶକ:
ଜନାର୍ଦ୍ଦନ ପଟ୍ଟନାୟକ
ମୁ:ଦଣ୍ଡବାଟି, ଦାଣ୍ଡମୁକୁନ୍ଦପୁର

ପ୍ରଚ୍ଛଦ:
ସିଦ୍ଧାର୍ଥ ମହାଳି

ପ୍ରଥମ ପ୍ରକାଶ:
ଜୁନ୍, ୧୯୯୩

ଲେଜର ସେଟିଂ:
ଲିଜେଣ୍ଡ, ଭୁବନେଶ୍ୱର

ମୁଦ୍ରଣ:
ଓରିପ୍ରିଣ୍ଟ ପ୍ରା. ଲିଃ.,ଭୁବନେଶ୍ୱର

ସର୍ବସ୍ୱତ୍ୱ ସଂରକ୍ଷିତ:
ପିପିଲି ସାଂସ୍କୃତିକ ପରିଷଦ

ମୂଲ୍ୟ:
୪୦ ଟଙ୍କା

**ITIHASA PRUSTHARE PIPILI**

Author:
**Prof.Jagannath Pattanayak**

Associate:
**Ramesh Chandra Mohapatra**

Publisher:
**Janardan Pattanayak**

Cover Design:
**Siddhartha Mahali**

First Edition:
**June, 1993**

Laser set at:
**Legend, Bhubaneswar**

Printed at:
**Oriprint Pvt. Ltd., Bhubaneswar**

Copyright reserved by:
**Pipili Sanskrutika Parishad**

Price: Rs.40/-
**RUPEES FORTY ONLY**



*Digitized by srujanika@gmail.com*

# ପୁସ୍ତକ ପ୍ରଣୟନ ସମ୍ବନ୍ଧରେ ପଦେ

ସେ ଦିନ ଥିଲା ୧୯୯୧ ମସିହା ଏପ୍ରିଲ ପହିଲା। ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସେହି ଐତିହାସିକ ଦିବସ। ଏହି ଉପଲକ୍ଷେ ପିପିଲି ସାଂସ୍କୃତିକ ପରିଷଦ ଆନୁକୂଲ୍ୟରେ ଏକ ଉତ୍ସବର ଆୟୋଜନ କରାଯାଇଥିଲା ପିପିଲିରେ। ଉକ୍ତ ଉତ୍ସବକୁ ମୁଖ୍ୟ ଅତିଥି ଭାବେ ଓଡ଼ିଶା ବିଧାନସଭାର ମାନ୍ୟବର ବାଚସ୍ପତି ଯୁଧିଷ୍ଠିର ଦାସ, ସମ୍ମାନିତ ଅତିଥି ଭାବରେ ଓଡ଼ିଶାର ପୂର୍ତ୍ତ ଓ ନଗର ଉନ୍ନୟନ ବିଭାଗର ମାନ୍ୟବର ମନ୍ତ୍ରୀ ନଳିନୀକାନ୍ତ ମହାନ୍ତି ଓ ମୁଖ୍ୟବକ୍ତା ଭାବେ ମୋତେ ନିମନ୍ତ୍ରଣ କରା ଯାଇଥାଏ। ସାଧାରଣ ସଭା ଆରମ୍ଭ ହେଲା। ପୌରୋହିତ୍ୟ କରୁଥାଆନ୍ତି ପିପିଲି-ଡ଼େଲାଙ୍ଗ ନିର୍ବାଚନ ମଣ୍ଡଳୀର ଯୁବ ବିଧାୟକ ତଥା ଜନତା ଦଳର ଉପମୁଖ୍ୟ ସଚେତକ ପ୍ରଦୀପ ମହାରଥୀ। ପ୍ରାୟ ୧୦,୦୦୦ ଲୋକଙ୍କର ସମାବେଶ। ବେଶ୍ ଶାନ୍ତି ଶୃଙ୍ଖଳାର ସହ ସଭାକାର୍ଯ୍ୟ ଚାଲିଥାଏ। ଶୃଙ୍ଖଳା ରକ୍ଷା କରିବା ପାଇଁ ମହାରଥୀ ଶ୍ରୋତାମାନଙ୍କୁ ସଚେତନ କରାଉଥାଆନ୍ତି। ତାଙ୍କର ମଧ୍ୟ ଉପସ୍ଥିତ ଜନତାଙ୍କ ଉପରେ ସନ୍ତୋଷଜନକ ପ୍ରଭାବ ରହିଥିବାର ଦେଖା ଯାଇଥିଲା। ପ୍ରଥମେ ପିପିଲି ସାଂସ୍କୃତିକ ପରିଷଦର ସମ୍ପାଦକ ରମେଶ ଚନ୍ଦ୍ର ମହାପାତ୍ର ବିବରଣୀ ପାଠ କଲେ। ସେଥିରୁ ଯାହା ଜାଣିଲି ତା'ର ଆଭିମୁଖ୍ୟ ସୁଦୂର ପ୍ରସାରୀ। ତନ୍ମଧ୍ୟରୁ ପିପିଲିର ସାଂସ୍କୃତିକ ବିଭବକୁ ଋଦ୍ଧିମନ୍ତ କରିବା ଏହାର ଅନ୍ୟତମ ଲକ୍ଷ୍ୟ। ପରେ ପରେ କାଶୀନାଥ ନାୟକ ଉପସ୍ଥିତ ଅତିଥିଙ୍କର ପରିଚୟ ପ୍ରଦାନ କଲେ। ମୋ ସମ୍ପର୍କରେ ବହୁ କଥା କହିଲେ, ଯେଉଁଥିପାଇଁ ମୁଁ ଯୋଗ୍ୟ ନଥିଲେ ମଧ୍ୟ ନିଜକୁ ଗୌରବାନ୍ୱିତ ମନେ କଲି। ତା'ପରେ ଭାଷଣ ଆରମ୍ଭ ହେଲା। ମୁଖ୍ୟବକ୍ତା ଭାବରେ ପ୍ରଥମେ ପାଳି ପଡ଼ିଲା ମୋର। ଆଶାତୀତ ସଂଖ୍ୟକ ଜନତାଙ୍କର ସମାବେଶ, କାଶୀନାଥ ବାବୁଙ୍କର ଆବେଗମୟ ପରିଚୟ ଓ ପିପିଲି ସାଂସ୍କୃତିକ ପରିଷଦ ସମ୍ପାଦକଙ୍କର ଗୁଣାତ୍ମକ ବିବରଣୀରେ ଭାବ ବିହ୍ୱଳ ହୋଇ ଭାଷଣ ପ୍ରସଙ୍ଗରେ କହି ପକାଇଲି, "ପିପିଲି ଉପରେ ଏକ ବହି ଲେଖି ଏହାର ଗୌରବମୟ ଐତିହ୍ୟକୁ ଲୋକ ଲୋଚନକୁ ଆଣିବି।" ଏକଥା ଉପସ୍ଥିତ ଜନତା କରତାଳି ଦେଇ ସାଦରେ ଗ୍ରହଣ କଲେ। ମୁଁ ଆହୁରି ଉତ୍ଫୁଲ୍ଲିତ ହୋଇ ଉଠିଲି। ଶ୍ରୋତାମାନେ ବକ୍ତାଙ୍କର ଭାଷଣ ଶୁଣି କରତାଳି ଦେଲେ ବକ୍ତା ବେଶ ଉତ୍ସାହିତ ଓ ଆନନ୍ଦିତ



Digitized by srujanika@gmail.com

ହୋଇଥାଏ । ମାତ୍ର ପ୍ରକୃତିସ୍ଥ ହେବା ପରେ ମୋର ଚିନ୍ତା ରାଜ୍ୟରେ ବେଶ୍ ଆଲୋଡ଼ନ ସୃଷ୍ଟି ହେଲା । ଭାବିଲି, କହି ତ ଦେଲି, ଏହା କେତେ ଦୂର ସମ୍ଭବପର ହେବ, ମୁଁ ତ ଏ ଅଞ୍ଚଳର ଲୋକ ନୁହେଁ । ସ୍ଥାନୀୟ ଲୋକଙ୍କର ସହାୟତା ନ ନେଲେ ତ ପ୍ରତିଶ୍ରୁତି ପାଣିରେ ଗାର ହେବ । ଉପସ୍ଥିତ ଜନତା ମୋତେ ନିନ୍ଦା କରିବେ । ଏହିପରି ଏକ ଦ୍ୱନ୍ଦ୍ୱ ମଧ୍ୟରେ ରହି ମନଟା ଘାଣ୍ଟି ହେଉଥିବା ସମୟରେ ସମ୍ପାଦକ ରମେଶ ଚନ୍ଦ୍ର ମହାପାତ୍ର, କାଶୀନାଥ ନାୟକ ଓ ସର୍ବୋପରି ପ୍ରଦୀପ ମହାରଥୀ ମୋ ନିକଟକୁ ଆସି ତଥ୍ୟ ଯୋଗାଇବା ଦିଗରେ ସବୁ ପ୍ରକାର ସହାୟତା ଦେବେ ବୋଲି ପ୍ରତିଶ୍ରୁତି ଦେବାରୁ କିଛିଟା ଆଶ୍ୱସ୍ତି ଅନୁଭବ କଲି । ଭୁବନେଶ୍ୱର ଫେରିଲି, ଏକ ମାତ୍ର ଚିନ୍ତା ତଥ୍ୟ ସଂଗ୍ରହ କରାଯିବ କିପରି ? ତା' ପର ଦିନ ରମେଶ ବାବୁ ମୋତେ ଦେଖା କରିବାରୁ ସାଥୀ ହୋଇ ପ୍ରଦୀପ ମହାରଥୀଙ୍କ ବସାକୁ ଗଲୁ । ଭାବୁଥାଏ ସେ ରାଜନୀତି କରୁଥିବା ଜଣେ ନେତା । କେତେ ନେତାଙ୍କ ସହିତ ମୁଁ ମିଶିଛି । କହନ୍ତି ଗୋଟିଏ ପ୍ରକାର, କରନ୍ତି ଅନ୍ୟ ପ୍ରକାର । ଖରାଦିନେ ଛତାଟି ଧାର ଦେଇ ବର୍ଷା ଦିନେ ନେଇ ଯାଆନ୍ତି । ଅବଶ୍ୟ ସବୁ ଯେ ସେହି ପ୍ରକାର ତାହା ନୁହେଁ । ବହୁ ନିଷ୍ଠାପନ୍ନ ବ୍ୟକ୍ତି ମଧ୍ୟ ଅଛନ୍ତି । ମହାରଥୀଙ୍କ ସହ ଆଲୋଚନା କରିବା ପରେ ଜାଣିଲି ଯେ ପୁସ୍ତକ ପ୍ରକାଶନ ଦିଗରେ ତାଙ୍କର ଆନ୍ତରିକତା ଅଛି । ବିଶେଷତଃ ତାଙ୍କର ବଗିଚାରେ ବୁଲି କଥାବାର୍ତ୍ତା କରୁଥିବା ସମୟରେ ସେ କହିଲେ ଏ ସ୍ଥାନଟି ପ୍ରଥମେ ଶୁଷ୍କ ମରୁଭୂମି ପରି ଦିଶୁଥିଲା । ମାତ୍ର ବର୍ତ୍ତମାନ କେତେ ସୁନ୍ଦର ଫୁଲ ଫୁଟି ସେହି ସ୍ଥାନ ହସି ଉଠୁଛି । ସେହି ପ୍ରସଙ୍ଗରେ ସେ ମଧ୍ୟ କହିଥିଲେ,"ମୁଁ ଯଦି ନିଜ ବାସସ୍ଥାନ ବଗିଚାର ଭୂମିରେ ଫୁଲ ଫୁଟାଇ ନ ପାରିଲି ମୋ ନିର୍ବାଚନ ମଣ୍ଡଳୀ ଲୋକଙ୍କର ଶୁଖିଲା ମୁହଁରେ ହସ ଫୁଟାଇ ପାରିବି କିମିତି ?" ଏ କଥା ମୋ ମନକୁ ବେଶ୍ ଛୁଇଁଲା । ମୁଁ ମଧ୍ୟ ଦେଖିଲି ପିପିଲି-ଡେଲାଙ୍ଗ ଅଞ୍ଚଳର ଗାଁ ଗାଁରେ ବୁଲିବା ମୂଳରେ ତାଙ୍କର ପ୍ରୋତ୍ସାହନ ଓ ସହାୟତା ନିହିତ । ଯାତାୟତ କରିବା ଓ ବିଭିନ୍ନ ସ୍ଥାନ ବୁଲାଇବାର ଦାୟିତ୍ୱ ମହାରଥୀବାବୁ ବହନ କଲେ । ମାତ୍ର ମୋ ପାଖେ ସଦା ସର୍ବଦା ରହିଥାନ୍ତି ରମେଶ ଚନ୍ଦ୍ର ମହାପାତ୍ର ଓ କାଶୀନାଥ ନାୟକ । ଅନ୍ୟ ଯେଉଁମାନେ ଏ ଦିଗରେ ସହାୟତା ଦେଇଛନ୍ତି ତନ୍ମଧ୍ୟରୁ ଜନାର୍ଦ୍ଦନ ପଟ୍ଟନାୟକ, ହାଇଦରବାବୁ, ନଟବର ଚୌଧୁରୀ, କୃଷ୍ଣଚନ୍ଦ୍ର ପୁଷ୍ପାଳକ ଓ ରାଜଧାନୀ କଲେଜ ଇତିହାସ ବିଭାଗର ଅଧ୍ୟାପକ ଡକ୍ଟର ହେମନ୍ତ କୁମାର ପରିଡ଼ାଙ୍କର ନାମ ଉଲ୍ଲେଖଯୋଗ୍ୟ । ତା'ପରେ ଅନ୍ୟ ଏକ ପ୍ରଶ୍ନ ଉଠିଲା ବହିଟି ଛପାଇବେ କିଏ ?



Digitized by srujanika@gmail.com

ସମସ୍ତଙ୍କ ଠାରେ ବାବୁଜିବାବୁ ନାମରେ ପରିଚିତ ଜିତେନ୍ଦ୍ରିୟ ପଟ୍ଟନାୟକଙ୍କ ସହ ଦିନେ ସାକ୍ଷାତ ହେଲା କଳ୍ପନାସ୍ଥିତ ପଟ୍ଟନାୟକ୍ ଗ୍ୟାରେଜ୍‌ରେ। ସେ ହେଉଛନ୍ତି ସେହି ଗ୍ୟାରେଜ୍‌ର ମାଲିକ ଓ ପିପିଲି ଥାନା ଦଣ୍ଡବାଟୀ ଗ୍ରାମର ଅଧିବାସୀ। କଥା ପ୍ରସଙ୍ଗରେ ତାଙ୍କୁ କହିଲି ତାଙ୍କ ଅଞ୍ଚଳର ଐତିହ୍ୟ ଓ ସଂସ୍କୃତି ଉପରେ ଏକ ପୁସ୍ତକ ପ୍ରଣୟନ କରାଯାଉଛି। ତାଙ୍କ ବାପା ଏହାର ପ୍ରକାଶକ ହେଲେ ଖୁବ୍ ଭଲ ହୁଅନ୍ତା। ତାଙ୍କ ବାପା ଶ୍ରୀଯୁକ୍ତ ଜନାର୍ଦ୍ଦନ ପଟ୍ଟନାୟକଙ୍କ ସହିତ ମୋର ମଧ୍ୟ ପରିଚୟ ଥାଏ। ଜଣେ ଧର୍ମପରାୟଣ ବ୍ୟକ୍ତି, ମିଷ୍ଟଭାଷୀ ଓ ପରୋପକାରୀ ଭାବେ ସେ ବେଶ୍ ଜଣାଶୁଣା। ଆମେ ମଧ୍ୟ ବହୁ ସମୟ ବସି ସୁଖ ଦୁଃଖ ଆଲୋଚନା କରୁ। ମୁଁ ଭାବିଲି ଏପରି ଏକ ଆଦର୍ଶ ଚରିତ୍ରର ବ୍ୟକ୍ତି ପୁସ୍ତକଟିକୁ ପ୍ରକାଶ କଲେ ସବୁ ଦିଗରୁ ତାହା ଶୁଭଙ୍କରୀ ହେବ। ସେ ମଧ୍ୟ ରାଜି ହୋଇଗଲେ।

ସବୁ ଠିକ୍ ହୋଇଗଲା ସତ; ମାତ୍ର ପୁସ୍ତକ ପ୍ରଣୟନ ଦିଗରେ ମୁଁ ବିଶେଷ କିଛି ଅଗ୍ରଗତି କରି ପାରିଲି ନାହିଁ। ଆଞ୍ଚଳିକ ଇତିହାସକୁ ଲୋକଲୋଚନକୁ ଆଣିବା ଏହି ପୁସ୍ତକ ପ୍ରଣୟନର ମୁଖ୍ୟ ଉଦ୍ଦେଶ୍ୟ ହୋଇଥିବାରୁ ସେ ସମ୍ପର୍କରେ ସଂଗୃହୀତ ତଥ୍ୟକୁ ଐତିହାସିକ ପଟ୍ଟଭୂମିରେ କ୍ରମାନ୍ୱୟରେ ସଜାଇ ଲେଖିବା ଏତେ ସହଜସାଧ୍ୟ ନଥିଲା। ସାଧାରଣରେ ଓଡ଼ିଶାର ବିଭିନ୍ନ ରାଜବଂଶ, ବିଦ୍ରୋହ, ବାହ୍ୟଶତ୍ରୁଙ୍କର ରାଜତ୍ୱ ଓ ସ୍ୱାଧୀନତା ସଂଗ୍ରାମର କାହାଣୀ ଆଦି ସିନା ଲେଖା ଯାଇଛି; ମାତ୍ର ପିପିଲି ଭୂଖଣ୍ଡର ଇତିହାସ ସେଥିରୁ ମିଳିବ ବା କାହିଁକି? ଅବଶ୍ୟ ପିପିଲିରେ ସଘଟିତ କେତୋଟି ଘଟଣା ଯେ ସେଥିରେ ସ୍ଥାନ ନପାଇଛି ତା' ନୁହେଁ, ମାତ୍ର ତାହା କେତୋଟି ବାକ୍ୟ ମଧ୍ୟରେ ସୀମିତ। ତେଣୁ ସେହି ଅଞ୍ଚଳର ବହୁ ବ୍ୟକ୍ତିଙ୍କୁ ସାକ୍ଷାତ କରି ସେମାନଙ୍କ ନିକଟରୁ ତଥ୍ୟ ସଂଗ୍ରହ କଲି। ଜନଶ୍ରୁତି, ପ୍ରକ୍ଷିପ୍ତି ଓ କିମ୍ବଦନ୍ତୀ ସଂଗ୍ରହ କରିଛି। ମାତ୍ର ସେସବୁକୁ ଅନୁଶୀଳନ, ପର୍ଯ୍ୟାଲୋଚନା, ପରୀକ୍ଷା ନିରୀକ୍ଷା କରି ତା' ମଧ୍ୟରୁ ଯାହା ସମ୍ଭାବ୍ୟ ଓ ଯୁକ୍ତିଯୁକ୍ତ ତାହା ଗ୍ରହଣ କରିଛି। ସେଥିପାଇଁ ପୁସ୍ତକଟିକୁ ସମାପ୍ତ କରିବାରେ ବିଳମ୍ୱ ଘଟିଲା। ନାନା କାର୍ଯ୍ୟରେ ବ୍ୟସ୍ତ ରହି ପୁସ୍ତକ ପ୍ରଣୟନ ପାଇଁ ଯେତିକି ସମୟ ଦେବାର କଥା ତାହା ମଧ୍ୟ ଦେଇ ପାରିଲି ନାହିଁ। ସେ ଯାହାହେଉ ପରିଶେଷରେ ପ୍ରଣୟନ କାର୍ଯ୍ୟର ମୁଣ୍ଡି ମରିଲା।

'ଉପକ୍ରମଣିକା' ଠାରୁ ଆରମ୍ଭ କରି 'ପିପିଲିର କୃତୀ ସନ୍ତାନ' ପର୍ଯ୍ୟନ୍ତ ପୁସ୍ତକଟିରେ ୯ଟି ଅଧ୍ୟାୟ ସନ୍ନିବେଶିତ। ଏଥିରେ ପ୍ରାଗ୍‌ଐତିହାସିକ ଯୁଗରୁ ୧୯୯୩ଖ୍ରୀ. ପର୍ଯ୍ୟନ୍ତ ପିପିଲି ଭୂଖଣ୍ଡର ରାଜନୈତିକ ଇତିହାସ, ଅର୍ଥନୈତିକ ଐତିହ୍ୟ, ସାଂସ୍କୃତିକ



Digitized by srujanika@gmail.com

ତଥା ପ୍ରତ୍ନତାତ୍ତ୍ୱିକ ବିଭବ ଆଦି ବିଷୟରେ ଆଲୋକପାତ କରାଯାଇଛି। ସମ୍ପୃକ୍ତ ଅଧ୍ୟାୟରେ ଓଡ଼ିଶାର ତତ୍କାଳୀନ ଇତିହାସ ବିଷୟରେ ମଧ୍ୟ ସୂଚନା ଦିଆଯାଇଛି। ଏ ସମ୍ପର୍କରେ ଅଧିକ ଜାଣିବା ପାଇଁ ଆବଶ୍ୟକ ସ୍ଥଳେ ପାଦଟୀକା ଦେଇଛି। ଆଞ୍ଚଳିକ ବସ୍ତୁ ଠିକ୍ ଭାବରେ ଉପସ୍ଥାପନ କରାଯାଇଛି କି ନାହିଁ ତାହା ଦେଖିବା ପାଇଁ ରମେଶ ଚନ୍ଦ୍ର ମହାପାତ୍ର ଓ କାଶୀନାଥ ନାୟକଙ୍କୁ ଦାୟିତ୍ୱ ଦେଇଛି। ପୁସ୍ତକଟିରେ ତଥ୍ୟଭିତ୍ତିକ ତ୍ରୁଟି ଯେପରି ରହି ନଯାଏ ସେଦିଗରେ ଯଥାସମ୍ଭବ ଚେଷ୍ଟା କରାଯାଇଛି। କିନ୍ତୁ ଯଦି କୌଣସି ସ୍ଥାନରେ କିଛି ଅନିଚ୍ଛାକୃତ ତ୍ରୁଟି ପରିଲକ୍ଷିତ ହୁଏ ତେବେ ପରବର୍ତ୍ତୀ ସଂସ୍କରଣରେ ଏହାର ମାର୍ଜନା କରାଯିବ। ମୋଟ ଉପରେ ଏହାକୁ ଏକ ଗବେଷଣା ପ୍ରସୂତ ପୁସ୍ତକର ରୂପ ଦେବା ପାଇଁ ଯତ୍ନବାନ ହୋଇଛି। ଫୁଲର ମହକ ହିଁ ଫୁଲର ମୂଲ୍ୟ। ଏହାର ଉପାଦେୟତାର ମୂଲ୍ୟାୟନ କରିବେ ସୁଧୀ ପାଠକ ପାଠିକା। ଏହି ପୁସ୍ତକ ପାଠକରି ସେମାନେ କିଞ୍ଚିତ ଆନନ୍ଦ ପାଇଲେ ମୋର ଶ୍ରମ ସାର୍ଥକ ହେବ। ଆଶାକରେ ପିପିଲି ଭୂଖଣ୍ଡର ଗୌରବ ଗାରିମାମୟ ଐତିହ୍ୟ ପାଠକରି ସେ ଅଞ୍ଚଳର ଅଧିବାସୀ ଉଦ୍‌ବୁଦ୍ଧ ହେବେ।

ପୁସ୍ତକ ପ୍ରଣୟନ ଦିଗରେ କେତେଜଣ ବ୍ୟକ୍ତି ମୋତେ ବହୁ ଭାବରେ ସହାୟତା ଦେଇଛନ୍ତି। ସେମାନଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିବା ମୋ ପାଇଁ ଏକ ଆନନ୍ଦର କଥା। ଏ ଦିଗରେ ପ୍ରଥମ ବ୍ୟକ୍ତି ହେଉଛନ୍ତି ସାମ୍ବାଦିକ, ସମାଜସେବୀ ଓ ପିପିଲି ସାଂସ୍କୃତିକ ପରିଷଦର ସମ୍ପାଦକ ରମେଶ ଚନ୍ଦ୍ର ମହାପାତ୍ର। ତଥ୍ୟ ସଂଗ୍ରହ ଅବକାଶରେ ସେ ମୋ ସହିତ ସଦା ସର୍ବଦା ରହି ମୋତେ ବିଭିନ୍ନ ସ୍ଥାନ ଓ ବ୍ୟକ୍ତିଙ୍କ ସହିତ ପରିଚିତ କରାଇବା ସଙ୍ଗେ ସଙ୍ଗେ ନିଜେ ବହୁ ତଥ୍ୟ ସଂଗ୍ରହ କରି ଦେଇଛନ୍ତି। ମାନଚିତ୍ର 'ପ୍ରସ୍ତୁତି ଠାରୁ ଆରମ୍ଭ କରି ଫଟୋ ଉତ୍ତୋଳନ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ତାଙ୍କର ସହାୟତା ରହିଛି। ପୁସ୍ତକ ପ୍ରଣୟନର ଆଶୁ ସମାପ୍ତି ପାଇଁ ମଧ୍ୟ ମୋତେ ସେ ବାରମ୍ବାର ସଜାଗ କରାଇବା ଫଳରେ ଏ ଦିଗରେ ମୁଁ କ୍ରିୟାଶୀଳ ହୋଇଛି। ଏହି ପୁସ୍ତକର ସେ ଜଣେ ସହଯୋଗୀ ଲେଖକ। ତେଣୁ ପୁସ୍ତକର ପ୍ରାରମ୍ଭରେ ସ୍ୱତନ୍ତ୍ର ଭାବେ ତାଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିଛି। ପୁସ୍ତକଟିର ପ୍ରଣୟନ ଦିଗରେ ପିପିଲି-ଡେଲାଙ୍ଗ ନିର୍ବାଚନ ମଣ୍ଡଳୀର ବିଧାୟକ ପ୍ରଦୀପ ମହାରଥୀଙ୍କ ଅବଦାନ ମଧ୍ୟ ଉଲ୍ଲେଖଯୋଗ୍ୟ। ସେ ସମ୍ପର୍କରେ ମୁଁ ପୂର୍ବରୁ ସୂଚାଇଛି। ଏତଦ୍‌ବ୍ୟତୀତ ଗୋବିନ୍ଦପୁର ଗ୍ରାମର ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ଶିକ୍ଷକ କାଶୀନାଥ ନାୟକ, ଅନ୍ୟତମ ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ହାଇଦର ମହମ୍ମଦ,



Digitized by srujanika@gmail.com

ପିପିଲିର ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀ ଡ଼କ୍ଟର ହରିଚରଣ ଗିରି, ଚୌଧୁରୀ ନଟବର ସାହୁ, ରମେଶ ଚନ୍ଦ୍ର ମହାପାତ୍ରଙ୍କ ସହଧର୍ମିଣୀ କିରଣବାଳା ମହାପାତ୍ର, ପିପିଲିର ତହସିଲଦାର ଗୋବିନ୍ଦ ଚନ୍ଦ୍ର ଦାସ, ଦାଣ୍ଡମୁକୁନ୍ଦପୁରର କୃଷ୍ଣଚନ୍ଦ୍ର ପୁଷ୍ପାଳକ ଓ ଅନ୍ୟାନ୍ୟ କେତେଜଣ ବ୍ୟକ୍ତିଙ୍କର ସହାୟତା ଉଲ୍ଲେଖଯୋଗ୍ୟ । ବିଶେଷତଃ ବର୍ଷୀୟାନ୍ ଧର୍ମପ୍ରାଣ ବ୍ୟକ୍ତି ଦଣ୍ଡବାଟି ଗ୍ରାମର ଶ୍ରୀଯୁକ୍ତ ଜନାର୍ଦ୍ଦନ ପଟ୍ଟନାୟକ ଅକୁଣ୍ଠ ଚିତ୍ତରେ ପୁସ୍ତକର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ ସେ ମୋର ନମସ୍ୟ । ତାଙ୍କ ପୁତ୍ର ଜିତେନ୍ଦ୍ରିୟ ପଟ୍ଟନାୟକ (ବାବୁନିବାବୁ) ମଧ୍ୟ ପ୍ରଶଂସାର ପାତ୍ର । ପରିଶେଷରେ ମୋର ସ୍ତ୍ରୀ ଶ୍ରୀମତୀ ବାସନ୍ତୀ ପଟ୍ଟନାୟକ, ବନ୍ଧୁ ସାହିତ୍ୟିକ ବିନୋଦ ବିହାରୀ ପଳାଇ ଓ ବନ୍ଧୁ କମଳା ପ୍ରସାଦ ତ୍ରିପାଠୀଙ୍କର ପରୋକ୍ଷ ସାହାଯ୍ୟ ମଧ୍ୟ ସ୍ୱୀକାର୍ଯ୍ୟ ।

ପୁସ୍ତକଟିରେ ତଥ୍ୟଭିତ୍ତିକ ତ୍ରୁଟି ଯେପରି ରହି ନଯାଏ ସେ ଦିଗରେ ଯତ୍ପରୋନାସ୍ତି ଚେଷ୍ଟା କରାଯାଇଛି । କିନ୍ତୁ ଯଦି କୌଣସି ସ୍ଥାନରେ କିଛି ଅନିଚ୍ଛାକୃତ ତ୍ରୁଟି ପରିଲକ୍ଷିତ ହୁଏ ତେବେ ପରବର୍ତ୍ତୀ ସଂସ୍କରଣରେ ତାହାର ମାର୍ଜନା କରାଯିବ ।

ଜୟ ଜଗନ୍ନାଥ-ଜୟ ପିପିଲି

**ଜଗନ୍ନାଥ ପଟ୍ଟନାୟକ**
ସତ୍ୟଶ୍ରୀ, ଏନ୍ ୨-୧୦୧,
ନୟାପଲ୍ଲୀ, ଭୁବନେଶ୍ୱର -୭୫୧ ୦୧୫

ଶ୍ରୀଗୁଣ୍ଡିଚା
୨୧, ଜୁନ ୧୯୯୩



Digitized by srujanika@gmail.com

# ଆମର ପ୍ରକାଶକ ଶ୍ରୀ ଜନାର୍ଦ୍ଦନ ପଟ୍ଟନାୟକ



ନିଃସ୍ୱତାରୁ ଆରମ୍ଭକରି ବହୁ ଘାତ ପ୍ରତିଘାତର ବନ୍ଧୁର ପଥ ମଧ୍ୟରେ ଗତିକରି ଶେଷରେ ପ୍ରତିଷ୍ଠା ଅର୍ଜନ କରିଥିବା ସେହି କୃତବିଦ୍ ବ୍ୟକ୍ତି ହେଉଛନ୍ତି ଆମର ପୂଜ୍ୟ ଓ ଦରଦୀ ପ୍ରକାଶକ ଶ୍ରୀଯୁକ୍ତ ଜନାର୍ଦ୍ଦନ ପଟ୍ଟନାୟକ। ବାସ୍ତବପକ୍ଷେ ତାଙ୍କର ଜୀବନୀ ଯେପରି ରୋମାଞ୍ଚକର, ସେହିପରି ଗୌରବ ଗାରିମାମୟ।

ପିପିଲିଥାନା ଅନ୍ତର୍ଗତ ଦାଣ୍ଡମୁକୁନ୍ଦପୁର ଦଣ୍ଡବାଟୀ ଗ୍ରାମରେ ଶ୍ରୀ ପଟ୍ଟନାୟକଙ୍କର ଜନ୍ମ ୧୯୧୦ ମସିହା ଜୁନ ୨୫ ତାରିଖ ଦିନ। ପିତାଙ୍କ ନାମ ସୁଦର୍ଶନ ପଟ୍ଟନାୟକ। ପିତାଙ୍କର ୧୨ଟି ସନ୍ତାନ ସନ୍ତତିଙ୍କ ମଧ୍ୟରୁ ଜନାର୍ଦ୍ଦନ ଥିଲେ ସର୍ବକନିଷ୍ଠ। ଜନ୍ମ ହେବାର ଦୁଇବର୍ଷ ବିତିଛି କି ନାହିଁ ସେ ତାଙ୍କର ପିତାଙ୍କୁ ହରାଇବସିଥିଲେ। ଦାଦା ଭାଗବତ ପଟ୍ଟନାୟକ ହୋଇଥିଲେ ତାଙ୍କର ଅଭିଭାବକ।

ପ୍ରଥମେ ଉଳୁଦେଶ୍ୱର ଦେଉଳୀସ୍ଥିତ ପ୍ରାଥମିକ ବିଦ୍ୟାଳୟରେ ଜନାର୍ଦ୍ଦନ ଅଧ୍ୟୟନ ଶେଷକରି ନାମ ଲେଖାଇଥିଲେ ଦାଣ୍ଡମୁକୁନ୍ଦପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ। ମାତ୍ର ସେ ପାଠପଢ଼ାରେ ମନୋନିବେଶ ନକରି କ୍ରୀଡ଼ା କସରତରେ ଅଧିକ ସମୟ ବିତାଇଥିବାର ଦେଖାଯାଇଥିଲା। ଏପରିକି ସେ ଘୋଡ଼ାଚଢ଼ାରେ ମନବଳାଇ ଥିଲେ। ସ୍ୱଳ୍ପ ବୟସରେ ଜଣେ ଉତ୍ତମ ଖେଳାଳୀଭାବେ ସୁନାମ ଅର୍ଜନ କଲେ ସିନା, ମାତ୍ର ସପ୍ତମ ଶ୍ରେଣୀଠାରୁ ନାମ କଟାଇ ଆଣିଲେ। ତାପରେ କୋମଳମତି ଜନାର୍ଦ୍ଦନ ଚିନ୍ତିତ ହୋଇପଡ଼ିଲେ। କାରଣ ସମ୍ମୁଖରେ ଅନିଶ୍ଚିତ ଭବିଷ୍ୟତ। ଅନନ୍ୟୋପାୟ



Digitized by srujanika@gmail.com

ହୋଇ ସେ ଯୋଗ ଦିଅନ୍ତି କଟକର ବନ୍ଦୋବସ୍ତ ଅଫିସରେ ଜଣେ କପି ମୋହରିର ଭାବେ। ମାତ୍ର ବର୍ଷକ ପରେ ସେଥିରୁ ସେ ଅବ୍ୟାହତି ନିଅନ୍ତି।

ପରେ ପରେ ଜନାର୍ଦ୍ଦନଙ୍କର ପରମ ସୌଭାଗ୍ୟକୁ ଦେଖାହୁଏ ତାଙ୍କର ବନ୍ଧୁ ବାଲିପାଟଣା ଅନ୍ତର୍ଗତ କୁଜିଙ୍ଗିରା ଗ୍ରାମର ଜଗନ୍ନାଥ ମହାନ୍ତିଙ୍କ ସହ। ସେ କଲିକତାର ଏକ ଚଟକଳରେ କାମ କରୁଥାଆନ୍ତି। ସେ ପରାମର୍ଶ ଦେଲେ କଲିକତା ଯିବାପାଇଁ। ତେଣୁ ଜନାର୍ଦ୍ଦନ ନିଜ ବାଡ଼ିରୁ ଦଶଟଙ୍କାର ନଡ଼ିଆ ବିକି କଲିକତାରେ ପହଞ୍ଚିଲେ। ଦୁଇବର୍ଷ ଚଟକଳରେ କାମ କରିବାପରେ କେଜାଣି କାହିଁକି ଜନାର୍ଦ୍ଦନ ଚାହିଁଲେ ଡ୍ରାଇଭରଟିଏ ହେବାପାଇଁ। ତେଣୁ ସେ ନାମ ଲେଖାଇଲେ ଭବାନୀପୁର-୪, ମହେନ୍ଦ୍ର ରୋଡ଼ର ଏକ ପଞ୍ଜାବୀ ମୋଟର କାରଖାନାରେ। ଏ ବାବଦ ତାଙ୍କୁ ୧୫୦ ଟଙ୍କା ଦେବାକୁ ପଡ଼ିଲା। ସହାୟକ ହେଲେ ତାଙ୍କର ସେହି ସୁହୃଦ ବନ୍ଧୁ ଜଗନ୍ନାଥ ମହାନ୍ତି। ୬ ମାସ ପର୍ଯ୍ୟନ୍ତ ଖାଇବା ପିଇବାର ଦାୟିତ୍ୱ ମଧ୍ୟ ସେ ବହନ କଲେ। ସେହି ସମୟରେ ଜନାର୍ଦ୍ଦନ ଖାଆନ୍ତି ସକାଳେ ୧ ପଇସାର ବୁଟ ଓ ଚାଉଳ ଭଜା, ଦ୍ୱିପ୍ରହର ଓ ରାତିରେ ଛଅ ଛଅ ପଇସାର ବିରିଡାଲି ଓ ରୁଟି। ରାତିରେ ଭଂଗା ମଟରଗାଡ଼ି ଥିଲା ତାଙ୍କର ଆଶ୍ରୟସ୍ଥଳ। ଖଣ୍ଡିଏ କରି ପେଣ୍ଟ ସାର୍ଟ ସହ ଖଣ୍ଡିଏ ଗାମୁଛା ଥିଲା ତାଙ୍କର ସମ୍ପତ୍ତି, ସେହି ଗାମୁଛାଟି ତାଙ୍କର ଚଦର, ଶେଯ ଓ ପଗଡ଼ିର କାମ ଦେଉଥିଲା। ଶୀତରେ ଥୁରୁ ଥୁରୁ ହେଉଥିବାର ଦେଖି ଦରବାର ସିଂ ନାମକ ଜଣେ ମିସ୍ତ୍ରୀ ତାଙ୍କୁ ଚଦରଟିଏ ଦେଇଥିଲେ। ଏତେ ଦୁଃଖ କଷ୍ଟ ମଧ୍ୟରେ ପଡ଼ି ମଧ୍ୟ ତାଙ୍କର ମନୋବଳ ଭାଂଗିପଡ଼ି ନଥିଲା। କାରଣ ସେ ଜାଣିଥିଲେ ସାଧନା ନକଲେ ସିଦ୍ଧି ମିଳେନାହିଁ। ସେ ଯାହାହେଉ ପରୀକ୍ଷା 'ଫଳ ସହ ଡ୍ରାଇଭିଂ ଲାଇସେନ୍ସଟିଏ ମଧ୍ୟ ମିଳିଲା। ସେଦିନ ତାଙ୍କର ଅପୂରନ୍ତି ଆନନ୍ଦ- ଅନ୍ତତଃ ପକ୍ଷେ ଜୀବନଧାରଣପାଇଁ ମନ ମୁତାବକ ସାହାରାଟିଏ ମିଳିଲା। ତା'ପରେ ସେ ଫେରିଆସିଲେ ନିଜ ଜନ୍ମଭୂମି ଦାଣ୍ଡମୁକୁନ୍ଦପୁରକୁ।

କ୍ରମେ କ୍ରମେ ଜନାର୍ଦ୍ଦନଙ୍କର ଭାଗ୍ୟନକ୍ଷତ୍ର ଉଦୟ ହେବାକୁ ଲାଗିଲା। କୋଠସାହି ଜମିଦାରଙ୍କର ତହସିଲଦାର ରୂପେ କାର୍ଯ୍ୟ କରୁଥିବା ବଡ଼ଭାଇ ସତ୍ୟବାଦୀବାବୁ ତାଙ୍କ ପାଇଁ ଗାଡ଼ିଟିଏ କିଣିବାର ବନ୍ଦୋବସ୍ତ କରିବେ ବୋଲି ଆଶ୍ୱାସନା ଦେଲେ। ମାତ୍ର ଜନାର୍ଦ୍ଦନ ସେ ପର୍ଯ୍ୟନ୍ତ ଅପେକ୍ଷା କରି ପିପିଲିର ପ୍ରସନ୍ନ କୁମାର ମହାନ୍ତିଙ୍କ ଗାଡ଼ିର ଚାଳକରୂପେ ଯୋଗ ଦେଲେ। ତଥାପି ନିଜେ ଏକ ଗାଡ଼ି କିଣିବାର ପ୍ରବଳ ଆକାଂକ୍ଷା ତାଙ୍କ ମନ ମଧ୍ୟରେ ଉଙ୍କିମାରୁଥାଏ।

ଏହାଥିଲା ୧୯୩୫ ମସିହାର କଥା। ସେହିବର୍ଷ କରଞ୍ଜିଆ ନିବାସୀ ନରହରି ସାମନ୍ତରାୟଙ୍କର କନ୍ୟା ବିଷ୍ଣୁପ୍ରିୟାଙ୍କ ସହ ଜନାର୍ଦ୍ଦନଙ୍କର ବିବାହ ହୁଏ। ଜନାର୍ଦ୍ଦନଙ୍କ



Digitized by srujanika@gmail.com

ସହ ବିଷ୍ଣୁପ୍ରିୟା- ଏହାଥିଲା ମଣିକାଞ୍ଚନର ଏକ ଅପୂର୍ବ ସଂଯୋଗ। ସେ ହେଲେ ତାଙ୍କର ସୁଖ ଦୁଃଖର ପ୍ରକୃତ ସାଥୀ। ଜନାର୍ଦ୍ଦନଙ୍କର ଗାଡ଼ି କ୍ରୟ କରିବାର ପ୍ରବଳ ବାସନା ଜାଣି ବିଷ୍ଣୁପ୍ରିୟା ବିନାଦ୍ୱିଧାରେ ନିଜର ପ୍ରିୟ ଗହଣାର କିଛି ଅଂଶ ତାଙ୍କ ହାତରେ ଅର୍ପଣ କରିଥିଲେ। ତାହା ବିକ୍ରୟ କରି ପାଇଥିବା ୫୦୦ ଟଙ୍କାରେ ଆଠଗଡ଼ ରାଜାଙ୍କର ଓ.ଆର.ସି. ୧୭୧ ନମ୍ବର ଚେଭରଲେଟ ଗାଡ଼ି କିଣି ତାକୁ ପୁରୀ ସହରରେ ଟାକ୍ସିରୂପେ ବ୍ୟବହାର କଲେ। ତାହା ମଧ୍ୟ ସେ ବେଶୀଦିନ କରି ପାରିଲେ ନାହିଁ। ୧୯୩୯ ମସିହାରେ ଆରମ୍ଭ ହେଲା ଦ୍ୱିତୀୟ ବିଶ୍ୱଯୁଦ୍ଧ। ତେଣୁ ଇଂରେଜ ସରକାରଙ୍କର ନିର୍ଦ୍ଦେଶକ୍ରମେ ସହରାଞ୍ଚଳର ସବୁଗାଡ଼ି ନିଆଯାଇ କଟକରେ ଏ.ଆର.ପି.ଙ୍କ ଅଧୀନରେ ରଖାଗଲା ଓ ସୌଭାଗ୍ୟକ୍ରମେ ଜନାର୍ଦ୍ଦନବାବୁ ସେଠାରେ ଗାଡ଼ିର ମୁଖ୍ୟ ପରିଚାଳକଭାବେ ନିଯୁକ୍ତି ପାଇଲେ। ସେହିଠାରେ ସେ ୧୯୪୦ରୁ ୧୯୪୪ ମସିହା ପର୍ଯ୍ୟନ୍ତ ରହି ନିଜର ନିଷ୍ଠା ଓ ଦକ୍ଷତା ପ୍ରତିପାଦନ କରିପାରିଥିଲେ।

କ୍ରମେ କ୍ରମେ ସ୍ୱାଧୀନଭାବେ କିଛି କରିବାର ଆକାଂକ୍ଷା ମନମଧ୍ୟରେ ବଳବତ୍ତର ହେଉଥାଏ। ତେଣୁ ସେ ଏକ ପୁରୁଣାଟ୍ରକଟିଏ କ୍ରୟ କରି ପିପିଲି, ବାଲିଅନ୍ତା ଓ ବାଲିପାଟଣାଥାନାର ପ୍ୟାଡି ପରଚେଜିଂ ଏଜେଣ୍ଟ ହେଲେ। ଏହି ବ୍ୟବସାୟ ୧୯୪୭ ପର୍ଯ୍ୟନ୍ତ ଚାଲିଲା। ନିଜର ସତ୍‌ଚରିତ୍ର ଓ ନିଷ୍ଠାପାଇଁ ସେ ଉନ୍ନତି ପଥରେ ଆଗେଇ ଚାଲିଲେ। ବାସ୍ତବପକ୍ଷେ ଉଦ୍‌ଯୋଗୀ ବ୍ୟକ୍ତିଙ୍କ ପ୍ରତି ଲକ୍ଷ୍ମୀ ସଦୟ ହୁଅନ୍ତି। ଜନାର୍ଦ୍ଦନବାବୁ ଥିଲେ ତା'ର ପ୍ରକୃଷ୍ଟ ଉଦାହରଣ।

ପରେ ପରେ ଜନାର୍ଦ୍ଦନବାବୁ ଭୁବନେଶ୍ୱର ଷ୍ଟେସନ ନିକଟରେ ଏକ ଗ୍ୟାରେଜ ସ୍ଥାପନ କଲେ। କଥାରେ ଅଛି 'ଦୁଃଖି ଯଦି ସୁଖୀ ହୁଏ ଚେତି ଘର କରେ, ସୁଖୀ ଯଦି ଦୁଃଖି ହୁଏ ଝୁରି ଝୁରି ମରେ।' ତାକୁହିଁ ମନରେ ରଖି ସେ ନିଷ୍ଠାରସହ ଲୋକମାନଙ୍କର ସେବାକରି ସମସ୍ତଙ୍କର ପ୍ରଶଂସାଭାଜନ ହୋଇଥିଲେ। ୧୯୫୫ ମସିହାରେ ସରକାରଙ୍କଠାରୁ ଖଣ୍ଡିଏ ଜମି ଲିଜ୍‌ନେଇ ନିଜର ଏକ ଗ୍ୟାରେଜ୍ ପ୍ରତିଷ୍ଠା କଲେ। ଏ ଦିଗରେ ତାଙ୍କୁ ଯଥେଷ୍ଟ ପ୍ରୋତ୍ସାହନ ଓ ସହାୟତ ଦେଇଥିଲେ ବିରେନ ମିତ୍ର ଓ ସତ୍ୟପ୍ରିୟ ମହାନ୍ତି।

ପରେ ପରେ ଜନାର୍ଦ୍ଦନ ବାବୁଙ୍କର ଖ୍ୟାତି, ସୁନାମ ଓ .ଲୋକପ୍ରିୟତା ବ୍ୟାପିବାକୁ ଲାଗିଲା। ବଣମାଳତୀ ବଣରେ ଫୁଟିଥିଲେ ମଧ୍ୟ ତା'ର ସୁଗନ୍ଧ ଚତୁର୍ଦ୍ଦିଗକୁ ପରିବ୍ୟାପ୍ତ ହୋଇଥାଏ। ଇତିମଧ୍ୟରେ ସମାଜସେବା ଓ ଆଧ୍ୟାତ୍ମିକ କାର୍ଯ୍ୟରେ ଯୋଗ ଦେବାପାଇଁ ଜନାର୍ଦ୍ଦନ ବାବୁଙ୍କର ଆଗ୍ରହ ପ୍ରକାଶ ପାଇଲା। ପ୍ରଭୁ ତାଙ୍କର ମନଜାଣି ଦାଣ୍ଡମୁକୁନ୍ଦପୁର ଉଚ୍ଚଇଂରାଜୀ ବିଦ୍ୟାଳୟ ପରିଚାଳନା କମିଟିର ସଦସ୍ୟ, ଗୋପାଳଜୀଉ ମନ୍ଦିରର ମେନେଜିଂ ଟ୍ରଷ୍ଟିରୂପେ ତାଙ୍କୁ ନିର୍ବାଚିତ

Digitized by srujanika@gmail.com

କରାଇଲେ। ୧୯୭୨ରୁ ୧୯୭୫ ମସିହା ପର୍ଯ୍ୟନ୍ତ ସେ ମଧ୍ୟ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଟ୍ରଷ୍ଟବୋର୍ଡ଼ର ଜଣେ ସଦସ୍ୟଭାବେ ସୁଚାରୁରୂପେ କାର୍ଯ୍ୟକରିଥିଲେ। ୧୯୬୮ ମସିହାରୁ ଅଦ୍ୟାବଧି ଦୀର୍ଘ ୨୫ ବର୍ଷ ଧରି ସେ ଚିନ୍ତାମଣିଶ୍ୱର ମନ୍ଦିର ଟ୍ରଷ୍ଟବୋର୍ଡ଼ର ସମ୍ପାଦକ ଭାବେ କାର୍ଯ୍ୟକରି ଆସୁଛନ୍ତି।

ବର୍ତ୍ତମାନ ଜନାର୍ଦ୍ଦନବାବୁଙ୍କୁ ୮୪ ବର୍ଷ। ଜୀବନର ସାୟାହ୍ନରେ ଉପନୀତ। ତଥାପି ସେ ସମ୍ପୂର୍ଣ୍ଣ ସୁସ୍ଥ, ସବଳ ଓ କାର୍ଯ୍ୟକ୍ଷମ ଅଛନ୍ତି। ଶିକ୍ଷାୟତନ ଓ ଗ୍ରାମର ଉନ୍ନତି, ସମାଜ ସେବା, ଯଜ୍ଞ ଦେବାଦେବୀ ପ୍ରତିଷ୍ଠା ଆଦି ଆଧ୍ୟାତ୍ମିକ କାର୍ଯ୍ୟରେ ସେ ନିଜକୁ ନିୟୋଜିତ କରିଛନ୍ତି। ସେହି ଜନକଲ୍ୟାଣପାଇଁ ସେ 'ଇତିହାସ ପୃଷ୍ଠାରେ ପିପିଲି' ପୁସ୍ତକ ପ୍ରକାଶନର ସମସ୍ତ ବ୍ୟୟ ବହନ କରିଛନ୍ତି। ତାଙ୍କର ଉଦ୍ଦେଶ୍ୟ ହେଉଛି ପୁସ୍ତକଟି ପାଇବାପରେ ପିପିଲି ଅଧିବାସୀ ନିଜର ଗୌରବମୟ ଐତିହ୍ୟ ଓ ସଂସ୍କୃତି ବିଷୟରେ ଅବହିତ ହୋଇ ଗର୍ବିତ ମନେକରିବା ସଂଗେ ସଂଗେ ଉତ୍ତରସୂରୀ ମାନେ ଅନୁପ୍ରାଣିତ ହୋଇ ସ୍ଥାନର ସମ୍ମାନ ରକ୍ଷାକରିବା ଦିଗରେ ବ୍ରତୀ ହେବେ।



Digitized by srujanika@gmail.com

# ପୁସ୍ତକ ପ୍ରଣୟନରେ ମୁଖ୍ୟ ସହଯୋଗୀ
# ରମେଶ ଚନ୍ଦ୍ର ମହାପାତ୍ରଙ୍କ ସଂକ୍ଷିପ୍ତ ପରିଚୟ



୧୯୫୧ ମସିହା ଜାନୁଆରୀ ୧୬ ତାରିଖରେ ପିପିଲି ଥାନା ଆରୁହା ପାଟ୍ଟଣାଣୀପୁର ଗ୍ରାମରେ ରମେଶ ଚନ୍ଦ୍ର ମହାପାତ୍ରଙ୍କ ଜନ୍ମ। ପିତାଙ୍କ ନାମ ନଟବର ମହାପାତ୍ର ଓ ମାତାଙ୍କ ନାମ କୌଶଲ୍ୟା ଦେବୀ। କଠୋର ଦାରିଦ୍ର୍ୟ ମଧ୍ୟରେ ରମେଶ ଚନ୍ଦ୍ରଙ୍କୁ ପ୍ରାଥମିକ ବିଦ୍ୟାଳୟରୁ ପ୍ରାକ୍ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ପାସ୍ କରିବା ପର୍ଯ୍ୟନ୍ତ ଗତି କରିବାକୁ ପଡିଥିଲା। ୧୯୬୯ ମସିହାରେ ଜଣେ ଫଟୋ ଟେକ୍ନିସିଆନ୍ ଭାବରେ ସେ ଭାରତୀୟ ବାୟୁସେନାରେ ଯୋଗ ଦେଲେ। ୧୯୭୧ ମସିହାରେ ଭାରତ-ପାକିସ୍ଥାନ ଯୁଦ୍ଧ ସମୟରେ ସେ ଅମୃତସର ଠାରେ କାର୍ଯ୍ୟ କରୁଥିଲେ। ଅଧିକ ଅଧ୍ୟୟନ ପାଇଁ ସର୍ବଦା ବ୍ୟାକୁଳ ହେଉଥିବା ରମେଶ ଚନ୍ଦ୍ର ସେନା-ବିଭାଗର କଠୋର ଶୃଙ୍ଖଳା ମଧ୍ୟରେ ନିଜ ଦାୟିତ୍ୱ ତୁଲାଇବା ସହିତ ଘରୋଇ ଭାବରେ ୧୯୭୪ରେ ବି.ଏ. ଓ ୧୯୭୬ରେ ପଞ୍ଜାବ ବିଶ୍ୱବିଦ୍ୟାଳୟରୁ ଇଂରାଜୀରେ ଏମ.ଏ. ପାସ୍ କଲେ। ୧୯୭୯ ମସିହାରେ ଭାରତୀୟ ବିଦ୍ୟାଭବନ, ଦିଲ୍ଲୀରୁ ଜର୍ଣ୍ଣାଲିଜିମ୍ ଓ ୧୯୮୦ରେ ପବ୍ଲିକ୍ ରିଲେସନ୍ସରେ ଡିପ୍ଲୋମା ଲାଭ କଲେ। ବାୟୁସେନା ବିଭାଗରେ ଦୀର୍ଘ ୧୫ ବର୍ଷ କାର୍ଯ୍ୟକାଳ ମଧ୍ୟରେ ନିଜର ଦକ୍ଷତା ପାଇଁ ସଂପୃକ୍ତ କର୍ତ୍ତୃପକ୍ଷଙ୍କ ଠାରୁ ପ୍ରଶଂସାପତ୍ର ପାଇଥିଲେ। ୧୯୮୪ ମସିହା ଡିସେମ୍ବର ୩୧ ତାରିଖରେ ସେ ବାୟୁସେନାରୁ ଅବସର ଗ୍ରହଣ କଲେ। ଅବସର ଗ୍ରହଣ ପରେ ଶ୍ରୀ ମହାପାତ୍ର ''ସମ୍ବାଦ''ର ପିପିଲି ପ୍ରତିନିଧି ଭାବରେ ୧.୯.୮୬ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ। ବର୍ତ୍ତମାନ ସେ ଭାରତୀୟ କୃଷି ଗବେଷଣା ପରିଷଦର କୌଶଲ୍ୟାଗଙ୍ଗାସ୍ଥିତ କେନ୍ଦ୍ରୀୟ ମତ୍ସ୍ୟ ଗବେଷଣା କେନ୍ଦ୍ରରେ ଜଣେ ଅଡିଟ୍ରେ ଅଛନ୍ତି ଏବଂ ''ପ୍ରଗତିବାଦୀ'' ସମ୍ବାଦପତ୍ରର ପିପିଲି ପ୍ରତିନିଧି (ଅବୈତନିକ) ଭାବରେ କାର୍ଯ୍ୟ କରୁଛନ୍ତି। ବିଭିନ୍ନ ଇଂରାଜୀ ଏବଂ ଓଡ଼ିଆ ସମ୍ବାଦପତ୍ରରେ ଏପର୍ଯ୍ୟନ୍ତ ଶ୍ରୀ ମହାପାତ୍ରଙ୍କ ପ୍ରାୟ ଷାଠିଏରୁ ଅଧିକ ଫିଚର ଓ ଡକ୍ୟୁମେଣ୍ଟରୀ ପ୍ରକାଶିତ ହୋଇଛି। ସମାଜସେବାରେ ଆଗ୍ରହୀ ଶ୍ରୀ ମହାପାତ୍ର ୧୯୭୧ ରୁ ୧୯୭୩ ପର୍ଯ୍ୟନ୍ତ ''ଉତ୍କଳ ସଂଗଠନ''(ଅମ୍ବାଲା), ୧୯୭୫ ରୁ ୧୯୮୨ ପର୍ଯ୍ୟନ୍ତ ଦିଲ୍ଲୀର ପାଲମସ୍ଥିତ ପ୍ରବାସୀ ଓଡ଼ିଆ ଆସୋସିଏସନର ସଂପାଦକ ଥିଲେ। ୧୯୮୫ ରୁ ଅଦ୍ୟାବଧି ପର୍ଯ୍ୟନ୍ତ ''ଉତ୍କଳଦିବସ ପାଳନ କମିଟି'' (ପିପିଲି) ର ସଂପାଦକ ଏବଂ ୧୯୯୦ରୁ ପିପିଲି ସାଂସ୍କୃତିକ ପରିଷଦର ସଂପାଦକ ଅଛନ୍ତି।



Digitized by srujanika@gmail.com

# ସୂଚୀପତ୍ର



Digitized by srujanika@gmail.com




Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

## ଉପକ୍ରମଣିକା

ବହୁ ରୋମାଞ୍ଚକର ତଥ୍ୟରେ ପରିପୂର୍ଣ୍ଣ ପିପିଲିର ଇତିହାସ ଓଡ଼ିଶାର ଇତିକଥାରେ ଏକ ଘଟଣା ବହୁଳ ଅଧ୍ୟାୟ। ଏହାର ଇତିହାସ ଯେପରି ରୋମାଞ୍ଚକର ; ସଂସ୍କୃତି ମଧ୍ୟ ସେହିପରି ଗୌରବମୟ। ଓଡ଼ିଶା ଇତିହାସର ଆରମ୍ଭଠାରୁ ଏହା ବହୁ ଉତ୍‌ଥାନ ପତନର ବନ୍ଧୁର ପଥଦେଇ ଗତି କରି ମଧ୍ୟ ଇତିହାସର ସେହି ଦୁର୍ନିବାର ସ୍ରୋତରେ ଲୀନ ହୋଇ ନାହିଁ। ବିଶ୍ୱବିଶ୍ରୁତ ଶ୍ରୀକ୍ଷେତ୍ରକୁ ଯିବା ରାସ୍ତାରେ ଏହାର ଅବସ୍ଥିତି ହେତୁ ଅଗଣିତ ସାଧୁ, ସନ୍ଥ, ଧର୍ମ ପ୍ରଚାରକ ଓ ସନ୍ନ୍ୟାସୀଙ୍କ ପଦ ରଜରେ ଏହା ପବିତ୍ର ହୋଇଛି। ଏହା ମଧ୍ୟ ବୌଦ୍ଧ, ଜୈନ, ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟ ଧର୍ମାବଲମ୍ବୀଙ୍କୁ କୋଳରେ ଧରି ନିଜକୁ ସର୍ବ ଧର୍ମ ସମନ୍ୱୟର ପୀଠସ୍ଥଳୀରୂପେ ପ୍ରତିଷ୍ଠିତ କରାଇ ପାରିଛି। ପ୍ରାଚୀନ ଯୁଗରେ ଏହା ଓଡ଼ିଶାର ରାଜନୈତିକ ଦିଗ୍‌ବିଜୟକୁ ଉଦ୍‌ଭାସିତ କରି ପରବର୍ତ୍ତୀ ଯୁଗରେ ମଧ୍ୟ ବହୁ ମୁସଲମାନ ଓ ମୋଗଲ ଆକ୍ରମଣକାରୀଙ୍କ ପଦଧ୍ୱନି ଶୁଣିବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରୁ କେତେକଙ୍କର ଶରବ୍ୟ ମଧ୍ୟ ହୋଇଛି। ନିଜର ଅବସ୍ଥିତି ପାଇଁ ଓଡ଼ିଶାରେ ମରହଟ୍ଟା ଓ ଇଂରେଜ ରାଜତ୍ୱର ଏହା ବହୁ ସଂଘାତ, ସଂଘର୍ଷ ଓ ଯୁଦ୍ଧ ବିଭୀଷିକାର ସ୍ୱାକ୍ଷର ବହନ କରିଛି। ଗାନ୍ଧିଜୀଙ୍କ ସମେତ ବହୁ ସର୍ବ ଭାରତୀୟ ନେତାଙ୍କ ଉପସ୍ଥିତି ପାଇଁ ଏହା ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସକୁ ମହିମାନ୍ୱିତ କରିଛି। ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ଏହା ନିଜର ପରମ୍ପରା ଅକ୍ଷୁଣ୍ଣ ରଖିବା



Digitized by srujanika@gmail.com

ଦିଗରେ ସମର୍ଥ ହୋଇ ପାରିଛି। ଏହିପରି ଭାବେ ପିପିଲିର ରାଜନୈତିକ ଆକାଶ କେତେବେଳେ ବର୍ଣ୍ଣାଢ୍ୟ ହୋଇଛି ତ, କେତେବେଳେ ବିପର୍ଯ୍ୟୟର ଘନଘଟାରେ ତମସାଚ୍ଛନ୍ନ ହୋଇଛି। ସେ ସବୁର ସବିଶେଷ ପର୍ଯ୍ୟାଲୋଚନା ପରବର୍ତ୍ତୀ ଅଧ୍ୟାୟରେ ସ୍ଥାନ ପାଇଛି। ଏହି ପରିପ୍ରେକ୍ଷୀରେ ପ୍ରଥମେ ପିପିଲିର ନାମକରଣ ଉପରେ ଆଲୋଚନା କରାଯାଉ।

## ପିପିଲିର ନାମକରଣ :

ପିପିଲି ପିପ୍ପଳ ଶବ୍ଦର ଅପଭ୍ରଂଶ ବୋଲି ମନେହୁଏ। ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ ପିପ୍ପଳ ଶବ୍ଦର ତିନି ପ୍ରକାର ଅର୍ଥ ଦୃଷ୍ଟିଗୋଚର ହୁଏ। ଗୋଟିଏ ଅର୍ଥ ହେଉଛି ଅଶ୍ୱତ୍ଥ ଗଛ, ଗୋଟିଏ ଅର୍ଥ ଜଳ ଓ ଅନ୍ୟଟିର ଅର୍ଥ ବସ୍ତ୍ର ଖଣ୍ଡ। ମାତ୍ର ଏଠାରେ ବହୁଳ ପରିମାଣରେ ଅଶ୍ୱତ୍ଥ ଗଛ ଦେଖା ଯାଉଥିବାରୁ ସ୍ଥାନଟିକୁ ପିପ୍ପଳ ବୋଲି କୁହା ଯାଇ ପାରିଥାଏ।(୧)। ଏ ବିଷୟରେ ୧୯୩୩ ମସିହାରେ ରାଜକନିକାରୁ ପିପିଲିକୁ ଆସିଥିବା ୯୩ ବର୍ଷ ବୟସ୍କ ଡକ୍ଟର ହରିଚରଣ ଗିରି ଏକ ସାକ୍ଷାତକାରରେ ପ୍ରକାଶ କରିଛନ୍ତି ଯେ, ପିପିଲି ଜଙ୍ଗଲରେ ପରିପୂର୍ଣ୍ଣ ଥିଲା ଓ ଏଥିରେ ବହୁ ସଂଖ୍ୟକ ଅଶ୍ୱତ୍ଥ ଗଛ ରହିଥିଲା। ସେତେବେଳେ ସେ ନିଜେ ମଧ୍ୟ କେତେକ ବିରାଟକାୟ ଅଶ୍ୱତ୍ଥ ଗଛ ଦେଖିଛନ୍ତି। ପିପିଲିର ତଥ୍ୟ ସଂଗ୍ରହ ଅବକାଶରେ ମୁଁ ମଧ୍ୟ କେତେକ ବିଶାଳ ଓ ପୁରାତନ ଅଶ୍ୱତ୍ଥ ଗଛ ଦଣ୍ଡାୟମାନ ହୋଇଥିବାର ଦେଖିଛି। ପିପିଲି ବଜାରର ଉତ୍ତର ପଶ୍ଚିମ ଦିଗକୁ ପ୍ରାୟ ଦୁଇ କିଲୋମିଟର ଦୂରରେ ଅବସ୍ଥିତ ମକରବା ପୋଖରୀ ନିକଟରେ ଏହିପରି କେତେକ ଗଛ ଏବେ ମଧ୍ୟ ଦଣ୍ଡାୟମାନ ହୋଇ ଥିବାର ଦେଖିବାକୁ ମିଳେ। ଅଶ୍ୱତ୍ଥ ବୃକ୍ଷ ହିନ୍ଦୁମାନଙ୍କ ପାଇଁ ଏକ ପବିତ୍ର ବୃକ୍ଷ। ଏହିପରି ଅନ୍ୟାନ୍ୟ କେତେକ ପବିତ୍ର ବୃକ୍ଷ ନାମରେ ସ୍ଥାନର ନାମକରଣ ହୋଇଥିବାର ଦୃଷ୍ଟାନ୍ତ ରହିଛି। ତନ୍ମଧ୍ୟରୁ ଗୀତଗୋବିନ୍ଦର ରଚୟିତା ଶ୍ରୀ ଜୟଦେବଙ୍କର ଜନ୍ମସ୍ଥାନ କେନ୍ଦୁବିଲ୍ୱର ନାମ ଅନ୍ୟତମ। ଅତୀତରେ ସେଠାରେ ବିଲ୍ୱ ଓ କେନ୍ଦୁ ଗଛ ବହୁଳ ପରିମାଣରେ ରହିଥିବାରୁ ସ୍ଥାନଟିର ନାମ କେନ୍ଦୁବିଲ୍ୱ ହୋଇଥିଲା। ଏ ସଂପର୍କରେ ଗବେଷକ ସ୍ୱର୍ଗତ କେଦାରନାଥ ମହାପାତ୍ର ମତବ୍ୟକ୍ତ କରି ତାଙ୍କର 'ଶ୍ରୀ ଜୟଦେବ ଓଗୀତଗୋବିନ୍ଦ' ପୁସ୍ତକରେ ଲେଖିଛନ୍ତି ଯେ, ପ୍ରାଚୀ ନଦୀର ତୀରେ ତୀରେ ବହୁ କେନ୍ଦୁ ଓ ବିଲ୍ୱ ଗଛ ରହିଥିବାର ସଂକେତ ସେ ନିଜେ ୧୯୬୪ ମସିହାରେ ଦେଖିଛନ୍ତି। ସେହି ବର୍ଷ ସଂସ୍କୃତି ବିଭାଗ ପକ୍ଷରୁ ସେଠାରେ ଜଙ୍ଗଲ ସଫା ହେଉଥିବା ସମୟରେ

(୧) ପୂର୍ଣ୍ଣଚନ୍ଦ୍ର ଭାଷାକୋଷ - ପୃ.୪୮୫୪-୪୮୫୫

Digitized by srujanika@gmail.com

ସେ ନିଜେ ଉପସ୍ଥିତ ଥିଲେ।(୨)। ଅବଶ୍ୟ ପ୍ରତାପରୁଦ୍ରପୁର ପଞ୍ଚାୟତରେ ଅବସ୍ଥିତ କେନ୍ଦୁବିଲ୍ବର ନାମ ଏବେ ଲୋପ ପାଇ ଯାଇଛି। ତା'ର ନାମ ହୋଇଛି ଦେଉଳି।

ଏହି ସବୁ ତଥ୍ୟକୁ ବିଚାରକୁ ନେଲେ ପିପିଲିର ନାମକରଣ ପିପ୍ପଳ (ଅଶ୍ୱତ୍ଥ ଗଛ) ର ଅପଭ୍ରଂଶ ବୋଲି ବିଶ୍ୱାସ କରାଯାଇ ପାରେ। ଅପର ପକ୍ଷେ ପିପିଲି ନାମ ପୀରପଲ୍ଲୀର ଅପଭ୍ରଂଶ ବୋଲି ମତଟି ସଂପୂର୍ଣ୍ଣ ଭାବେ ଅସଙ୍ଗତ ବୋଲି ମନେ ହୁଏ। ଅବଶ୍ୟ ପିପିଲିରେ କେତେଜଣ ପୀରଙ୍କର ସମାଧି ରହିଛି। କିନ୍ତୁ ସେଗୁଡ଼ିକ ସବୁ ପ୍ରାୟ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀର ମୋଗଲ ରାଜତ୍ୱରେ ପ୍ରତିଷ୍ଠିତ ହୋଇଥିବାର ଜଣାଯାଏ। ମାତ୍ର ତାର ବହୁ ପୂର୍ବରୁ ବିଭିନ୍ନ କାଗଜ ପତ୍ରରେ 'ପିପିଲି' ଶବ୍ଦର ଉଲ୍ଲେଖ ରହିଛି।

## ଅବସ୍ଥିତି :

ପିପିଲି ଯଦି ଏକ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରି ଯୁଗେ ଯୁଗେ ଓଡ଼ିଶାର ଇତିହାସ ପୃଷ୍ଠାକୁ ମଣ୍ଡନ କରିଛି, ତେବେ ତାର ଅବସ୍ଥିତି ହିଁ ମୁଖ୍ୟତଃ ଦାୟୀ। ପିପିଲିର ଅବସ୍ଥିତି ସୁବର୍ଣ୍ଣ ତ୍ରିଭୁଜ ନାମରେ କଥିତ ଇତିହାସ ପ୍ରସିଦ୍ଧ କୋଣାର୍କ, ପୁରୀ ଓ ଭୁବନେଶ୍ୱର ମଧ୍ୟ ଭାଗରେ। ଏଠାରୁ ଭୁବନେଶ୍ୱରର ଦୂରତ୍ୱ ୧୯କି.ମି. ଥିବା ସ୍ଥଳେ କୋଣାର୍କ ଓ ପୁରୀର ଦୂରତ୍ୱ ଯଥାକ୍ରମେ ୪୨ ଓ ୪୦ କିଲୋମିଟର ଅଟେ। ଅତୀତରେ କଥିତ ଜଗନ୍ନାଥ ସଡ଼କ ଓ ବର୍ତ୍ତମାନର ୮ ନମ୍ବର ଜାତୀୟ ରାଜପଥ ପିପିଲି ମଧ୍ୟ ଦେଇ ଗତି କରିଛି। ପୂର୍ବର କଟକ-ପୁରୀ ରାସ୍ତାଟି ଥିଲା ବାଲିଅନ୍ତା, ବାଳକାଟି, ପିପିଲି ଦେଇ ଗତି କରିଥିବା ବଙ୍ଗଳା-କଟକ ରାସ୍ତାର ଅଂଶ ବିଶେଷ। ସେହିପରି ଖୋର୍ଦ୍ଧା ଓ ପୁରୀକୁ ସଂଲଗ୍ନ କରୁଥିବା ରାସ୍ତାଟି ସାହାଜିପୁର, କାଳୁପଡ଼ା ଦେଇ ଦୟା ନଦୀ ଅତିକ୍ରମ କରିବା ପରେ ପିପିଲିଠାରେ କଟକ-ପୁରୀ ରାସ୍ତା ସହିତ ମିଳିତ ହୋଇଥିଲା। ସେହି ଦୃଷ୍ଟିରୁ ପିପିଲି ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଥିଲା ବୋଲି ରାଜା ମାନସିଂହ ବର୍ଣ୍ଣନା କରିଛନ୍ତି। ପୁନଶ୍ଚ ଦକ୍ଷିଣ, ଉତ୍ତର, ପୂର୍ବ ଓ ପଶ୍ଚିମରୁ ପୁରୀ ଓ କୋଣାର୍କ ଆସୁଥିବା ଯେ କୌଣସି ବ୍ୟକ୍ତିଙ୍କୁ ପିପିଲି ଭୂଇଁରେ ପାଦ ଦେବାକୁ ପଡ଼ିଥାଏ।ରାଜାଙ୍କଠାରୁ ପ୍ରଜା ପର୍ଯ୍ୟନ୍ତ, ଧନାଢ୍ୟ ବ୍ୟକ୍ତିଙ୍କଠାରୁ ଦରିଦ୍ର ପର୍ଯ୍ୟନ୍ତ, ସାଧୁ ସନ୍ଥଙ୍କଠାରୁ ଧର୍ମ ପ୍ରଚାରକଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ପିପିଲି ଦେଇ ଯାତାୟତ କରିବାକୁ ହୁଏ। ସଦାବର୍ତ୍ତ ମଠ ପରି କେତେକ ଆଶ୍ରୟ ସ୍ଥଳ ଥିବାରୁ ବହୁ ସମୟରେ ସେମାନେ ଏଠାରେ ବିଶ୍ରାମ ନେଉଥିଲେ। ଅତୀତରେ ଯାନବାହାନ ବ୍ୟବସ୍ଥା ନ ଥିବାରୁ ଅଧିକାଂଶ

(୨) କେଦାରନାଥ ମହାପାତ୍ର: ଶ୍ରୀଜଗନ୍ନାଥ ଓ ଗୀତଗୋବିନ୍ଦ

Digitized by srujanika@gmail.com

ଯାତ୍ରୀ ପଦବ୍ରଜରେ ଓ କେତେକ ବିତ୍ତଶାଳୀ ବ୍ୟକ୍ତି ସବାରୀ, ଘୋଡ଼ା ଓ ହାତୀରେ ଚଢ଼ି ଯାତ୍ରା କରୁଥିଲେ। ସେମାନଙ୍କର ବିଶ୍ରାମ ଓ ଖାଦ୍ୟପେୟ ପାଇଁ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ସଦାବର୍ତ୍ତ ମଠମାନ ସ୍ଥାପନ କରା ଯାଇଥିଲା ଓ ସେଗୁଡ଼ିକର ପ୍ରତିଷ୍ଠାତା ଥିଲେ ସାଧୁ ମହନ୍ତ ବା ବଦାନ୍ୟ ବ୍ୟକ୍ତି। ଏହି ମଠରୁ ବିନା ପାଉଣାରେ ଯାତ୍ରୀମାନଙ୍କୁ ଜାଳେଣି କାଠ, ଚାଉଳ, ଡ଼ାଲି ପରିବା ଆଦି ଖାଦ୍ୟ ସାମଗ୍ରୀ ଯୋଗାଇ ଦିଆ ଯାଉଥିଲା। ସପ୍ତଦଶ ଶତାବ୍ଦୀରେ ମହନ୍ତ ରାମାୟଣ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ସଦାବର୍ତ୍ତ ମଠର ଉଦାହରଣ ଦିଆ ଯାଇ ପାରେ। ଏହା ଥିଲା ଜଗନ୍ନାଥ ସଡ଼କ ପାର୍ଶ୍ୱରେ ଉଦ୍ରକଞ୍ଚିତ ପୁରୁଣା ବଜାରରେ।(୩)। ସେହିପରି ପିପିଲି ଅଞ୍ଚଳରେ ଦୁଇ ଗୋଟି ମଠ ସ୍ଥାପିତ ହୋଇଥିଲା। ତନ୍ମଧ୍ୟରୁ ଗୋଟିଏ ଥିଲା ଜଟଣୀ ଛକ ନିକଟରେ ଭୁବନେଶ୍ୱରରୁ ପୁରୀ ଆଡ଼କୁ ଗଲେ ଡ଼ାହାଣ ପଟେ। ରଘୁ ଦାସ ଏହାର ପ୍ରତିଷ୍ଠାତା ଥିବାର ଜଣାଯାଏ। ଅନ୍ୟଟି ଥିଲା ମଙ୍ଗଳପୁର ଗ୍ରାମରେ। ବର୍ତ୍ତମାନ ଏହା ଲୁପ୍ତ, କେବଳ ସ୍ଥାନଟି ଅତୀତର ସ୍ମୃତିକୁ ଧରି ରଖିଛି।

ସଦାବର୍ତ୍ତ ମଠ ବ୍ୟତୀତ ଯାତ୍ରୀମାନଙ୍କ ରହିବା ଓ ଖାଇବା ପାଇଁ କେତୋଟି ଘର ମଧ୍ୟ ଯୋଗାଇ ଦିଆ ଯାଇଥିଲା। ଏହିପରି ଗୋଟିଏ ଘର ଥିଲା ଗୁଡ଼ିଆ ପୋଖରୀ ନିକଟରେ ଓ ଏହାର ମାଲିକ ଥିଲେ ଜଣେ ଗୁଡ଼ିଆ। ସମ୍ଭବତଃ ଏହା ଗୋଟିଏ ଚାଳ ଘର ଥିଲା। ତାହା ଭାଙ୍ଗି ଯାଇ ଥିବାରୁ ତା'ର ଏବେ କୌଣସି ସଂକେତ ଦେଖା ଯାଏ ନାହିଁ। ସେ ଯାତ୍ରୀମାନଙ୍କୁ ଆଶ୍ରୟ ଦେବା ସଙ୍ଗେ ସଙ୍ଗେ ଖର୍ଚ୍ଚ ନେଇ ଖାଇବା ପିଇବାର ବନ୍ଦୋବସ୍ତ କରୁଥିଲେ। ସେଥିରୁ ପ୍ରାପ୍ତ ଅର୍ଥରେ ସେ ସେଠାରେ ଗୋଟିଏ ପୋଖରୀ ଖୋଳାଇ ଥିବାର ଜଣାଯାଏ। ତାହା ଗୁଡ଼ିଆ ପୋଖରୀ ନାମରେ କଥିତ ହୋଇଥିଲା ଓ ସ୍ଥାନଟି ଏବେ ସେହି ନାମରେ ଖ୍ୟାତ। ଏତଦ୍ ବ୍ୟତୀତ ଯାତ୍ରୀମାନଙ୍କୁ ନିର୍ମଳ ଓ ସୁଶୀତଳ ପାନୀୟ ଜଳ ଯୋଗାଇବା ନିମନ୍ତେ ପିପିଲିଠାରେ କେତୋଟି କୂପ ଖନନ କରା ଯାଇଥିଲା। ତନ୍ମଧ୍ୟରୁ କେତୋଟିର ଜୀର୍ଣ୍ଣ ସଂକେତ ଏବେ ମଧ୍ୟ ଦୃଷ୍ଟି ଗୋଚର ହୋଇଥାଏ। ଭୁବନେଶ୍ୱରରୁ ପୁରୀ ଆଡ଼କୁ ଗଲେ ଏହାଜଗନ୍ନାଥ ସଡ଼କର ଉଭୟ ପାର୍ଶ୍ୱରେ ଦେଖିବାକୁ ମିଳେ। ଏହି ସଦାବର୍ତ୍ତ ମଠ ଓ କୂପର ପ୍ରତ୍ନତାତ୍ତ୍ୱିକ ଅବଶେଷକୁ ଲକ୍ଷ୍ୟ କଲେ ସେଗୁଡ଼ିକ ଷୋଡ଼ଶ ବା ସପ୍ତଦଶ ଶତାବ୍ଦୀର ବୋଲି ମନେ ହୁଏ। କେବଳ ସେତିକି ନୁହେଁ, ଯାତ୍ରୀଙ୍କର ନିତ୍ୟକର୍ମ ସମାପନ ପାଇଁ ପିପିଲି ଅଞ୍ଚଳରେ କେତୋଟି ପୁଷ୍କରିଣୀ ମଧ୍ୟ ଖନନ କରା ଯାଇଥିଲା। ଜଗନ୍ନାଥ ସଡ଼କ କଡ଼ରେ

(୩) ପ୍ରଜାତନ୍ତ୍ର ସାପ୍ତାହିକୀ - ୧-୭ ମାର୍ଚ୍ଚ,୧୯୯୨ - ପୃ.୪୦-୪୧

Digitized by srujanika@gmail.com

ଏତେ ସଂଖ୍ୟକ ପୁଷ୍କରିଣୀ ଖନନ କରାଯାଇ ଥିବାର ଅନ୍ୟତ୍ର ଦୃଷ୍ଟି ଗୋଚର ହୁଏ ନାହିଁ। ସେଗୁଡ଼ିକର ଆୟତନ ବେଶ୍ ବଡ଼। ତନ୍ମଧ୍ୟରୁ କୌଶଲ୍ୟାଗଙ୍ଗ, ବେଣ୍ଡ ପୋଖରୀ, ପୁଷ୍ଟ ପୋଖରୀ, ଭୁବନାନନ୍ଦ ପୋଖରୀ, ଦାଣ୍ଡମୁକୁନ୍ଦପୁର ବଡ଼ ପୋଖରୀ, ମଙ୍ଗୁଳି ଘୋଷ ଅମୁହାଁ ପୋଖରୀ ଓ ଧୋବା ପୋଖରୀର ନାମ ଉଲ୍ଲେଖଯୋଗ୍ୟ। ଜଗନ୍ନାଥ ସଡ଼କଠାରୁ ଅନତି ଦୂରରେ ଗ୍ରାମ ଭିତରେ କେତୋଟି ପୁଷ୍କରିଣୀ ମଧ୍ୟ ଖନନ କରା ଯାଇଥିଲା। ତନ୍ମଧ୍ୟରୁ ମକରବା, ଶିଜଳା, ଆରୁହା ଓ ନୂଆ ଶାସନ ବଡ଼ ପୋଖରୀ ପ୍ରଧାନ। ଅତୀତରେ ଜଗନ୍ନାଥ ସଡ଼କ ଓ ଅନ୍ୟାନ୍ୟ ସଡ଼କ ପାର୍ଶ୍ୱରେ ତଥା ଗୁରୁତ୍ୱପୂର୍ଣ୍ଣ ଜନାକୀର୍ଣ୍ଣ ସ୍ଥାନରେ ପୁଷ୍କରିଣୀ ଖନନ କରାଯାଇ ଥିବାର ଜଣାଯାଏ। କୂପ, ପୁଷ୍କରିଣୀ ଖନନ ଓ ଛାୟା ପ୍ରଦାନ କରୁଥିବା ବୃକ୍ଷ ରୋପଣ ସେତେବେଳେ ପୁଣ୍ୟ ଓ ଧର୍ମ କାର୍ଯ୍ୟ ରୂପେ ବିବେଚିତ ହେଉଥିଲା। ସେଥିପାଇଁ ବହୁ ଜନ ମଙ୍ଗଳକାରୀ ଶାସକ ଏ ଦିଗରେ ମନୋନିବେଶ କରୁଥିଲେ। ତନ୍ମଧ୍ୟରୁ ପୁଣ୍ୟଶ୍ଳୋକ ଅଶୋକ, ଶେରଶାହା ଓ ରାଣୀ ଅହଲ୍ୟା ବାଈଙ୍କ ନାମ ଉଲ୍ଲେଖ ଯୋଗ୍ୟ। ସେହିପରି ବର୍ଦ୍ଧମାନର ରାଜମାତା ଭଦ୍ରକ ସହରଠାରୁ ୮ କିଲୋମିଟର ଉତ୍ତରକୁ ଏକ ବିରାଟ ପୁଷ୍କରିଣୀ ଖନନ କରାଇଥିଲେ। ଏହା ମୋଗଲ ରାଜତ୍ୱ ସମୟର କଥା। ଦିନେ ସେ ଶ୍ରୀକ୍ଷେତ୍ରକୁ ଆସିବା ବାଟରେ ବାଲେଶ୍ୱର ଓ ସୋରୋ ମଧ୍ୟରେ ପାଣି ଟୋପାଏ ପାଇ ନ ପାରି ନିଜ ରାଜ୍ୟକୁ ଫେରିବା ପରେ ଯାତ୍ରୀଙ୍କ ସୁବିଧା ନିମନ୍ତେ ଏକ ପୁଷ୍କରିଣୀ ଖନନ ପାଇଁ ପ୍ରଚୁର ଅର୍ଥ ଦାନ କରିଥିଲେ। ସେହି ଅର୍ଥରେ ପୁଷ୍କରିଣୀଟି ଖନନ କରାଯାଇ ତା'ର ନାମ ରଖା ଯାଇଥିଲା 'ରାଣୀକା ତଲାଓ'। ତଲାଓର ଅର୍ଥ ପୁଷ୍କରିଣୀ। ତାହା ଅପଭ୍ରଂଶ ହୋଇ ବର୍ତ୍ତମାନ ରାଣୀତାଲ ହୋଇଛି ଓ ଏବେ ମଧ୍ୟ ସ୍ଥାନଟି ସେହି ନାମରେ କଥିତ। ଏହା ୧୭୬୬ ଖ୍ରୀଷ୍ଟାବ୍ଦରେ କଲିକତାରୁ ସମ୍ବଲପୁରକୁ ଆସିଥିବା ଇଂରେଜ ବ୍ୟବସାୟୀ ଟି.ମଟ୍ଟୋ ତାଙ୍କର ଏକ ବିବରଣୀରେ ଉଲ୍ଲେଖ କରିଛନ୍ତି।(୪)। ସେ ଯାହା ହେଉ, ପିପିଲିର ଅବସ୍ଥିତି କିପରି ତା'ର ଇତିହାସକୁ ପ୍ରଭାବିତକରିଥିଲା ତାହା ସୂଚାଇବା ପାଇଁ ଏ ସବୁର ବର୍ଣ୍ଣନା ଦିଆଗଲା। ସଦାବର୍ତ୍ତ ମଠ, କୂପ ଓ ପୁଷ୍କରିଣୀ ବ୍ୟବହାର କରି ବାହାରୁ ଆସୁଥିବା ବହୁ ଯାତ୍ରୀ ଯେ ସେଠାରେ ରାତ୍ରି ଯାପନ କରିଥିବେ, ଏଥିରେ ସନ୍ଦେହ ନାହିଁ। ଏପରିକି ଦିନେ ଦୁଇ ଦିନ ମଧ୍ୟ ରହି ପାରି ଥା'ନ୍ତି। ଶ୍ରୀ ଚୈତନ୍ୟ ତାଙ୍କର ପୁରୀ ଯିବା ବାଟରେ

---

(୪) C.U.Wills, British Relations with Nagpur States in the 18th Century - P.30

Digitized by srujanika@gmail.com

କଟକରେ ରାତ୍ରି ଯାପନ କରିବା ପରେ ପିପିଲି ନିକଟବର୍ତ୍ତୀ କୌଣସି ଏକ ପୁଷ୍କରିଣୀରେ ସ୍ନାନ କରିଥିଲେ।(୫)। ସେଠାରେ ସେ କିଛି ସମୟ ବିତାଇଥିଲେ ବୋଲି ତାଙ୍କର ଜୀବନୀକାର କୃଷ୍ଣ ଦାସ କବିରାଜ 'ଚୈତନ୍ୟ ଚରିତାମୃତ'ରେ ଉଲ୍ଲେଖ କରିଛନ୍ତି। ସେହି ରହଣୀ ମଧ୍ୟରେ ସେମାନଙ୍କର ଚାଲିଚଳଣ, ଧର୍ମ ଓ ସଂସ୍କୃତି ବିଷୟରେ ପିପିଲି ଅଧିବାସୀଙ୍କ ସହ ଆଲୋଚନା ହୋଇଥିବ। ପରସ୍ପର ମଧ୍ୟରେ ଭାବର ମଧ୍ୟ ଆଦାନ ପ୍ରଦାନ ହୋଇଥିବ। ଫଳରେ ପିପିଲିର ଐତିହ୍ୟ ଓ ସଂସ୍କୃତି ଯେ ରୁଦ୍ଧିମନ୍ତ ହୋଇଥିବ, ଏଥିରେ ସନ୍ଦେହ ନାହିଁ। ତାପରେ ଦେଖାଯାଉ ପିପିଲିର ଆୟତନ।

**ଆୟତନ :**

ପିପିଲି ନାମରେ କୌଣସି ଏକ ରାଜସ୍ୱ ଗ୍ରାମ ନାହିଁ। ପିପିଲି କହିଲେ ଏହା ବଜାର ପୂର୍ବରୁ ୮ ନମ୍ବର ରାଜପଥ ପାର୍ଶ୍ୱରେ ଥିବା ମହିଳା ସି.ଟି.ସ୍କୁଲଠାରୁ ସିରିଆପୁର (ବ୍ଲକ୍ ଛକ) ପର୍ଯ୍ୟନ୍ତ ବୁଝାଇଥାଏ। ମାତ୍ର ଅତୀତରେ ଧଉଳି ଗ୍ରାମ ସମେତ ଭଇରା ଛକଠାରୁ ସାତଶଙ୍ଖ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳକୁ ପିପିଲି ପରିସର ଭୁକ୍ତ କରାଯାଇ ତାର ଐତିହ୍ୟ ଓ ସଂସ୍କୃତି ଉପରେ ଆଲୋଚନା କରା ଯାଇଛି। ଲୋକମୁଖରୁ ଶୁଣାଯାଏ ଯେ ପିପିଲିର ପରିସୀମା ଧଉଳିଠାରୁ ବାସୁକେରା ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା। ଅବଶ୍ୟ ସମ୍ପ୍ରତି ଧଉଳି ଭୁବନେଶ୍ୱର ପଞ୍ଚାୟତ ସମିତିର ଅନ୍ତର୍ଗତ ଓ ବାସୁକେରା ସାକ୍ଷୀଗୋପାଳ ପଞ୍ଚାୟତ ସମିତିର ଅନ୍ତର୍ଭୁକ୍ତ ହୋଇ ଯାଇଛି। ବର୍ତ୍ତମାନର ପିପିଲି ତହସିଲଭୁକ୍ତ ଅଞ୍ଚଳକୁ ଆଲୋଚନାର ପରିସର ମଧ୍ୟରେ ଅଣାଯାଇଛି। ଏଥିରେ ପିପିଲି ଓ ଡେଲାଙ୍ଗ ଏହି ଦୁଇଟି ବ୍ଲକ୍ ଅନ୍ତର୍ଭୁକ୍ତ। ତନ୍ମଧ୍ୟରୁ ପିପିଲି ବ୍ଲକ୍ ପରିସର ଭୁକ୍ତ ଅଞ୍ଚଳ ଉପରେ ସବିଶେଷ ଆଲୋଚନା କରାଯାଇ ଡେଲାଙ୍ଗ ବ୍ଲକ୍ ମଧ୍ୟରେ ଅବସ୍ଥିତ କେତୋଟି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଉପରେ ଆଲୋକପାତ କରାଯାଇଛି। ଏହି ପିପିଲି ତହସିଲର ଆୟତନ ୩୮୮ ବର୍ଗ କିଲୋମିଟର ଅଟେ ଏବଂ ଏହି ବ୍ଲକର ଆୟତନ ୫୨୧୧୬.୪୯ ଏକର ହୋଇଥିଲା ବେଳେ ଡେଲାଙ୍ଗ ବ୍ଲକର ଆୟତନ ହେଉଛି ୪୮୬୮୨.୬୩ଏକର। ଏହା ଉତ୍ତରରେ ଭୁବନେଶ୍ୱର ଥାନା, ଦକ୍ଷିଣରେ ସତ୍ୟବାଦୀ ଥାନା, ପୂର୍ବରେ ନିମାପଡ଼ା ଓ ପଶ୍ଚିମରେ ଡେଲାଙ୍ଗ ଥାନା ଦ୍ୱାରା ପରିବେଷ୍ଟିତ।

---

(୫) ଚୈତନ୍ୟ ଚରିତାମୃତ - ମଧ୍ୟ ଲୀଳା - ତୃତୀୟ ଅଧ୍ୟାୟ

Digitized by srujanika@gmail.com

## ଭୌଗୋଳିକ ପରିବେଶ :

ପିପିଲିର ଇତିହାସ ରଚନା କରିବା ଦିଗରେ ତା'ର ଭୌଗୋଳିକ ପରିବେଶ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି। ପ୍ରକୃତ ପକ୍ଷେ କୌଣସି ଏକ ସ୍ଥାନର ଭୌଗୋଳିକ ପରିବେଶତା'ର ଇତିହାସକୁ ପ୍ରଭାବିତ କରିଥାଏ। ଏ ସମ୍ପର୍କରେ ପ୍ରଖ୍ୟାତ ଐତିହାସିକ କାରଲାଇଲ କହିଛନ୍ତି, "ଭୂଗୋଳ ହେଉଛି ଇତିହାସର ଚକ୍ଷୁ"। ଏହି ସତ୍ୟରେ ଇତିହାସ ପୃଷ୍ଠା ଯେତେବେଳେ ମୁଖରିତ, ପିପିଲି ଭୂମି ସେଥିରୁ ବହିର୍ଭୂତ ହୋଇଥା'ନ୍ତା ବା କିପରି ? ପ୍ରଥମେ ନଦ ନଦୀ ଉପରେ ଆଲୋଚନା କରାଯାଉ।

ପିପିଲି ମୁଖ୍ୟତଃ ୪ଟି ନଦୀ ଦ୍ୱାରା ପରିପୁଷ୍ଟ। ସେଗୁଡ଼ିକ ହେଲା ଦୟା, ଭାର୍ଗବୀ, ରତ୍ନଚିରା ଓ ଗୋଦାବରୀ। ଏବେ ଗୋଦାବରୀ ନଦୀ ଗୋଦାନନ୍ଦୀ ନାମରେ କଥିତ। ଏଗୁଡ଼ିକର ଉତ୍ପତ୍ତି, ଗତିପଥ ଓ ପତନ ସ୍ଥଳ ଥିଲା ନିମ୍ନ ପ୍ରକାରର। କାଠଯୋଡ଼ି ନଦୀରୁ କୁଆଖାଇ ଏକ ଶାଖା ନଦୀ ଭାବେ ନିର୍ଗତ ହୋଇ ହଂସପାଳ ନିକଟରେ ତାହା ଦୁଇ ଭାଗରେ ବିଭକ୍ତ ହୋଇଛି। ଯଥା- କୁଶଭଦ୍ରା ଓ ଭାର୍ଗବୀ। ପୁନଶ୍ଚ ଭାର୍ଗବୀ ଲିଙ୍ଗିପୁରଠାରେ ଦୁଇ ଭାଗରେ ବିଭକ୍ତ ହୋଇ ଭାର୍ଗବୀ ଓ ଦୟା ନାମ ବହନ କରି ସମଗ୍ର ପିପିଲି ଅଞ୍ଚଳରେ ପ୍ରବାହିତ ହେବା ପରେ ଚିଲିକାରେ ପଡ଼ିଛି। ସେହିପରି ରତ୍ନଚିରା ଭାର୍ଗବୀ ନଦୀରୁ ତରାକାଙ୍ଗ ନିକଟରୁ ନିର୍ଗତ ହୋଇ ପିପିଲି ମଧ୍ୟରେ ଗତି କରିବା ପରେ ଧାନକେରା ନିକଟରେ ଲୁଣା ନଦୀରେ ମିଳିତ ହୋଇଛି। ଏହି ନଦୀ ଉପରେ ବର୍ଣ୍ଣନା ଦେଇ କବିବର ରାଧାନାଥ ରାୟ ଲେଖିଛନ୍ତି,

> "ଦ୍ୱିଜକନ୍ୟା ଲକ୍ଷ୍ମୀ ସ୍ନାନେ ପୁଣ୍ୟନୀରା
> ସୌଗନ୍ଧିକ ଗନ୍ଧେ ଚାରୁ ରତ୍ନଚିରା।"

ଦୟା ଓ ଭାର୍ଗବୀ ନଦୀ ପରି ଲୁଣା ନଦୀ ମଧ୍ୟ ଚିଲିକାରେ ପଡ଼ିଛି। ଗୋଦାନନ୍ଦ ନାମରେ କଥିତ ଗୋଦାବରୀ ନଦୀଟି ଦୟା ନଦୀର ବେଲମରା କାଙ୍ଗରୁ ବାହାରି ପିପିଲି ଅନ୍ତର୍ଭୁକ୍ତ କେତୋଟି ଅଞ୍ଚଳ ସ୍ପର୍ଶ କରି ଶେଷରେ ଲୁଣା ନଦୀରେ ପରିଣତ ହୋଇ ଚିଲିକାରେ ପଡ଼ିଛି। ନଦୀ ବ୍ୟତୀତ କେତୋଟି କେନାଲ ମଧ୍ୟ ପିପିଲି ଅଞ୍ଚଳକୁ ଜଳସେଚିତ କରିବା ଦିଗରେ ସହାୟକ ହୋଇଛି। ତନ୍ମଧ୍ୟରୁ ଡ଼େଲାଙ୍ଗ ଓ କଣାସ କେନାଲର ନାମ ଉଲ୍ଲେଖଯୋଗ୍ୟ। ଅବଶ୍ୟ ଉପରୋକ୍ତ ୪ଟି ନଦୀ ମଧ୍ୟରୁ ଏବେ ଦୟା ଓ ଭାର୍ଗବୀ ପ୍ରକୃତ ରୂପ ନେଇ ନଦୀର

Digitized by srujanika@gmail.com

କାର୍ଯ୍ୟ କରୁଥିବା ସ୍ଥଳେ ରକ୍ତିରା ଓ ଗୋଦାନଈ ଏକ ପ୍ରକାର ମୃତ ହୋଇ ଯାଇଛନ୍ତି। ତଥାପି ଅତୀତରେ ସେହି ସବୁ ନଦୀ ପିପିଲିର ଇତିହାସକୁ ରୁଦ୍ଧିମନ୍ତ କରିବା ଦିଗରେ ସହାୟକ ହୋଇଥିଲା। କାରଣ, ସାଧାରଣତଃ କୌଣସି ଏକ ଅଞ୍ଚଳର ଇତିହାସ ଓ ସଂସ୍କୃତିକୁ କୁସୁମାୟିତ କରିବା ଦିଗରେ ସେଠାରେ ପ୍ରବାହିତ ନଦୀ ବହୁ ପରିମାଣରେ ଦାୟୀ। ବାସ୍ତବ ପକ୍ଷେ, ଇତିହାସର ଧୂସର କୁହେଳିକାଚ୍ଛନ୍ନ ଦିଗ୍‌ବଳୟରେ ମାନବ ସଭ୍ୟତା ମୁଖରିତ ହୋଇଥିଲା ନଦୀ ଉପତ୍ୟକାରୁ। କାରଣ ସେଠାରୁ ମାନବ ପାଇଥିଲା ଉର୍ବର ମୃତ୍ତିକା, ପ୍ରଚୁର ଜଳ ଓ ଗୃହନିର୍ମାଣ ଉପକରଣ ଯେଉଁଗୁଡ଼ିକ କି, ସ୍ଥାୟୀ ବାସିନ୍ଦା ହେବା ପାଇଁ ନିତାନ୍ତ ଆବଶ୍ୟକ। ସେଥିପାଇଁ ପ୍ରାଚୀନ ଇତିହାସରେ କେବଳ ନଦୀ ଉପତ୍ୟକା ହିଁ ଐତିହାସିକ ସଭ୍ୟତାର ପୀଠସ୍ଥଳୀ ହୋଇଥିଲା। ନୀଳ ନଦୀ ଉପତ୍ୟକାରେ ମିଶରୀୟ ସଭ୍ୟତା, ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍ ନଦୀ କୂଳରେ ମେସୋପଟାମିଆ ସଭ୍ୟତା, ହୋୟାଂହୋ ଓ ୟାଙ୍ଗ-ସିକିଆଙ୍ଗ ନଦୀ କୂଳରେ ଚୀନ୍ ସଭ୍ୟତା ଓ ସିନ୍ଧୁ ଉପତ୍ୟକାରେ ଭାରତୀୟ ସଭ୍ୟତା ତା'ର ପ୍ରକୃଷ୍ଟ ଉଦାହରଣ। ସେହିପରି ନଦୀଗୁଡ଼ିକ ପିପିଲି ଅଞ୍ଚଳକୁ ସମୃଦ୍ଧ କରିବା ଦିଗରେ ସହାୟକ ହୋଇଥିଲେ। ଏହି ପୁସ୍ତକର ପ୍ରକାଶକ ୮୪ ବର୍ଷ ବୟସ୍କ ଜନାର୍ଦ୍ଦନ ପଟ୍ଟନାୟକ ତଥ୍ୟ ସଂଗ୍ରହ କରିବା ଅବକାଶରେ ପ୍ରକାଶ କରିଛନ୍ତି ଯେ, ତାଙ୍କ ପିଲା ଦିନରେ ପିପିଲି ଅଞ୍ଚଳ ଧାନ, ଆଖୁ, ମୁଗ, ବିରି ଓ କୋଳଥ ଆଦି ଫସଲରେ ପରିପୁଷ୍ଟ ହୋଇଥିବାର ସେ ନିଜେ ଦେଖିଛନ୍ତି। ଏବେ ମଧ୍ୟ ନଦୀ ଓ କେନାଲ ଜଳ ଦ୍ୱାରା ଅଧୁଷିତ ହୋଇ ନିଜଗଡ଼ କୁରକୀ, ବିଶ୍ୱନାଥ ମୁଣ୍ଡିଆ ଭଳି କେତେକ ପାହାଡ଼ିଆ ଓ ଟାଙ୍ଗରା ଜମି ବ୍ୟତୀତ ଅନ୍ୟ ଅଞ୍ଚଳ ଧାନ ସମେତ ବହୁବିଧ ଫସଲରେ ହସି ଉଠୁଛି। ବର୍ତ୍ତମାନ ଭୁବନେଶ୍ୱର ବଜାର ପିପିଲି ଚାଉଳରେ ଭରପୁର ହୋଇଥିବାର ଦେଖାଯାଏ। କେବଳ ସେତିକି ନୁହେଁ, ସମସ୍ତ ନଦୀ ସୁନାବ୍ୟା ହୋଇଥିବାରୁ ଅତୀତରେ ସେଥିରେ ଡଙ୍ଗା ଦ୍ୱାରା ଜିନିଷପତ୍ର ଆମଦାନୀ ଓ ରପ୍ତାନୀ କରା ଯାଉଥିଲା। କିଛି ଦିନ ତଳେ ଭକ୍ତ ଦାସିଆ ବାଉରୀଙ୍କ ଜନ୍ମସ୍ଥଳ ଓ ତା'ର ପରିବେଶ ଉପରେ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିବା ପାଇଁ ବାଲିଗାଁକୁ ଯାଇଥିବା ଅବସରରେ ତା' ନିକଟରେ ପ୍ରବାହିତ ରକ୍ତିରା ନଦୀ କୂଳରେ ଏକ ବିରାଟ ଖମ୍ବ ରହିଥିବାର କେତେଜଣ ବୟୋବୃଦ୍ଧ ବ୍ୟକ୍ତି ପ୍ରକାଶ କରିଥିଲେ। ସେହି ଖମ୍ବରେ ନଦୀରେ ଜିନିଷ ପତ୍ର ବୋହି ନେଇ ଯାଉଥିବା ଡଙ୍ଗାଗୁଡ଼ିକ ବନ୍ଧା ହେଉଥିବାର ସେମାନେ ଦେଖିଛନ୍ତି ବୋଲି କହିଥିଲେ। ସମ୍ଭବତଃ, ପିପିଲିରୁ ଉତ୍ପାଦିତ ଶସ୍ୟ ଆମଦାନୀ ଓ ରପ୍ତାନୀ ଦ୍ରବ୍ୟର ପ୍ରାଚୁର୍ଯ୍ୟ

Digitized by srujanika@gmail.com

ପାଇଁ ଅତୀତରେ ଏହା ଏକ ବ୍ୟବସାୟ ପେଶ ରୂପେ ପ୍ରସିଦ୍ଧି ଲାଭ କରିଥିଲା। ଏବେ ମଧ୍ୟ ପିପିଲିର ସେହି ଖ୍ୟାତି ଅକ୍ଷୁଣ୍ଣ ରହିଛି। ପେଟ୍ରୋଲ ପମ୍ପ ପାଖରୁ ବ୍ଲକ୍ ଛକ ପର୍ଯ୍ୟନ୍ତ ରାଜପଥର ଉଭୟ ପାର୍ଶ୍ୱରେ ଓ ପିପିଲି-ନିମାପଡ଼ା ରାସ୍ତାର କିଛି ଦୂର ପର୍ଯ୍ୟନ୍ତ ବହୁ ବଡ଼ବଡ଼ ଦୋକାନମାନ ଦେଖିବାକୁ ମିଳିଥାଏ। ବିଶେଷତଃ ବହୁ ରଙ୍ଗରେ ସୁସଜ୍ଜିତ ବର୍ଣ୍ଣାଢ଼୍ୟ ଭାରତ ପ୍ରସିଦ୍ଧ ଚାନ୍ଦୁଆ, ଛତୀ, ତ୍ରାଶ ଆଦି ଦୋକାନ ମାନ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥାଏ। ଏହିପରି ଭାବେ ପିପିଲି ଅଞ୍ଚଳରେ ପ୍ରବାହିତ ନଦୀଗୁଡ଼ିକ ଅଧିବାସୀଙ୍କର ଅର୍ଥନୈତିକ ଅବସ୍ଥା ଋଦ୍ଧିମନ୍ତ କରିବା ଦିଗରେ ସହାୟକ ହୋଇଛି। କେବଳ ସେତିକି ନୁହେଁ, ଉର୍ବର ମୃତ୍ତିକା ଓ ବାଣିଜ୍ୟ ବ୍ୟବସାୟ ପାଇଁ ପିପିଲି ଏକ ଜନ ବହୁଳ ଅଞ୍ଚଳ ରୂପେ ସୁବିଦିତ। ୧୯୯୧ ଜନଗଣନା ଅନୁଯାୟୀ ଏହାର ୧୭ଟି ଯାଜ ପଞ୍ଚାୟତର ଲୋକସଂଖ୍ୟା ୧,୧୪,୪୩୧ରୁ ଊର୍ଦ୍ଧ୍ୱ। ତନ୍ମଧ୍ୟରୁ ପୁରୁଷମାନଙ୍କ ସଂଖ୍ୟା ୫୮,୦୮୨ ହୋଇଥିବା ସ୍ଥଳେ ସ୍ତ୍ରୀମାନଙ୍କ ସଂଖ୍ୟା ୫୬,୩୪୯। ପିପିଲି ବ୍ଲକ୍‌ର ମୋଟ ଗ୍ରାମ ସଂଖ୍ୟା ୨୧୭ ହୋଇଥିବା ସ୍ଥଳେ ଡେ଼ଲାଙ୍ଗ ବ୍ଲକ୍‌ର ଗ୍ରାମ ସଂଖ୍ୟା ୧୩୧। ପ୍ରତି ବର୍ଗ କିଲୋମିଟର ଜନସଂଖ୍ୟା ସଠିକ୍ ରୂପେ କହି ହେଉ ନଥିଲେ ମଧ୍ୟ ଗ୍ରାମଗୁଡ଼ିକ ଘନ ଜନବସତିରେ ପରିପୂର୍ଣ୍ଣ। ସେହି ଗ୍ରାମ ଗୁଡ଼ିକ ମଧ୍ୟରୁ ବୀର ପୁରୁଷୋତ୍ତମପୁର ଓ ନୂଆ ଶାସନର ନାମ ଉଲ୍ଲେଖ ଯୋଗ୍ୟ। ଗାଁ ପରିମଳ ଧୋବା ତୁଠରୁ ଜଣାହେଲା ପରି ଉକ୍ତ ଗ୍ରାମ ଗୁଡ଼ିକର ପରିବେଶ ଦେଖିଲେ ସେଗୁଡ଼ିକୁ ଆଧୁନିକତାର କିରଣ ସ୍ପର୍ଶ କରିଥିବାର ମନେହୁଏ। ଅଧିବାସୀମାନେ ମଧ୍ୟ ଉନ୍ନତ ଜୀବନ ଯାପନ କରୁଥିବାର ଧାରଣା ହୁଏ। ତନ୍ମଧ୍ୟରୁ ଦାଣ୍ଡମୁକୁନ୍ଦପୁର, ଦାନଗହୀର, ନରସିଂହପୁର, ଗୋବିନ୍ଦପୁର, ଆରୁହା, ଖୋରାପଦା, ତେଇଶପୁର, ମଙ୍ଗଳପୁର, ଲକ୍ଷ୍ମୀନାରାୟଣପୁର ଓ ରୂପଦେଇପୁର ଗ୍ରାମର ନାମ ଉଲ୍ଲେଖ ଯୋଗ୍ୟ।

ସାଧାରଣତଃ ଘନ ଜନବସତି ଓ ଉନ୍ନତ ଜୀବନ ଯାପନ ପାଇଁ ବିଭିନ୍ନ ଅଞ୍ଚଳକୁ ସଂଯୋଗ କରୁଥିବା ରାସ୍ତାଘାଟର ଭୂମିକା ଗୁରୁତ୍ୱପୂର୍ଣ୍ଣ। ଏହି ସତ୍ୟରୁ ପିପିଲି ବହିର୍ଭୂତ ନୁହେଁ। ୨୦ ନମ୍ବର ରାଜ୍ୟ ରାଜପଥ ବ୍ୟତୀତ ପିପିଲି ତହସିଲ ଦେଇ କେତେ ଗୁଡ଼ିଏ ରାସ୍ତା ନିର୍ମିତ ହୋଇଛି। ତନ୍ମଧ୍ୟରୁ ପିପିଲିରୁ ଡେ଼ଲାଙ୍ଗ, ମଠସାହିଠାରୁ ଖୋରାପଦା ଦେଇ ଡେ଼ଲାଙ୍ଗ, ସାତଶଙ୍ଖଠାରୁ ବଳଙ୍ଗା ଓ ପିପିଲିଠାରୁ ଜଟଣୀ ରାସ୍ତାର ନାମ ଉଲ୍ଲେଖନୀୟ। ସେଗୁଡ଼ିକ ମଧ୍ୟ ସବୁ ଦିନିଆ ଓ ପକ୍କା ରାସ୍ତା।

Digitized by srujanika@gmail.com

**ଅଧିବାସୀ :**

ପିପିଲି ତହସିଲରେ ସବୁ ଧର୍ମାବଲମ୍ବୀ ଲୋକ ବାସ କରୁଥିବାର ଜଣାଯାଏ । ଏହା ଏ ଅଞ୍ଚଳର ପ୍ରଧାନ ବୈଶିଷ୍ଟ୍ୟ । ହିନ୍ଦୁ ଧର୍ମାବଲମ୍ବୀଙ୍କ ବ୍ୟତୀତ ମୁସଲମାନ, ଖ୍ରୀଷ୍ଟିୟାନ, ବୌଦ୍ଧ ଓ ଜୈନମାନଙ୍କର ଏହା ଲୀଳା ଭୂମି ହୋଇଛି । ଅବଶ୍ୟ ହିନ୍ଦୁମାନଙ୍କ ଅନୁପାତରେ ଅନ୍ୟ ଧର୍ମାବଲମ୍ବୀଙ୍କ ସଂଖ୍ୟା କମ । ଦାନ ଗହିର ଓ ନରସିଂହପୁର ଗ୍ରାମ ଦୁଇଟି ମୁସଲମାନ ବହୁଳ ଅଞ୍ଚଳ । ଏବେ କେବଳ ମାତ୍ର ପିପିଲି ବିଜ୍ଞାପିତ ଅଞ୍ଚଳରେ ୫୦୦୦ରୁ ଅଧିକ ମୁସଲମାନ ସଂପ୍ରଦାୟର ବ୍ୟକ୍ତି ବାସ କରୁଥିବାର ଦେଖାଯାଏ ଓ ଏଠାରେ କେବଳ ମୁସଲମାନ ସଂପ୍ରଦାୟର ଭୋଟରମାନଙ୍କ ସଂଖ୍ୟା ୧୭୦୦ । ସେମାନେ ଏ ଅଞ୍ଚଳକୁ କେବେ ଆସିଲେ ତାହା ସଠିକ୍ ଭାବେ ନିର୍ଣ୍ଣୟ କରିବା ସମ୍ଭବପର ହେଉ ନଥିଲେ ମଧ୍ୟ ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ହିନ୍ଦୁ ରାଜତ୍ୱର ଯବନିକା ପଡ଼ିବା ପରେ ସେମାନେ ଏ ଅଞ୍ଚଳକୁ ଆସି ଥାଇ ପାରନ୍ତି । ସେହି ବର୍ଷ ବଙ୍ଗଳାର ଆଫଗାନ ମୁସଲମାନମାନେ ଓଡ଼ିଶା ଆକ୍ରମଣ କରି ନିଜର ବିଜୟ ବୈଜୟନ୍ତୀ ଉଡ଼ାଇବା ପରେ କଟକକୁ ନିଜର ରାଜଧାନୀ କରାଇଥିଲେ । ତନ୍ମଧ୍ୟରୁ କେତେଜଣ କଟକରୁ ପୁରୀ ମଧ୍ୟରେ ପଡ଼ିଥିବା ସଡ଼କରେ ଗତି କରି ହିନ୍ଦୁ ମନ୍ଦିର ଲୁଣ୍ଠନ ଆଶାରେ ପୁରୀକୁ ଆସିଥିଲେ । ବାଟରେ ପିପିଲିର ମନୋରମ ଜଳବାୟୁ, ଉର୍ବର ମୃତ୍ତିକା ଓ ପ୍ରଚୁର ପରିମାଣର ଶସ୍ୟ ଉତ୍ପାଦନ ସେମାନଙ୍କୁ ନିଶ୍ଚିତ ପକ୍ଷେ ଆକର୍ଷିତ କରିଥିବ । ଫଳରେ ଏହିଠାରେ ସେମାନେ ବସବାସ କରି ରହିବା ପରେ ସେମାନଙ୍କର ବଂଶ ବୃଦ୍ଧି ପ୍ରାପ୍ତ ହୋଇଥିଲା । ଦାନଗହିର ଗ୍ରାମରେ ବାସ କରୁଥିବା ମୁସଲମାନପୂର୍ବପୁରୁଷମାନେ ଷୋଡ଼ଶ ଶତାବ୍ଦୀର ଶେଷ ଭାଗକୁ ସେଠାକୁ ଆସିଥିବାର ଅନୁମାନ କରାଯାଏ । କାରଣ ମୁକୁନ୍ଦ ଦେବ ହରିଚନ୍ଦନ ସମ୍ଭବତଃ ବ୍ରାହ୍ମଣ ଶାସନ ସ୍ଥାପନ କରି ସେମାନଙ୍କୁ କିଛି ଚାଷ ଜମି ଦାନ ସୂତ୍ରରେ ପ୍ରଦାନ କରିଥିଲେ । ଯୁଗେ ଯୁଗେ ଏହା ଏକ ଚିରାଚରିତ ପ୍ରଥା ଭାବେ ରହି ଆସିଛି । ଗହିର ଶବ୍ଦର ଅର୍ଥ ଚାଷ ଜମି । ସେହି ଅନୁସାରେ ଗ୍ରାମର ନାମ ଦାନ ଗହିର ହୋଇଥିବାର ସ୍ଥୂଳ ଧାରଣା ଜନ୍ମେ । ସମ୍ଭବତଃ ପରେ ପରେ ହିନ୍ଦୁମାନଙ୍କୁ ବିତାଡ଼ିତ କରି ମୁସଲମାନମାନେ ସେଠାରେ ବସତି ସ୍ଥାପନ କରିଛନ୍ତି । ଏ ବିଷୟରେ ଅଧିକ ତଥ୍ୟ ପରବର୍ତ୍ତୀ ଅଧ୍ୟାୟରେ ପ୍ରଦାନ କରାଯାଇଛି ।

ସେହିପରି ଖ୍ରୀଷ୍ଟିୟାନମାନେ ପିପିଲିକୁ ସର୍ବପ୍ରଥମେ ୧୮୩୯ ମସିହାରେ ଆସିଥିବାର ଜଣାଯାଏ । ସେହି ବର୍ଷ ଚାର୍ଲସ ଲେଶୀ ସାହେବ ପିପିଲିକୁ ଏକ

Digitized by srujanika@gmail.com

ସୁସମାଚାର ପ୍ରଚାରର କେନ୍ଦ୍ର ରୂପେ ନିର୍ବାଚନ କରିଥିଲେ। ତାଙ୍କର ପ୍ରଚାର ଫଳରେ ପିପିଲି ଅଞ୍ଚଳରେ କେତେଜଣ ବ୍ୟକ୍ତି ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିଥିଲେ। ସେହି ଧର୍ମ ଗ୍ରହଣ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ମାଗୁଣି ପାଳ ହେଉଛନ୍ତି ସର୍ବ ପ୍ରଥମ। ପରେ ପରେ ଶିବ ପାଢ଼ୀ, ବନମାଳୀ ଜେନା, ଆର୍ତ୍ତ ଦାସ, କହ୍ନେଇ ଦାସ, ଗୋପୀନାଥ ମହାନ୍ତି, ବୃନ୍ଦାବନ ସାହୁ, ରଘୁବର ଦାସ, ଭୁବନ ସିଂ ଓ ଦୌଲତ ସିଂ ପ୍ରମୁଖ ବ୍ୟକ୍ତିମାନେ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିଥିଲେ। ଏବେ ପିପିଲିରେ ଖ୍ରୀଷ୍ଟ ଧର୍ମାବଲମ୍ବୀ ଅଧ୍ୟୁଷିତ ୪ଟି ଗ୍ରାମ ଦେଖିବାକୁ ମିଳେ। ସେଗୁଡ଼ିକର ନାମ ହେଲା ପୁରୁଣା ସାହି ବା ବଡ଼ସାହି, ଆଦର୍ଶପୁର, ପ୍ରତ୍ୟାଶାପୁର ଓ ଭରସାପୁର। ପୁରୁଣା ସାହି ଗ୍ରାମଟି ୧୮୪୮ ମସିହାରେ ଚାର୍ଲସ ଲେଶୀ ସ୍ଥାପନ କରିଥିବା ବେଳେ ଭରସାପୁର ଗ୍ରାମଟି ଚିମନା ଜି.ଯାଚକ ଊନବିଂଶ ଶତାବ୍ଦୀରେ ସ୍ଥାପନ କରିଥିବାର ଜଣାଯାଏ। ସେ ହେଉଛନ୍ତି ଓଡ଼ିଶାର ଜନୈକ ପ୍ରତିଷ୍ଠିତ ଖ୍ରୀଷ୍ଟିୟାନ ରାମଚନ୍ଦ୍ର ଜି. ଯାଚକଙ୍କର ବଂଶଧର। ଚିମନା ଜି. ଯାଚକ ପୋଲିସ ଇନିସ୍‌ପେକ୍ଟର ପଦରେ କିଛି ଦିନ ପିପିଲିରେ ରହିବା ପରେ ତା'ର ଭୌଗୋଳିକ ପରିବେଶ, ଅବସ୍ଥିତି ଓ ମନୋରମ ଜଳବାୟୁରେ ବିମୋହିତ ହୋଇ ସେ ନିଜେ ରହିବା ପାଇଁ ଗୋଟିଏ ବିରାଟ ହତାରେ ଏକ ବଙ୍ଗଳା ନିର୍ମାଣ କରିଥିଲେ। ନିଜ କାର୍ଯ୍ୟରୁ ଅବସର ନେବା ପରେ ସେ କଟକ ଫେରି ଆସିଥିଲେ। ମାତ୍ର ହତା ଓ ବଙ୍ଗଳା ସେ ମିଶନ କାର୍ଯ୍ୟ ପାଇଁ ଦାନ କରିଥିଲେ। ସେହି ହତାରେ ଭରସାପୁର ଗ୍ରାମଟି ସ୍ଥାପନ କରା ଯାଇଥିଲା। ଏହା ସମ୍ଭବତଃ ସେହି ଊନବିଂଶ ଶତାବ୍ଦୀ ଶେଷାର୍ଦ୍ଧର କଥା। ଆଦର୍ଶପୁର ଓ ପ୍ରତ୍ୟାଶାପୁର ଗ୍ରାମ ଦୁଇଟି ୧୮୬୬ ର ନ'ଅଙ୍କ ଦୁର୍ଭିକ୍ଷ ପରେ ସ୍ଥାପିତ ହୋଇଛି। ସେହିପରି କଣ୍ଟି ପଞ୍ଚାୟତ ଅନ୍ତର୍ଗତ ବାହିଲିପଡ଼ା ଗ୍ରାମରେ ଖ୍ରୀଷ୍ଟ ଧର୍ମାବଲମ୍ବୀ ଲୋକେ ବାସ କରୁଛନ୍ତି। ଏହା ୧୮୬୬ ପରେ ସ୍ଥାପିତ ହୋଇଥିବାର ଜଣା ପଡ଼ିଛି।

ପିପିଲିରେ ମଧ୍ୟ ଜୈନ ଧର୍ମାବଲମ୍ବୀ ବାସ କରୁଥିବାର ଜଣାଯାଏ। ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ମହାବୀର ଜୀନ ଭୁବନେଶ୍ୱରକୁ ଆସି ଧର୍ମ ପ୍ରଚାର କରିଥିଲେ। ଫଳରେ ଏହିଠାରେ ଜୈନ ଧର୍ମ ବେଶ୍ ଜନପ୍ରିୟ ହୋଇଥିଲା। ପିପିଲି ଭୂଖଣ୍ଡ ଭୁବନେଶ୍ୱରକୁ ସଂଲଗ୍ନ କରିଥିବାରୁ ସେଠାକାର କିଛି ଅଧିବାସୀ ଜୈନ ଧର୍ମ ଗ୍ରହଣ କରି ପାରି ଥାଆନ୍ତି। ଅବଶ୍ୟ ପିପିଲି ଭୂଖଣ୍ଡରେ କୌଣସି ଜୈନଗୁମ୍ଫା ପରିଲକ୍ଷିତ ହୁଏ ନାହିଁ। ଏହି ବିଂଶ ଶତାବ୍ଦୀରେ ଓଡ଼ିଶା ବାହାରୁ କିଛି ଜୈନ ଧର୍ମାବଲମ୍ବୀ ବ୍ୟବସାୟ ଉଦ୍ଦେଶ୍ୟରେ ପିପିଲିକୁ ଆସି ବସବାସ

Digitized by srujanika@gmail.com

କରି ରହିଛନ୍ତି । ସେହିପରି ୧୯୮୨ ମସିହାରେ ମୋହନ ଲାଲ ଜୈନଙ୍କର ଗୋଟିଏ ପରିବାର ଏଠାକୁ ଆସି ତମାଖୁ ଓ ଲୁଣ ବ୍ୟବସାୟ ଆରମ୍ଭ କରିଥିଲେ । ଏହି ଉଭୟ ପରିବାର ଏବେ ପିପିଲିର ବିଶିଷ୍ଟ ବ୍ୟବସାୟୀ ରୂପେ ସୁବିଦିତ ।

ପିପିଲି ଭୂଖଣ୍ଡ ମଧ୍ୟ ଅତୀତରେ ବହୁ ବୌଦ୍ଧ ଧର୍ମାବଲମ୍ବୀଙ୍କର ବାସସ୍ଥଳୀ ହୋଇଥିଲା । ଖ୍ରୀଷ୍ଟପୂର୍ବ ୨୬୧ରେ ସଂଘଟିତ କଳିଙ୍ଗ ଯୁଦ୍ଧ ପରେ ଅଶୋକ ବୌଦ୍ଧ ଧର୍ମର ପ୍ରସାର ପାଇଁ ଯତ୍ନବାନ ହୋଇଥିଲେ । ଧଉଳି ପର୍ବତରେ ଅଶୋକଙ୍କ ଦ୍ୱାରା ଖୋଦିତ ଅନୁଶାସନ ନିକଟରୁ ପିପିଲି ଭୂଖଣ୍ଡ ଆରମ୍ଭ ହୋଇଥିବାରୁ ଏହି ଅଞ୍ଚଳର ନିଶ୍ଚିତପକ୍ଷେ ବହୁ ଅଧିବାସୀ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇଥିବେ । ତାହା ହୋଇ ନଥିଲେ ବୌଦ୍ଧ ଧର୍ମର ଜଣୈକ ଆଚାର୍ଯ୍ୟ ଦିଗନାଗ ଭୋରଶୈଳରେ ରହି ଏତେ ସଂଖ୍ୟକ ବୌଦ୍ଧଗୁମ୍ଫା ନିର୍ମାଣ କରି ନ ଥାଆନ୍ତେ । କେତେକ ଏହାକୁ ଅରାଗଡ଼ ସହିତ ଚିହ୍ନିତ କରାଇଥିବା ସ୍ଥଳେ ଅନ୍ୟ କେତେକ ଏହାକୁ ବିଶ୍ୱନାଥ ମୁଣ୍ଡିଆ ସହିତ ଚିହ୍ନିତ କରାଇଛନ୍ତି । ଏବେ ମଧ୍ୟ ଦାଣ୍ଡ ମୁକୁନ୍ଦପୁର ଓ ମଉଳିବେଗ ଗ୍ରାମରେ ବହୁ ସଂଖ୍ୟକ ବୌଦ୍ଧ ଧର୍ମାବଲମ୍ବୀ ବାସ କରୁ ଅଛନ୍ତି । ସେମାନେ ମୁଖ୍ୟତଃ ରଙ୍ଗଣି ଜାତିର ଲୋକ । ସେମାନଙ୍କ ମଧ୍ୟରୁ ଜଣେ ମୁଖିଆଙ୍କ ନାମ ଏଠାରେ ଉଦ୍ଧାର କରା ଯାଇପାରେ । ସେ ହେଉଛନ୍ତି ମୁକ୍ତିପୁଷ୍ଟି ।

ଏହା ହେଉଛି ପିପିଲି ଢ଼େଲାଙ୍ଗ ଭୂଖଣ୍ଡ ଉପରେ ଏକ ସଂକ୍ଷିପ୍ତ ସୂଚନା । ସେ ସମ୍ପର୍କରେ ବିଶଦ ବିବରଣୀ ପରେ ପରେ ବିଭିନ୍ନ ଅଧ୍ୟାୟରେ ଆଲୋଚନା କରାଯାଇଛି ।

□ □ □

Digitized by srujanika@gmail.com

# ଦ୍ୱିତୀୟ ଅଧ୍ୟାୟ

## ପିପିଲି ଭୂଖଣ୍ଡର ରାଜନୈତିକ ଇତିହାସ
## ( ପ୍ରାଗ୍‌ଐତିହାସିକ ଯୁଗରୁ ଖ୍ରୀ.୧୫୬୮ ପର୍ଯ୍ୟନ୍ତ )

ପ୍ରାଚୀନ ଯୁଗରେ ପିପିଲି-ଡେଲାଙ୍ଗ ଭୂଖଣ୍ଡର ରାଜନୈତିକ ଇତିହାସ କୁହେଳିକାପୂର୍ଣ୍ଣ ଥିଲା। ତଥାପି ଉକ୍ତ ଅଞ୍ଚଳରେ ଅବସ୍ଥିତ କେତେକ ପ୍ରତ୍ନତାତ୍ତ୍ୱିକ ବିଭବ ଓ ପ୍ରକ୍ଷିପ୍ତିକୁ ଆଧାର କରି ଏକ ଧାରାବାହିକ ଇତିହାସ ପ୍ରଦତ୍ତ ହୋଇଛି। ନୂତନ ପ୍ରସ୍ତର ଯୁଗର କିଛି ହାତ ହତିଆର ପୁରୀ ଜିଲ୍ଲାର ଭୁବନେଶ୍ୱର, ଉଦୟଗିରି ପାହାଡ଼ ଓ ଶିଶୁପାଳ ଗଡ଼ଠାରୁ ମିଳିଥିବାରୁ ପିପିଲି-ଡେଲାଙ୍ଗ ଭୂଖଣ୍ଡ ମଧ୍ୟ ପ୍ରାଗୈତିହାସିକ ଯୁଗ ମାନବର ବସତିରେ ମୁଖରିତ ହୋଇଥିବାର ଚିନ୍ତା କରାଯାଇ ପାରେ। ସେହି ସମୟରେ ମଣିଷ ସାଧାରଣତଃ ନଦୀ କୂଳରେ ବସତି ସ୍ଥାପନ କରୁଥିବାରୁ ବହୁ ନଦ ନଦୀଦ୍ୱାରା ପରିପୁଷ୍ଟ ପିପିଲି ଭୂଖଣ୍ଡରେ ଜନ ବସତି ଯେ ଗଢ଼ି ଉଠିଥିବ ଏଥିରେ ସନ୍ଦେହ ନାହିଁ।

ପରେ ପରେ ପିପିଲି ମଧ୍ୟ ଓଡ଼ିଶାର ଇତିହାସକୁ ମୁଖରିତ କରିଛି। ଏହା ସେତେବେଳେ କଳିଙ୍ଗ ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା। କାରଣ ପରବର୍ତ୍ତୀ ସମୟରେ ଏକ ବର୍ଣ୍ଣନାରୁ ଜଣାଯାଏ ଯେ, କଳିଙ୍ଗ ରାଜ୍ୟ ଉତ୍ତରରେ ମହାନଦୀଠାରୁ ବଙ୍ଗୋପସାଗର କୂଳେ କୂଳେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା। ମହାଭାରତର ଏକ ବର୍ଣ୍ଣନାନୁଯାୟୀ କଳିଙ୍ଗର ରାଜା କୌରବଙ୍କ ପକ୍ଷ ଗ୍ରହଣ କରିଥିବା ସ୍ଥଳେ ଓଡ୍ର ଦେଶର ରାଜା ପାଣ୍ଡବଙ୍କର ପକ୍ଷ ଗ୍ରହଣ କରିଥିଲେ।



Digitized by srujanika@gmail.com

ସେହି ଯୁଦ୍ଧରେ ସହଦେବ କଳିଙ୍ଗର ରାଜାଙ୍କୁ ପରାଜିତ କରିଥିବାର ଜଣାଯାଏ (୧)। ଏହି ବର୍ଣ୍ଣନାକୁ ଆଧାର କରି ଅନୁମାନ କରାଯାଇପାରେ ଯେ, ପିପିଲି ଭୂଖଣ୍ଡର କିଛି ଲୋକ କୌରବଙ୍କର ପକ୍ଷ ସମର୍ଥନ କରି ମହାଭାରତ ଯୁଦ୍ଧରେ ଅଂଶ ଗ୍ରହଣ କରିପାରି ଥାଆନ୍ତି। ଅବଶ୍ୟ ମହାଭାରତରେ ବର୍ଣ୍ଣିତ ସବୁ ଘଟଣା ଏ ପର୍ଯ୍ୟନ୍ତ ଇତିହାସ ସମ୍ମତ ହୋଇପାରି ନାହିଁ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ କଳିଙ୍ଗର ଇତିହାସ ଆଲୋକିତ ହୁଏ ମହାବୀର ଜୀନଙ୍କର ଆଗମନ ଅବସରରେ। ତାହା କେତେକ ଜୈନ ଗ୍ରନ୍ଥରୁ ମିଳିଥାଏ। ତନ୍ମଧ୍ୟରୁ ଜୈନ ଶାସ୍ତ୍ର ହରିବଂଶ ପୁରାଣ, ଆବଶ୍ୟକ ସୂତ୍ର, ଜୈନ ଲେଖକ ହରିଭଦ୍ରଙ୍କଦ୍ୱାରା ଆବଶ୍ୟକ ସୂତ୍ର ଉପରେ ଲିଖିତ ଟୀକା ଓ ହରିଭଦ୍ରୀୟ ଭିତ୍ତି ଆଦି ଗ୍ରନ୍ଥର ନାମ ଉଲ୍ଲେଖଯୋଗ୍ୟ। ଉପରୋକ୍ତ ଗ୍ରନ୍ଥ ଅନୁଯାୟୀ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ମହାବୀର ଜୀନ କଳିଙ୍ଗକୁ ଆଗମନ କରି କୁମାରୀ ପର୍ବତ (ଅଧୁନା ଭୁବନେଶ୍ୱରରେ ଅବସ୍ଥିତ ଉଦୟଗିରି) ଉପରେ ଧର୍ମବାଣୀ ପ୍ରଦାନ କରିଥିଲେ। ସେଥିରେ ମଧ୍ୟ ଉଲ୍ଲେଖ ଅଛି ଯେ, କଳିଙ୍ଗର ତତ୍‌କାଳୀନ ରାଜା ଓ ମହାବୀରଙ୍କ ପିତାଙ୍କ ମଧ୍ୟରେ ସୁସମ୍ପର୍କ ସ୍ଥାପିତ ହୋଇଥିଲା। ତେଣୁ ରାଜାଙ୍କ ନିମନ୍ତ୍ରଣ କ୍ରମେ ମହାବୀର ଭୁବନେଶ୍ୱରକୁ ଆଗମନ କରିପାରିଥା'ନ୍ତି। ତାଙ୍କ ଆଗମନ ପରେ ଭୁବନେଶ୍ୱରରେ ଜୈନ ଧର୍ମ ବେଶ୍ ଜନପ୍ରିୟ ହୋଇଥିଲା। ଭୁବନେଶ୍ୱରଠାରୁ ଅନତିଦୂରରେ ଆମର ଆଲୋଚ୍ୟ ପିପିଲି ଭୂଖଣ୍ଡ ଆରମ୍ଭ ହୋଇଥିବାରୁ ସେହି ଅଞ୍ଚଳରେ ମହାବୀର ଜୀନଙ୍କ ଧର୍ମବାଣୀର ପ୍ରଭାବ ଯେ ପଡ଼ି ନ ଥିବ ତାହା ନୁହେଁ, ଏଥି ସହିତ ଉକ୍ତ ଭୂଖଣ୍ଡରେ ଜୈନ ଧର୍ମ ଜନପ୍ରିୟ ହୋଇଥିବ ଏଥିରେ ସନ୍ଦେହ ନାହିଁ। କାରଣ ଭୁବନେଶ୍ୱର ପରି ଉକ୍ତ ଅଞ୍ଚଳ ଥିଲା ଜନବହୁଳ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ପରେ ପିପିଲି-ଦେଲାଙ୍ଗ ସମେତ ଭୁବନେଶ୍ୱରର ଇତିହାସ ମୁଖରିତ ହୁଏ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ ମଗଧର ନନ୍ଦ ବଂଶଙ୍କ ରାଜତ୍ୱ ସମୟରେ। ମଗଧର ନନ୍ଦ ରାଜା କଳିଙ୍ଗ ଜୟ କରି ନିଜ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ କରାଇଥିବାର ବିଶ୍ୱାସ କରାଯାଏ। ସେତେବେଳେ ପିପିଲି ଭୂଖଣ୍ଡ ସମେତ ଭୁବନେଶ୍ୱରରେ ଜୈନ ଧର୍ମ କିପରି ଜନପ୍ରିୟ ହୋଇଥିଲା ତାହା ଗୋଟିଏ ଘଟଣାରୁ ସୂଚିତ ହୁଏ। ସେହି ସମୟରେ ଓଡ଼ିଆ ଜାତିର ସର୍ବୋଚ୍ଚ ଓ ସର୍ବ ପ୍ରଧାନ ଉପାସନାର ଆଧାର ଥିଲା ଜୀନାସନ ବିଗ୍ରହ। ଏହା ସହିତ ଓଡ଼ିଆ ଜାତିର

---

(୧) K.C.Panigrahi: History of Orissa- PP.8-9

Digitized by srujanika@gmail.com

ଗର୍ବ ଓ ମର୍ଯ୍ୟାଦା ନିହିତ ଥିଲା । ସେଥିପାଇଁ ନନ୍ଦ ରାଜା କଳିଙ୍ଗ ଜୟ କରିବା ପରେ ବିଜୟର ସଂକେତ ରୂପେ ସେହି ଜୀନାସନକୁ ନିଜ ରାଜ୍ୟ ମଗଧକୁ ନେଇ ଯାଇଥିଲେ । ଏହି ତଥ୍ୟ ଭୁବନେଶ୍ୱରସ୍ଥିତ ହାତୀଗୁମ୍ଫା ଶିଳାଲେଖରେ ବର୍ଣ୍ଣିତ ଅଛି । ସେହି ନନ୍ଦ ରାଜାଙ୍କୁ କେତେକ ମହାପଦ୍ମାନନ୍ଦଙ୍କ ସହ ଚିହ୍ନିତ କରାଇଛନ୍ତି । ମାତ୍ର ପିପିଲି-ଭୁବନେଶ୍ୱର ଅନ୍ତର୍ଗତ କଳିଙ୍ଗ ରାଜ୍ୟ କେବେ ସ୍ୱାଧୀନତା ଘୋଷଣା କରିଛି ତାହା ସଠିକ୍ ରୂପେ କହି ହେବ ନାହିଁ । କିନ୍ତୁ ନନ୍ଦ ବଂଶର ରାଜୁତି ପରେ ମଗଧରେ ରାଜତ୍ୱ କରିଥିବା ମୌର୍ଯ୍ୟ ବଂଶର ପ୍ରତିଷ୍ଠାତା ପ୍ରଥିତଯଶା ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସମୟରେ କଳିଙ୍ଗ ଯେ ସ୍ୱାଧୀନ ରାଜ୍ୟ ଥିଲା ତାହା ନିଃସନ୍ଦେହରେ କୁହା ଯାଇପାରେ ।

## କଳିଙ୍ଗ ଯୁଦ୍ଧ ଓ ପିପିଲି :

ମୌର୍ଯ୍ୟ ବଂଶର ତୃତୀୟ ନରପତି ଅଶୋକଙ୍କର ରାଜତ୍ୱରେ ଭୁବନେଶ୍ୱର ଓ ତା'ର ଉପକଣ୍ଠରେ ଅବସ୍ଥିତ ଭୂଖଣ୍ଡର ଐତିହ୍ୟ ଥିଲା ଭାରତ ବର୍ଷର ଇତିହାସରେ ଏକ ଘଟଣା ବହୁଳ ଅଧ୍ୟାୟ । ପୂର୍ବରୁ ସୂଚିତ ହୋଇଛି ଯେ, ସେତେବେଳେ ବଙ୍ଗୋପସାଗରର ପାର୍ଶ୍ୱବର୍ତ୍ତୀ ଅଞ୍ଚଳକୁ ନେଇ ଉତ୍ତରରେ ମହାନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ସ୍ୱାଧୀନ କଳିଙ୍ଗ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା । ଏହାର ରାଜଧାନୀ ଥିଲା ତୋଷାଳୀ । ତେଣୁ କଳିଙ୍ଗ ସାମ୍ରାଜ୍ୟକୁ କେହି କେହି ତୋଷାଳୀ-କଳିଙ୍ଗ ବୋଲି କହିଥା'ନ୍ତି । ଏହି ତୋଷାଳୀ-କଳିଙ୍ଗ ସାମ୍ରାଜ୍ୟର ରାଜଧାନୀ ଥିଲା ଧଉଳି । ଏହା ଭୁବନେଶ୍ୱରଠାରୁ ୧୦ କିଲୋମିଟର ଦକ୍ଷିଣକୁ ଦୟାନଦୀ ପାର୍ଶ୍ୱ ଧଉଳି ଗ୍ରାମ ସହିତ ଚିହ୍ନିତ କରାଯାଏ । ବେଣୀ ମାଧବ ବରୁଆ ଧଉଳିକୁ ତୋଷାଳୀ ଶବ୍ଦର ଅପଭ୍ରଂଶ ରୂପେ ପ୍ରତିପାଦନ କରିଛନ୍ତି । ସେହିପରି ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ତୋଷାଳୀ ଶବ୍ଦ କାଳ କ୍ରମେ ତୋହଳି, ଦୋହଳି ଓ ଧଉଳି ରୂପେ ଅପଭ୍ରଂଶ ହୋଇଥିବାର ଉଲ୍ଲେଖ କରିଛନ୍ତି । ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ଦରବାରକୁ ଆସିଥିବା ଗ୍ରୀକ୍ ଦୂତ ମେଗାସ୍ଥିନିସ୍‌ଙ୍କ ବିବରଣୀରୁ ଜଣାଯାଏ ଯେ, ପାର୍ଥଲୀ କଳିଙ୍ଗର ରାଜଧାନୀ ଥିଲା । ତେଣୁ ଏହାକୁ ତୋଷାଳୀ ବା ଧଉଳି ସହିତ ଚିହ୍ନିତ କରାଯାଇ ପାରେ । ଖ୍ରୀଷ୍ଟୀୟ ୧୫୦ରେ ଲିଖିତ ଟୋଲେମୀ ତାଙ୍କ ଭୂଗୋଳ ପୁସ୍ତକରେ ସମ୍ଭବତଃ ଏହାକୁ ହିଁ ତୋଷାଳୀ ବୋଲି କହିଛନ୍ତି । ସେ ଯାହା ହେଉ, ଏହି ସୁଦୂର ପ୍ରସାରୀ ତୋଷାଳୀ-କଳିଙ୍ଗ ସାମ୍ରାଜ୍ୟର ସ୍ୱାଧୀନ ଅବସ୍ଥିତି ଅଶୋକଙ୍କର ଚକ୍ଷୁଶୂଳ ହୋଇଥିଲା । ସେତେବେଳେ କଳିଙ୍ଗ ମଧ ଜାଭା, ମାଳୟ ଓ ସିଂହଳ ଆଦି ଦେଶ ସହିତ ବାଣିଜ୍ୟିକ ସଂପର୍କ ପ୍ରତିଷ୍ଠା କରି ବିପୁଳ ଧନ ସମ୍ପତ୍ତିର

Digitized by srujanika@gmail.com

ଅଧିକାରୀ ହୋଇ ପାରିଥିଲା। ଏତଦ୍ ବ୍ୟତୀତ ସମଗ୍ର ଭାରତ ବର୍ଷରେ ତତ୍‌କାଳୀନ କଳିଙ୍ଗ ସାମ୍ରାଜ୍ୟ ଏକ ଶକ୍ତିଶାଳୀ ଓ ପରାକ୍ରମଶାଳୀ ସାମ୍ରାଜ୍ୟ ଭାବେ ମୁଣ୍ଡ ଟେକି ଉଠିଥିଲା। ଅଶୋକଙ୍କର ଶିଳାଲେଖରୁ ଜଣାଯାଏ ଯେ, କଳିଙ୍ଗର ଅଧିବାସୀ ରଣପଟୁ ଓ ନିର୍ଭୀକ ଯୋଦ୍ଧା ଭାବେ ନିଜକୁ ସୁପ୍ରତିଷ୍ଠିତ କରାଇ ପାରିଥିଲେ। ଏହି ସବୁ କାରଣରୁ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ। ନିଜ ମାତୃଭୂମିର ସମ୍ମାନ ରକ୍ଷା କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇ କଳିଙ୍ଗର ଅଧିବାସୀ ଅଶୋକଙ୍କ ବିଶାଳ ସେନା ବାହିନୀର ପ୍ରତିରୋଧ କରିଥିଲେ। ତେଣୁ ଭୁବନେଶ୍ୱରର ଅନତିଦୂରରେ ଅବସ୍ଥିତ ଧଉଳିର ପାଦ ଦେଶରେ ଏକ ଭୟାବହ ରକ୍ତାକ୍ତ ଯୁଦ୍ଧ ସଂଘଟିତ ହୋଇଥିଲା।

ଧଉଳିର ପଶ୍ଚିମ ଭାଗରେ ଅବସ୍ଥିତ ବିସ୍ତୀର୍ଣ୍ଣ ପ୍ରାନ୍ତର ଯୁଦ୍ଧ କ୍ଷେତ୍ର ହୋଇଥିବାର ବିଶ୍ୱାସ କରାଯାଏ। ଏହା ଅଧୁନା ଭୀମଟାଙ୍ଗିଠାରୁ ବରଗଡ଼ଟାଙ୍ଗି ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଅଞ୍ଚଳ ସହିତ ଚିହ୍ନିତ କରାଯାଇପାରେ (୨)।ଅଶୋକଙ୍କର ତ୍ରୟୋଦଶ ଅନୁଶାସନରୁ ଜଣାଯାଏ ଯେ, ଯୁଦ୍ଧ କ୍ଷେତ୍ରରେ ପ୍ରାୟ ୧,୦୦,୦୦୦ ଲୋକ ନିହତ, ୧,୫୦,୦୦୦ ଲୋକ ବନ୍ଦୀ ଓ ତା'ଠାରୁ ଅଧିକ ସଂଖ୍ୟକ ଲୋକ କ୍ଷତ ବିକ୍ଷତ ହୋଇଥିଲେ। ଏହି ତଥ୍ୟ ଅନୁଯାୟୀ କଳିଙ୍ଗ ଯୁଦ୍ଧରେ ପ୍ରାୟ ୩,୦୦,୦୦୦ ସୈନ୍ୟ ଅଂଶ ଗ୍ରହଣ କରିଥିଲେ। ଗ୍ରୀକ୍ ଦୂତ ମେଗାସ୍ଥିନିସ୍‌ଙ୍କ ବିବରଣୀରୁ ଜଣାଯାଏ ଯେ, ତାଙ୍କ ସମୟରେ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ କଳିଙ୍ଗ ଦେଶର ସେନାବାହିନୀ ୬୦,୦୦୦ ପଦାତିକ, ୧୦୦୦ ଅଶ୍ୱ, ୭୦୦ ହସ୍ତୀଙ୍କୁ ନେଇ ଗଠିତ ହୋଇଥିଲା। ଏହି ସ୍ଥାୟୀ ସେନାବାହିନୀ ବ୍ୟତୀତ ସୁସ୍ଥ ସବଳ, କର୍ମଠ ଓ ଉତ୍ସାହୀ ଯୁବକଗଣ ଯୁଦ୍ଧ ବିଦ୍ୟା ଶିକ୍ଷା କରି ଦେଶ ରକ୍ଷା ତଥା ଦେଶ ବିଜୟ ପାଇଁ ରଣାଙ୍ଗନରେ ଅବତୀର୍ଣ୍ଣ ହେବା ନିମନ୍ତେ ସଦା ସର୍ବଦା ପ୍ରସ୍ତୁତ ହୋଇ ରହୁଥିଲେ। ସେ ଯାହା ହେଉ, ଧଉଳିଠାରେ ଅଶୋକଙ୍କର ସେନାବାହିନୀର ପ୍ରସ୍ତୁତି ଓ ଅସ୍ତ୍ରଶସ୍ତ୍ରରୁ ନିନାଦିତ ଶବ୍ଦ ତା'ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଲୋକଙ୍କ ଶରୀରରେ ଅପୂର୍ବ ଶିହରଣ ସୃଷ୍ଟି କରିଥିବ। ନିଜ ମାତୃଭୂମିର ସମ୍ମାନ ବଜାୟ ରଖିବା ପାଇଁ ସେମାନଙ୍କ ହୃଦୟରେ ନାହିଁ ନଥିବା ଉନ୍ମାଦନା ଓ ସ୍ପନ୍ଦନ ସୃଷ୍ଟି ହୋଇଥିବ। ସେହି ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ମଧ୍ୟରୁ ପିପିଲି ଭୂଖଣ୍ଡ ଅନ୍ୟତମ।

ଧଉଳିକୁ ସଂଲଗ୍ନ କରୁଥିବା ପିପିଲି ଏକ ଜନବହୁଳ ଅଞ୍ଚଳ ହୋଇଥିବାରୁ

---

(୨) କେଦାରନାଥ ମହାପାତ୍ର; ଧଉଳୀର ଇତିହାସ - ପୃ.୩୮

Digitized by srujanika@gmail.com

ସମ୍ଭବତଃ, ଏହି ଭୂଖଣ୍ଡରୁ ବହୁ ସଂଖ୍ୟକ ଲୋକ କଳିଙ୍ଗ ଯୁଦ୍ଧରେ ଅଂଶ ଗ୍ରହଣ କରିଥିବେ। ହୁଏତ, ସମଗ୍ର ପିପିଲି ଅଞ୍ଚଳଟି ଯୁଦ୍ଧ ସମୟରେ ସେନାଛାଉଣୀରେ ପରିଣତ ହୋଇ ଯୁଦ୍ଧ ପରେ ଜନ ମାନବ ଶୂନ୍ୟ ହୋଇ ପଡ଼ିଥିବ। ସେ ଯାହା ହେଉ, ନିର୍ଭୀକ କଳିଙ୍ଗ ଅଧିବାସୀମାନଙ୍କର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ଅଶୋକ ପରିଶେଷରେ ବିଜୟ ମଣ୍ଡିତ ହୋଇଥିଲେ। ମାତ୍ର ଫଳାଫଳ ଦୃଷ୍ଟିରୁ ବିଚାର କଲେ ଅଶୋକଙ୍କର ବିଜୟ ପ୍ରକୃତ ବିଜୟ ନଥିଲା। ଯୁଦ୍ଧ ପରେ ଧଉଳି ପାହାଡ଼ରେ ଖ୍ରୀଷ୍ଟପୂର୍ବ ୨୫୭ରେ ଅଶୋକଙ୍କଦ୍ୱାରା ଉତ୍କୀର୍ଣ୍ଣ ଅନୁଶାସନରେ ତୋଷାଳୀର ଶାସନ ପରିଚାଳନା କରୁଥିବା କୁମାରମାତ୍ୟ, ମହାମାତର ଓ ନଗରବ୍ୟବହାରିକ ପ୍ରମୁଖ ରାଜ କର୍ମଚାରୀମାନଙ୍କୁ ସୁଶାସନ ନିମନ୍ତେ ସେ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ନୂତନ ଭାବେ ଅଧିକୃତ କଳିଙ୍ଗର ଅସନ୍ତୁଷ୍ଟ ଓ ଉଦ୍‌ବିଗ୍ନ ପ୍ରଜାମାନଙ୍କୁ ଗଭୀର ସାନ୍ତ୍ୱନା ଦେଇଥିଲେ। ଧଉଳିର ଅନତିଦୂରରେ ଶିଶୁପାଳଗଡ଼ ଅବସ୍ଥିତ ହୋଇଥିବାରୁ ଏବଂ ତାହା ଏକ ସୁରକ୍ଷିତ ସ୍ଥାନ ହୋଇଥିବାରୁ ସେହିଠାରେ ଅଶୋକଙ୍କର ରାଜକର୍ମଚାରୀମାନେ ରହୁଥିବାର ଅନୁମାନ କରାଯାଏ। ଏହି ଶିଶୁପାଳଗଡ଼ଠାରୁ ଅଳ୍ପ ଦୂରରେ ଆରମ୍ଭ ହୋଇଥିବା ପିପିଲି ଭୂଖଣ୍ଡ ଯୁଦ୍ଧରେ ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଥିବାରୁ ସେହି ପ୍ରଶାସକ ବୃନ୍ଦ ସେଠାକୁ ବହୁ ସମୟରେ ଗମନା ଗମନ କରି ଜୀବିତ ଲୋକମାନଙ୍କର ଭଲମନ୍ଦ ବୁଝିଥିବେ। ସେ ଯାହାହେଉ, ଅଶୋକଙ୍କ ପରେ କଳିଙ୍ଗ କେବେ ତା'ର ସ୍ୱାଧୀନତା ଫେରି ପାଇଛି ତାହା ନିର୍ଦ୍ଦିଷ୍ଟ ଭାବେ ଜଣାଯାଏ ନାହିଁ। ମାତ୍ର ଖ୍ରୀଷ୍ଟପୂର୍ବ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀରେ ମହାମେଘବାହାନ ଐର ଖାରବେଳଙ୍କ ରାଜତ୍ୱରେ କଳିଙ୍ଗ ଏକ ସ୍ୱାଧୀନ ରାଷ୍ଟ୍ରର ରୂପ ନେଇଥିଲା।

ଏହି ପରିପ୍ରେକ୍ଷୀରେ ବହୁ ଚର୍ଚ୍ଚିତ ଓ ଗୁରୁତ୍ୱପୂର୍ଣ୍ଣ ଧଉଳି ପାହାଡ଼ର ନାମକରଣ ଉପରେ କିଞ୍ଚିତ୍ ଆଲୋକପାତ କରିବା ଆବଶ୍ୟକ। ପ୍ରଥମେ ଧଉଳି ପର୍ବତକୁ ସୁରଭ ପର୍ବତ କୁହା ଯାଉଥିଲା। କାଳକ୍ରମେ ସେହି ନାମ ବିସ୍ମୃତ ହୋଇ ଏବେ ପର୍ବତର ନାମ ଧଉଳି ପର୍ବତ ହୋଇଛି। ଏହି ପର୍ବତ ଶିଖରରେ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ନିର୍ମିତ ଏକ ଶିବ ଲିଙ୍ଗ ଅଦ୍ୟାବଧି ଧବଳେଶ୍ୱର ନାମରେ ପୂଜିତ ହେଉଛନ୍ତି। ତା'ର ନାମାନୁସାରେ ଧଉଳେଶ୍ୱର ପର୍ବତ ବା ଧଉଳି ପାହାଡ଼ ନାମ ଧାରଣ କରିଛି।(୩)।

---

(୩) କେଦାରନାଥ ମହାପାତ୍ର: ଧଉଳୀର ଇତିହାସ- ପୃ.୮୪

Digitized by srujanika@gmail.com

## ଖାରବେଳଙ୍କ ରାଜତ୍ୱ ଓ ପିପିଲି :

ଅଶୋକଙ୍କ ପରେ ଓଡ଼ିଶା ଇତିହାସରେ ଏକ ଗୌରବମୟ ଅଧ୍ୟାୟ ଉଦ୍‌ଘାଟିତ ହୁଏ ଚେଦୀ ବଂଶର ତୃତୀୟ ବଂଶଧର ମହାମେଘବାହାନ ଐର ଖାରବେଳଙ୍କ ରାଜତ୍ୱରେ। ସେ ଥିଲେ ଏକାଧାରରେ ଜଣେ ଅସାଧାରଣ ବୀର, ଜନହିତୈଷୀ ଶାସକ, ଜୈନ ଧର୍ମ ଓ ସଂସ୍କୃତିର ପରମ ପୃଷ୍ଠପୋଷକ। ମାତ୍ର ତାଙ୍କ ରାଜତ୍ୱରେ ପିପିଲିରେ ସେପରି କିଛି ଘଟଣା ସଂଘଟିତ ହୋଇଥିବାର ଜଣାଯାଏ ନାହିଁ। ଅବଶ୍ୟ ତାଙ୍କର ରାଜଧାନୀ କଳିଙ୍ଗନଗରୀକୁ ବି.ବି.ଲାଲ ଶିଶୁପାଳଗଡ଼ ସହିତ ଚିହ୍ନିତ କରାଇଛନ୍ତି। ସେ ଶିଶୁପାଳଗଡ଼ର ପ୍ରତ୍ନତାତ୍ତ୍ୱିକ ଖୋଦନ ଦାୟିତ୍ୱରେ ଥିଲେ। ଏ ସମ୍ପର୍କରେ ସେ ମଧ୍ୟ କେତେକ ସମ୍ଭାବ୍ୟ ଯୁକ୍ତି ବାଢ଼ିଛନ୍ତି। ତାହା ଗ୍ରହଣ କଲେ ସମ୍ଭବତଃ କଳିଙ୍ଗ ମଗଧ ଶାସନରୁ ମୁକ୍ତ ହେବା ପରେ ଶିଶୁପାଳଗଡ଼ ସ୍ୱାଧୀନ କଳିଙ୍ଗର ରାଜଧାନୀ ଭାବେ ଗୌରବ ଅର୍ଜନ କରି ସେହି ସମୟ ଠାରୁ ତାହା କଳିଙ୍ଗ ନଗରୀ ନାମରେ ଖ୍ୟାତ ହୋଇଛି। ଶିଶୁପାଳଗଡ଼ର ଅବସ୍ଥିତି ପିପିଲି ଭୂଖଣ୍ଡର ନିକଟବର୍ତ୍ତୀ ହୋଇଥିବାରୁ ଖାରବେଳଙ୍କ ରାଜତ୍ୱରେ ମଧ୍ୟ ସେଠାରେ ବିଭିନ୍ନ ଦାୟିତ୍ୱରେ ଅବସ୍ଥାପିତ ରାଜ କର୍ମଚାରୀ ପିପିଲି ଭୂଖଣ୍ଡ ପରି ଏକ ଜନ ବହୁଳ ଅଞ୍ଚଳକୁ ବହୁବାର ଗମନ କରିଥିବେ। ସେହି ସମୟରେ ବା ତା' ପୂର୍ବରୁ ତୋଷାଳୀ ଓ ଉଜ୍ଜୟିନୀକୁ ସଂଯୋଗ କରୁଥିବା ରାଜପଥ ଦୟାନଦୀ କୂଳେ କୂଳେ ପିପିଲି-ଡ଼େଲାଙ୍ଗ ଭୂଖଣ୍ଡରେ ଅବସ୍ଥିତ ଅରାଗଡ଼ ପର୍ଯ୍ୟନ୍ତ ଗତି କରି ସେଠାରୁ ବରୁଣାଇ ଘାଟୀ ପାର ହୋଇଥିବା ବିଷୟ କେଦାରନାଥ ମହାପାତ୍ର ଉଲ୍ଲେଖ କରିଛନ୍ତି।(୪)।

## ଖାରବେଳଙ୍କ ପରେ ପିପିଲିର ଇତିହାସ (୧ମ ଖ୍ରୀ.-୯୨୩ଖ୍ରୀ.) :

ଖାରବେଳଙ୍କ ସାମ୍ରାଜ୍ୟ ଓ ତାଙ୍କ ବଂଶର ପତନଠାରୁ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ଆନ୍ଧ୍ର ସାତବଂଶୀୟ ନରପତିଗଣ ରାଜୁତି କରୁଥିବାର ଜଣାଯାଏ। ସମ୍ଭବତଃ, ଉକ୍ତ ବଂଶର ପ୍ରଖ୍ୟାତ ନରପତି ଦ୍ୱିତୀୟ ସାତକର୍ଣ୍ଣୀ ଖାରବେଳଙ୍କ ରାଜତ୍ୱର ଯବନିକା ଟାଣିଥିଲେ। ଶିଶୁପାଳଗଡ଼ର ଧ୍ୱଂସାବଶେଷରୁ ପ୍ରାପ୍ତ ଆନ୍ଧ୍ର ସାତବାହାନ ମୁଦ୍ରାରୁ ସୂଚିତ ହୁଏ ଯେ, ଉକ୍ତ ବଂଶର ନରପତିମାନେ ଭୁବନେଶ୍ୱର ଓ ତା'ର ପାର୍ଶ୍ୱବର୍ତ୍ତୀ ଭୂଖଣ୍ଡରେ ବିଶେଷ ଭାବେ ନିଜର ଆଧିପତ୍ୟ ବିସ୍ତାର କରିଥିଲେ। ସେହି ଶିଶୁପାଳଗଡ଼ରୁ ପ୍ରାପ୍ତ ସ୍ୱର୍ଣ୍ଣ ମୁଦ୍ରା ଓ ପୁରୀ କୁଶାଣ ମୁଦ୍ରା ଅନୁଧ୍ୟାନ କଲେ ଜଣାଯାଏ ଯେ, କଳିଙ୍ଗ ବିଶେଷତଃ ଭୁବନେଶ୍ୱର ଓ

---

(୪) କେଦାରନାଥ ମହାପାତ୍ର : ଖୋର୍ଦ୍ଧାର ଇତିହାସ

Digitized by srujanika@gmail.com

ତାର ଆଖପାଖ ଅଞ୍ଚଳରେ ମୁରୁଣ୍ଡା ନାମଧେୟ ଅନ୍ୟ ଏକ ରାଜବଂଶ ରାଜୁତି କରୁଥିଲେ। ଏହାଥିଲା ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର କଥା। ଉକ୍ତ ବଂଶର ନରପତି ଥିଲେ ମହାରାଜା ରାଜାଧିରାଜ ଧର୍ମଧାମଧର। ଅବଶ୍ୟ ତାଙ୍କର ରାଜଧାନୀ ଥିଲା ପାଟଳୀପୁତ୍ର। ଏହି ମୁରୁଣ୍ଡା ରାଜବଂଶର ରାଜୁତି ଓଡ଼ିଶାର ରାଜନୈତିକ ପଟ୍ଟଭୂମିରୁ କେବେ ବିଦାୟ ନେଇଥିଲା ତାହା ସଠିକ୍ ରୂପେ କହି ହେବ ନାହିଁ। ପୁନଶ୍ଚ ଭୁବନେଶ୍ୱର ଓ ତା'ର ଉପକଣ୍ଠରେ କିଛି ଗୁପ୍ତ ଯୁଗୀୟ ପ୍ରସ୍ତର କୀର୍ତ୍ତି ଓ ଓଡ଼ିଶାରେ ଗୁପ୍ତାବ୍ଦର ପ୍ରଚଳନରୁ ଜଣାଯାଏ ଯେ, ସମ୍ଭବତଃ ପିପିଲି ସମେତ ଭୁବନେଶ୍ୱର ଭୂଖଣ୍ଡରେ ଗୁପ୍ତଯୁଗୀୟ ପ୍ରଭାବ ପଡ଼ିଥିଲା।

ଖ୍ରୀଷ୍ଟିୟ ଚତୁର୍ଥ ଶତାବ୍ଦୀରେ ପିପିଲି-ଢ଼େଲାଙ୍ଗ ଭୂଖଣ୍ଡ ଓଡ଼ିଶାର ସାଂସ୍କୃତିକ ଦିଗ୍‌ବଳୟକୁ ଉଦ୍‌ଭାସିତ କରିଥିଲା। ସେହି ସମୟରେ ୩୩୫ ଖ୍ରୀଷ୍ଟାବ୍ଦରୁ ୩୭୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ରାଜୁତି କରିଥିବା ଲବ୍ଧପ୍ରତିଷ୍ଠ ଗୁପ୍ତ ନରପତି ସମୁଦ୍ରଗୁପ୍ତଙ୍କ ରାଜସଭାରେ ଥିବା ଖ୍ୟାତନାମା ବୌଦ୍ଧ ପଣ୍ଡିତ ବସୁବନ୍ଧୁଙ୍କ ଶିଷ୍ୟ ଆଚାର୍ଯ୍ୟ ଦିଙ୍‌ନାଗ ଧଉଳି ପାହାଡ଼ଠାରୁ ଅଳ୍ପ କିଛି ଦୂରରେ ଅବସ୍ଥିତ ଭୋରଶୈଳ ନାମକ ଏକ ପାହାଡ଼ରେ ନିଜର ଏକ କେନ୍ଦ୍ର ପ୍ରତିଷ୍ଠା କରିଥିଲେ। ଡକ୍ଟର ନବୀନ କୁମାର ସାହୁ ଏହାକୁ ଢ଼େଲାଙ୍ଗ ନିକଟବର୍ତ୍ତୀ ବିଶ୍ୱନାଥ ମୁଣ୍ଡିଆ ସହିତ ଚିହ୍ନିତ କରାଇଛନ୍ତି।(୫)। ଦିଙ୍‌ନାଗଙ୍କ ବାସସ୍ଥାନ କାଳକ୍ରମେ ଢ଼େଲାଙ୍ଗ ନାମ ଧାରଣ କରିଛି। ଆଚାର୍ଯ୍ୟ ଦିଙ୍‌ନାଗ ୧୬ଟି ବୌଦ୍ଧ ବିହାର ଶୈଳମାନଙ୍କ ଉପରେ ନିର୍ମାଣ କରାଇଥିବାର ଜଣାଯାଏ। ତନ୍ମଧ୍ୟରୁ ଭୋରଶୈଳ ଅନ୍ୟତମ। ଏହି ଭୋରଶୈଳ କାଳକ୍ରମେ ଲୋକମୁଖରେ ଘୋରଶୈଳ ଓ ଶେଷରେ ଘୋରଡ଼ିହା ନାମରେ ଅଭିହିତ ହୋଇଛି।

ଷଷ୍ଠ ଶତାବ୍ଦୀରେ ଓଡ଼ିଶାରେ ଅନ୍ୟ ଏକ ବଂଶ ରାଜୁତି କରିଥିବାର ଜଣାଯାଏ। ତାହା ଥିଲା ମାଣ ବଂଶ ଓ ତାର ଜଣେ ପ୍ରଖ୍ୟାତ ନରପତି ଥିଲେ ଶମ୍ଭୁୟାଶାସ। ସେ ୫୮୦ ଖ୍ରୀଷ୍ଟାବ୍ଦରୁ ୬୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବାଲେଶ୍ୱରରୁ ପୁରୀ ଜିଲ୍ଲା ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡର ଅଧୀଶ୍ୱର ଥିଲେ। ସେ ଦୃଷ୍ଟିରୁ ବିଚାର କଲେ ପିପିଲି ଭୂଖଣ୍ଡ ମଧ୍ୟ ତାଙ୍କର ଶାସନାଧୀନ ଥିଲା। ସେହିପରି ଶୈଳୋଦ୍ଭବ ବଂଶୀୟ ନରପତିମାନଙ୍କ ଦ୍ୱାରା ପ୍ରଦତ୍ତ ଦାନପତ୍ରସମୂହ ପୁରୀ ଜିଲ୍ଲା ଓ ଖୋର୍ଦ୍ଧାରୁ ପ୍ରାପ୍ତ ହୋଇଛି। ସେଥିରୁ ସୂଚୀତ ହୁଏଯେ, ସେମାନେ ଭୁବନେଶ୍ୱର ସମେତ ତାର ପାର୍ଶ୍ୱବର୍ତ୍ତୀ ପିପିଲି-ଢ଼େଲାଙ୍ଗ ଭୂଖଣ୍ଡରେ ନିଜର ବୈଜୟନ୍ତୀ ଉଡ଼ାଇଥିଲେ।

---

(୫) ନବୀନ କୁମାର ସାହୁ: ଓଡ଼ିଶାରେ ବୌଦ୍ଧ ଧର୍ମ - ପୃ-୫୨

Digitized by srujanika@gmail.com

ସେହି ନରପତିଙ୍କ ମଧ୍ୟରୁ ରଣଭିଟା, ପ୍ରଥମ ଧର୍ମରାଜ ଓ ଦ୍ୱିତୀୟ ମାଧବରାଜଙ୍କ ନାମ ଉଲ୍ଲେଖ ଯୋଗ୍ୟ। ସେହି ଷଷ୍ଠ ଶତାବ୍ଦୀରେ ଗୌଡ଼ର ରାଜା ଶଶାଙ୍କ ପୁରୀ ଜିଲ୍ଲାରେ ନିଜର ପ୍ରଭାବ ବିସ୍ତାର କରିଥିଲେ। ଏହା ହୁଏନ୍‌ସାଂଙ୍କ ବିବରଣୀରୁ ଜଣାଯାଏ। ଏକାମ୍ର ପୁରାଣରେ ବର୍ଣ୍ଣିତ ଏକ ଉପାଖ୍ୟାନ ଏହାର ସତ୍ୟତା ପ୍ରତିପାଦନ କରେ। ସେହି ଉପାଖ୍ୟାନରୁ ଜଣାଯାଏ ଯେ, ଗୋଟିଏ ଆମ୍ର ବୃକ୍ଷ ତଳେ ଏକ ଲିଙ୍ଗ ବିରାଜମାନ କରୁଥିଲେ। ଏହା ସତ୍ୟ ଓ ତ୍ରେତା ଯୁଗରେ ଲୁକ୍କାୟିତ ହୋଇ ଦ୍ୱାପର ଓ କଳି ଯୁଗରେ ଆବିର୍ଭୂତ ହୋଇଥିଲେ। ସେତେବେଳେ ସେଠାରେ ମନ୍ଦିର ନଥିଲା। ଶଶାଙ୍କ ସେଠାରେ ଏକ ମନ୍ଦିର ନିର୍ମାଣ କରି ଉପାସନାରତ ହୋଇଥିଲେ। ଉକ୍ତ ମନ୍ଦିରଟି ତ୍ରିଭୁବନେଶ୍ୱର ମନ୍ଦିର ନାମରେ ଖ୍ୟାତି ଅର୍ଜନ କରିଥିଲା। ସେଠାରେ ବିରାଜିତ ଲିଙ୍ଗଟି କୀର୍ତ୍ତିବାସ ନାମରେ ପୂଜିତ ହେଲେ। ସେହି ମନ୍ଦିର କାଳକ୍ରମେ ଧ୍ୱଂସ ପ୍ରାପ୍ତ ହୋଇ ମୃତ୍ତିକା ଗର୍ଭରେ ଲୁକ୍କାୟିତ। ଏଥିପାଇଁ ପ୍ରାଚୀନ ଯୁଗରେ ଭୁବନେଶ୍ୱର ଭୂଖଣ୍ଡ ଏକାମ୍ର କ୍ଷେତ୍ର ରୂପେ ଖ୍ୟାତ।

ଯୋଗଜନ୍ମା ସ୍ୱଳ୍ପାୟୁ ମହାପୁରୁଷ ଶଙ୍କରାଚାର୍ଯ୍ୟ (ଖ୍ରୀ.୭୮୮-୮୨୦) ଉତ୍କଳ ଭ୍ରମଣରେ ଆସି ଶ୍ରୀକ୍ଷେତ୍ରରେ ପଦାର୍ପଣ କରିଥିଲେ। ତାଙ୍କର ପ୍ରିୟ ଶିଷ୍ୟ ପଦ୍ମପାଦାଚାର୍ଯ୍ୟ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ଗୋବର୍ଦ୍ଧନ ମଠର ପ୍ରଥମ ଅଧୀଶ ରୂପେ ନିଯୋଜିତ ହୋଇଥିଲେ। ଶ୍ରୀକ୍ଷେତ୍ରରୁ ଆସିବା ବାଟରେ ଉଭୟଙ୍କ ପଦରଜରେ ପିପିଲି ଅଞ୍ଚଳ ପବିତ୍ର ହୋଇଥିବ।

ପରେ ପରେ ଉନ୍ମୋଚିତ ହୁଏ ଓଡ଼ିଶାରେ ଭୌମକର ବଂଶର ରାଜତ୍ୱ। ସେମାନଙ୍କର ପ୍ରାୟ ଦୁଇ ଶହ ବର୍ଷର ରାଜତ୍ୱ (ଖ୍ରୀ.୭୩୬-୯୨୩) ଓଡ଼ିଶା ତଥା ଭୁବନେଶ୍ୱର ଇତିହାସରେ ଏକ ଘଟଣା ବହୁଳ ଅଧ୍ୟାୟ। କ୍ଷେମଙ୍କର ଦେବ ଥିଲେ ଉକ୍ତ ବଂଶର ପ୍ରଥମ ନରପତି। ଏହି ରାଜବଂଶରେ ପ୍ରଥମ ତ୍ରିଭୁବନ ମହାଦେବୀ, ପୃଥ୍ୱୀ ମହାଦେବୀ ଓ ଦ୍ୱିତୀୟ ତ୍ରିଭୁବନ ମହାଦେବୀଙ୍କ ପରି କେତେ ଜଣ ମହୀୟସୀ ମହିଳା ରାଜ ସିଂହାସନ ଅଳଙ୍କୃତ କରି ଓଡ଼ିଶାର ରାଜନୈତିକ ଇତିହାସକୁ ଋଦ୍ଧିମନ୍ତ କରିଛନ୍ତି। ଭୌମକର ରାଜତ୍ୱରେ ଓଡ଼ିଶା ବିଶେଷତଃ ଭୁବନେଶ୍ୱରର ସାଂସ୍କୃତିକ ଦିଗ୍‌ବଳୟ ଉଦ୍‌ଭାସିତ ହୋଇଛି। ସେହି ସମୟରେ ଭୁବନେଶ୍ୱରରେ ଶକ୍ତି ପୂଜାର ପ୍ରବର୍ତ୍ତନ ଏକ ଉଲ୍ଲେଖନୀୟ ଘଟଣା। ସେହିଠାରେ ନିର୍ମିତ ବୋଇତାଳ ମନ୍ଦିର, ଗଙ୍ଗୁଆ ନଦୀ କୂଳରେ ଭୁଆସୁଣୀ ମନ୍ଦିର ଇତ୍ୟାଦି ସେମାନଙ୍କର ଗୋଟିଏ ଗୋଟିଏ ଅନବଦ୍ୟ କୀର୍ତ୍ତି। ଭୌମକର ରାଜତ୍ୱରେ ପିପିଲି-ଡେ଼ଲାଙ୍ଗ ଅଞ୍ଚଳରେ କୌଣସି ମନ୍ଦିର ପ୍ରତିଷ୍ଠିତ ହୋଇଥିବାର ଜଣା ନ ଥିଲେ ମଧ୍ୟ ଭୌମ ସମ୍ରାଟ

Digitized by srujanika@gmail.com

ଶାନ୍ତିକର ଦେବଙ୍କ ରାଜତ୍ୱରେ ଧବଳେଶ୍ୱର ମନ୍ଦିର ଥିବା ପାହାଡ଼ର ଦକ୍ଷିଣ ପାର୍ଶ୍ୱର ଏକ ଗୁମ୍ଫାରେ ତାଙ୍କର ଅଭିଲେଖ ଖୋଦିତ ହୋଇଥିବାର ଦେଖଯାଏ । ସେଥିରୁ ସୂଚିତ ହୁଏ ତୋଷଳୀ ନଗରୀରେ 'ଅର୍ଘ୍ୟ କାବରାଟିକା' ନାମକ ଏକ ମଠ ପ୍ରତିଷ୍ଠିତ ହୋଇଥିଲା । ଏହା ୭୦୭ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିବାର ଜଣାଯାଏ ।

## ସୋମବଂଶ ରାଜତ୍ୱରେ ପିପିଲି :

ନବମ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଶାରେ ଅନ୍ୟ ଏକ ଗୌରବୋଜ୍ଜ୍ୱଳ ରାଜବଂଶର ଆବିର୍ଭାବ ହୁଏ । ଦ୍ୱାଦଶ ଶତାବ୍ଦୀର ପ୍ରଥମ ଦଶନ୍ଧି ପର୍ଯ୍ୟନ୍ତ (ଖ୍ରୀ.୮୮୨-୧୧୧୦) ଦୁଇଶତ ବର୍ଷଧରି ରାଜତ୍ୱ କରି ଏହି ରାଜବଂଶ କଳା ଓ ଭାସ୍କର୍ଯ୍ୟ କ୍ଷେତ୍ରରେ ସମଗ୍ର ଭାରତ ବର୍ଷର ଇତିହାସକୁ ମୁଖରିତ କରିଛନ୍ତି । ସେହି ଗାରିମାମୟ ରାଜବଂଶ ଥିଲା ସୋମବଂଶ । ଉକ୍ତ ବଂଶର କେତେ ଜଣ ନରପତି କେଶରୀ ଉପାଧି ଧାରଣ କରିଥିବାରୁ ତାହା ମଧ୍ୟ କେଶରୀ କୁଳ ବା କେଶରୀ ବଂଶ ନାମରେ କଥିତ । ସେହି ବଂଶର କେତେ ଜଣ ନରପତିଙ୍କ ପୃଷ୍ଠପୋଷକତାରେ ଭୁବନେଶ୍ୱରରେ ଉତ୍ତୁଙ୍ଗ ଲିଙ୍ଗରାଜ ମନ୍ଦିର, ରାଜରାଣୀ, ମୁକ୍ତେଶ୍ୱର, ଗୌରୀ, କେଦାରେଶ୍ୱର, ବ୍ରହ୍ମେଶ୍ୱର ଆଦି ଅନୁପମ କାରୁକାର୍ଯ୍ୟ ମଣ୍ଡିତ ମନ୍ଦିରମାନ ନିର୍ମିତ ହୋଇଥିଲା । ସେହିପରି ସ୍ଥଳେ ଭୁବନେଶ୍ୱରର ଉପକଣ୍ଠ ପିପିଲି-ଡେଲାଙ୍ଗ ଅଞ୍ଚଳରେ ସେମାନେ ଯେ କିଛି ମନ୍ଦିର ନିର୍ମାଣ କରି ନଥିଲେ ତା ନୁହେଁ, ହୁଏତ ରକ୍ଷଣାବେକ୍ଷଣ ଅଭାବରୁ ସେଗୁଡ଼ିକ ଧ୍ୱଂସପ୍ରାପ୍ତ ହୋଇଛି । ତେଣୁ ସେଗୁଡ଼ିକୁ ଚିହ୍ନିତ କରିବା ସମ୍ଭବପର ହେଉ ନାହିଁ । ତଥାପି ଧଉଳି ମୁଣ୍ଡିଆର ପଶ୍ଚିମ କୋଣକୁ ଦୟା ନଦୀ କୂଳରେ ଅଧୁନା ଦଣ୍ଡାୟମାନ ଏକ କ୍ଷୁଦ୍ର ମନ୍ଦିରକୁ ଉକ୍ତ ବଂଶର ପ୍ରଥମ ଯଯାତି ନିର୍ମାଣ କରଥିବାର ଜଣାଯାଏ । ଏହା ବହିରଙ୍ଗେଶ୍ୱର ମନ୍ଦିର ନାମରେ ଖ୍ୟାତ ।

## ଗଙ୍ଗ ରାଜତ୍ୱରେ ପିପିଲି :

ସୋମବଂଶର ଶେଷ ନରପତି ହେଉଛନ୍ତି କର୍ଣ୍ଣଦେବ ବା ପଞ୍ଚମ ମହାଶିବଗୁପ୍ତ (ଖ୍ରୀ୧୧୦୦-୧୧୧୦) । ତାଙ୍କ ମୃତ୍ୟୁ ପରେ ଓଡ଼ିଶାରେ ଉଦ୍‌ଘାଟିତ ହୋଇଥିଲା,ଅନ୍ୟ ଏକ ପ୍ରଥିତଯଶା ରାଜବଂଶର ଶାସନ (ଖ୍ରୀ୧୧୧୦-୧୪୩୫) । ତାହା ଗଙ୍ଗ ବଂଶ ନାମରେ ଖ୍ୟାତ । ଏହି ବଂଶର ପ୍ରଖ୍ୟାତ ନରପତି ଅନନ୍ତ ବର୍ମା ଚୋଡ଼ଗଙ୍ଗଦେବ ରାଜତ୍ୱ କରି ଓଡ଼ିଶାର ଇତିହାସକୁ ନୂତନ ଆଲୋକରେ

Digitized by srujanika@gmail.com

ବର୍ଣ୍ଣାଢ୍ୟ କରିଛନ୍ତି । ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱ (ଖ୍ରୀ୧୦୭୬-୧୧୫୦) ଓଡ଼ିଶା ଇତିହାସରେ ଏକ ଘଟଣା ବହୁଳ ତଥା ଗୌରବମୟ ଅଧ୍ୟାୟ । ୧୧୧୦ ଖ୍ରୀଷ୍ଟାବ୍ଦରେ ସେ ଓଡ଼ିଶା ତଥା ସମଗ୍ର ଉପକୂଳବର୍ତ୍ତୀ ଅଞ୍ଚଳ ଅଧିକାର କରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଏକ ବିଶାଳ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ସେ ତାଙ୍କର ରାଜଧାନୀ ଅଧୁନା ଆନ୍ଧ୍ର ପ୍ରଦେଶସ୍ଥିତ ସିକାକୋଲ ଜିଲ୍ଲାର ମୁଖଲିଙ୍ଗମ୍ ସହିତ ଚିହ୍ନିତ କରାଯାଉଥିବା କଳିଙ୍ଗନଗରୀରୁ ୧୧୩୫ ଖ୍ରୀଷ୍ଟାବ୍ଦରେ କଟକକୁ ସେ ସ୍ଥାନାନ୍ତରିତ କରିଥିଲେ । ଏହି ନୂତନ ରାଜଧାନୀର ନାମ ରଖିଥିଲେ ଅଭିନବ ବାରାଣାସୀ କଟକ । ଏହି ଚୋଡ଼ଗଙ୍ଗଦେବଙ୍କୁ ଗଙ୍ଗେଶ୍ୱର ଦେବ କୁହାଯାଏ । ବୌଦ୍ଧ ଧର୍ମର ପ୍ରାଧାନ୍ୟ ଲୋପ କରିବା ପାଇଁ ଭୁବନେଶ୍ୱର ଓ ତା'ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ସେ ନିଜେ ଓ ତାଙ୍କର ଉଣେଇଶ ଜଣ ରାଣୀଙ୍କ ମଧ୍ୟରୁ କେତେକଙ୍କ ନାମରେ ବ୍ରାହ୍ମଣ ଶାସନ ସ୍ଥାପନ କରାଇଥିଲେ । ତନ୍ମଧ୍ୟରୁ ଅଧିକାଂଶ ଥିଲା ପିପିଲି-ଡେଲାଙ୍ଗ ଭୂଖଣ୍ଡରେ । ପ୍ରଥମଟି ଥିଲା ଗଙ୍ଗେଶ୍ୱରପୁର ଶାସନ । ଧଉଳି ପାହାଡ଼ର ଦକ୍ଷିଣ ପଶ୍ଚିମ ଦିଗକୁ ଦୟାନଦୀ କୂଳରେ ନିଜ ନାମାନୁସାରେ ସେ ଏହି ଶାସନ ପ୍ରତିଷ୍ଠା କରିଥିଲେ । ସେହିପରି ରାଣୀ କଲ୍ୟାଣ ଦେବୀ ଓ ରାଣୀ ବସନ୍ତ ଦେବୀଙ୍କ ନାମରେ ଗଙ୍ଗେଶ୍ୱରପୁର ଶାସନର ଦକ୍ଷିଣକୁ ଓ ଉତ୍ତରକୁ କଲ୍ୟାଣପୁର ଓ ବସନ୍ତପୁର ନାମକ ଦୁଇଟି ବ୍ରାହ୍ମଣ ଶାସନ ସ୍ଥାପନ କରିଥିଲେ । ରାଣୀ ଶ୍ରୀୟା ଦେବୀଙ୍କ ନାମରେ ସ୍ଥାପିତ ଶ୍ରୀୟାଦେଈପୁର ଶାସନ ଥିଲା ଅନ୍ୟତମ । ଏହା ଉତ୍ତରା ଛକର ଉତ୍ତରକୁ ଦୟାନଦୀର ଉପ୍ତରି ସ୍ଥଳରେ ଅବସ୍ଥିତ । କାଳକ୍ରମେ ଏହାର ନାମ ସରଦେଈପୁର ହୋଇଛି । ବର୍ତ୍ତମାନ ଦୟା ଓ ଭାର୍ଗବୀ ଗର୍ଭରେ ଗ୍ରାମଟିର ଅସ୍ତିତ୍ୱ ଲୀନ ହୋଇଯାଇଛି । ସେହିପରି କୌଶଲ୍ୟାଗଙ୍ଗର ପୂର୍ବ ଦିଗରେ ପୂର୍ବା ଶାସନ ଓ ଉତ୍ତର ଦିଗରେ ଉତ୍ତରା ଶାସନ ଥିଲା ଚୋଡ଼ଗଙ୍ଗଦେବଙ୍କ ଅନ୍ୟ ଦୁଇଟି କୀର୍ତ୍ତି । ଏବେ ମଧ୍ୟ ଏହି ଦୁଇଟି ଗ୍ରାମ ପୁବା ଶାସନ ଓ ଉତ୍ତରା ଶାସନ ନାମରେ କଥିତ ହୋଇ ତାଙ୍କର କୀର୍ତ୍ତିକୁ ସ୍ମରଣ କରାଇଥାଏ ।

## କୌଶଲ୍ୟାଗଙ୍ଗ :

ଚୋଡ଼ଗଙ୍ଗଦେବଙ୍କ ଅନ୍ୟ ଏକ କୀର୍ତ୍ତି ହେଉଛି ଏବେ କୌଶଲ୍ୟାଗଙ୍ଗ ନାମ ଧାରଣ କରିଥିବା ଏକ ବିରାଟ ଜଳାଶୟ । ବାସ୍ତବିକ୍ ଆୟତନରେ ଏହିପରି ଏକ ବୃହତ୍ ଜଳାଶୟ ଓଡ଼ିଶାରେ ବିରଳ । ଚୋଡ଼ଗଙ୍ଗଦେବଙ୍କର ଅନ୍ୟ ଏକ ରାଣୀଙ୍କର ନାମ କୋଶଳ ଦେବୀ । ସମ୍ଭବତଃ, ସେ ଥିଲେ ତାଙ୍କର ପାଟରାଣୀ ।

Digitized by srujanika@gmail.com

ତାଙ୍କରି ନାମାନୁସାରେ ଧଉଳି ପର୍ବତର ଦକ୍ଷିଣରେ ସେ ଏକ ବ୍ରାହ୍ମଣ ଶାସନ ସ୍ଥାପନ କରି ତା'ର ନାମ ରଖିଥିଲେ କୋଶଳପୁର। କାଳକ୍ରମେ ଲୋକ ମୁଖରେ ରାମାୟଣ ପ୍ରସିଦ୍ଧ କୌଶଲ୍ୟା ରାଣୀଙ୍କ ନାମ ବହନ କରି କୌଶଲ୍ୟାପୁର ହୋଇଛି। ଠିକ୍ ଏହି ଶାସନ ନିକଟରେ ଧଉଳି ପାହାଡ଼ର ପୂର୍ବକୁ ନିଜର ଓ ନିଜ ପାଟରାଣୀଙ୍କ ନାମକୁ ସ୍ମୃତିରେ ଉଜ୍ଜୀବିତ କରି ରଖିବାକୁ ଚୋଡ଼ଗଙ୍ଗଦେବ ଉଭୟଙ୍କ ନାମ ସଂଲଗ୍ନ କରି କୋଶଳଗଙ୍ଗଦେବ ନାମରେ ଏକ ବିରାଟ ଜଳାଶୟ ଖୋଦନ କରାଇଥିଲେ। ତାହା କାଳକ୍ରମେ କୌଶଲ୍ୟାଗଙ୍ଗା ନାମ ଧାରଣ କରିଥିଲା। ଏହାର ଦୈର୍ଘ୍ୟ ଏକ କୋଶ ଓ ପ୍ରସ୍ଥ ଏକ କୋଶ ବୋଲି ଜନଶ୍ରୁତି ପ୍ରଚଳିତ ଥିଲେ ମଧ ବାସ୍ତବ ପକ୍ଷେ ଏହା ଦେଢ଼ ମାଇଲ ଲମ୍ବ ଓ ପାଞ୍ଚ ଫର୍ଲଙ୍ଗ ଓସାର ଥିବା ବିଷୟ କେଦାରନାଥ ମହାପାତ୍ର ଉଲ୍ଲେଖ କରିଛନ୍ତି।(୬)। ଏହି ଜଳାଶୟରେ ପୁରୀର ନରେନ୍ଦ୍ର ସରୋବର ପରି ଠାକୁରଙ୍କର ଚନ୍ଦନ ଯାତ୍ରା ପାଳିତ ହେଉଥିଲା। ଏହି ଜଳାଶୟର ଉତ୍ତର ପଶ୍ଚିମ କୋଣ ଦୟାନଦୀ ସହିତ ଏକ ପ୍ରଣାଳୀ ବା କେନାଲ ଦ୍ୱାରା ସଂଯୁକ୍ତ ହୋଇଥିଲା। ଏହି କେନାଲକୁ ଅତିକ୍ରମ କରିବା ପାଇଁ ମଝିରେ ମଝିରେ ପୋଲମାନ ନିର୍ମିତ ହୋଇଥିଲା। ବର୍ଷା ଦିନେ ନଦୀର ବଢ଼ି ପାଣି ଏହି କେନାଲ ମଧକୁ ପ୍ରବେଶ କରି ଜଳାଶୟକୁ ପରିପୂର୍ଣ୍ଣ କରୁଥିଲା। ଏହା ମୁଖ୍ୟତଃ ଏହି ଅଞ୍ଚଳର ଜଳସେଚନ ପାଇଁ ଉଦ୍ଦିଷ୍ଟ ଥିଲା। ଉତ୍ତରା ଛକରୁ ପୁରୀ ଆଡ଼କୁ ଗଲେ ପ୍ରାୟ ଏକ କିଲୋମିଟର ପରେ ସଡ଼କର ଡ଼ାହାଣ ପାର୍ଶ୍ୱରେ ଏହି ଜଳାଶୟର ସଂକେତ ମାନ ଦେଖାଯାଏ। ଏବେ ତାକୁ ଛୋଟ ଛୋଟ ଭାଗରେ ବିଭକ୍ତ କରାଯାଇ ଭାରତ ସରକାର ସେଠାରେ ଏକ ମତ୍ସ୍ୟ ଗବେଷଣା କେନ୍ଦ୍ର ସ୍ଥାପନ କରିଛନ୍ତି।

ଗଙ୍ଗ ରାଜତ୍ୱରେ ପିପିଲି-ଡ଼େଲାଙ୍ଗର ଐତିହ୍ୟ କେବଳ ମାତ୍ର ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ ମଧରେ ସୀମିତ ନଥିଲା। ତାଙ୍କର ପରବର୍ତ୍ତୀ ରାଜାଙ୍କ ସମୟରେ ଧଉଳି ମୁଣ୍ଡିଆର ଦଶ ମାଇଲ ( ୧୬ କିଲୋମିଟର ) ଦକ୍ଷିଣକୁ ଡ଼େଲାଙ୍ଗ ଥାନା ଅନ୍ତର୍ଗତ ଅରାଗଡ଼ ପାହାଡ଼ରେ ଏକ ବୌଦ୍ଧ ଶୈଳ ନିବାସ ଓ ତା' ନିକଟରେ ଏକ ଶିବ ମନ୍ଦିର ସ୍ଥାପିତ ହୋଇଥିଲା। ମନ୍ଦିରଟି ପଶ୍ଚିମମୁଖୀ ଓ ପ୍ରଥମେ ବିରାଜେଶ୍ୱର ମନ୍ଦିର ନାମ ଧାରଣ କରି ପରବର୍ତ୍ତୀ ସମୟରେ କୁନ୍ତେଶ୍ୱର ନାମ ଧାରଣ କରିଛି। ଏହି ଅରାଗଡ଼ ମୁଣ୍ଡିଆର ଅବସ୍ଥିତି ଥିଲା ପରଙ୍ଗ ଦଣ୍ଡପାଟରେ। ଗଙ୍ଗ ରାଜତ୍ୱରେ ଶାସନ ପରିଚାଳନା ପାଇଁ ସେମାନେ ସାମ୍ରାଜ୍ୟକୁ କେତୋଟି

---

(୬) କେଦାରନାଥ ମହାପାତ୍ର: ଧଉଳୀର ଇତିହାସ - ପୃ.୧୦୫

Digitized by srujanika@gmail.com

ଦଣ୍ଡପାଟରେ ବିଭକ୍ତ କରିଥିଲେ। ମାଦଳାପାଞ୍ଜିର ବର୍ଣ୍ଣନା ଅନୁଯାୟୀ (୭) ଏହି ଅରାଗଡ଼ ପର୍ବତର ବୌଦ୍ଧ ନିବାସରେ ବୌଦ୍ଧ ସିଦ୍ଧମାନଙ୍କ ପାଇଁ କେତେକ ଗୁମ୍ଫା ନିର୍ମିତ ହୋଇଥିଲା। ସେତେବେଳେ ଗଙ୍ଗ ବଂଶର ମଦନ ମହାଦେବଙ୍କର ରାଜତ୍ୱ। ମାତ୍ର ଗଙ୍ଗ ବଂଶୀୟ ନରପତିଙ୍କ ତାଲିକାରେ ଏପରି କୌଣସି ବ୍ୟକ୍ତିଙ୍କ ନାମ ରହିଥିବାର ଦେଖାଯାଏ ନାହିଁ। କେତେକଙ୍କ ମତରେ ସେ ଥିଲେ ରାଜରାଜ ଦେବ (ଖ୍ରୀ୧୧୯୮-୧୨୧୧)। (୮)।

## ସୂର୍ଯ୍ୟବଂଶ ରାଜତ୍ୱରେ ପିପିଲି

**କାଞ୍ଚି ଅଭିଯାନ ଉପାଖ୍ୟାନ ଓ ସାକ୍ଷୀଗୋପାଳଙ୍କର ପ୍ରତିଷ୍ଠା :**

ଗଙ୍ଗ ବଂଶର ରାଜା ଚତୁର୍ଥ ଭାନୁଦେବ (ଖ୍ରୀ.୧୪୧୪-୧୪୩୪)ଙ୍କ ମୃତ୍ୟୁ ପରେ ସେହି ମହିମାମଣ୍ଡିତ ବଂଶର ପତନ ଘଟି ଓଡ଼ିଶାର ରାଜନୈତିକ ରଙ୍ଗମଞ୍ଚରେ ଅନ୍ୟ ଏକ ଗୌରବମଣ୍ଡିତ ରାଜବଂଶର ଆବିର୍ଭାବ ହୋଇଥିଲା। ତାହା ସୂର୍ଯ୍ୟ ବଂଶ ନାମରେ ଖ୍ୟାତ। କାରଣ ଏହି ବଂଶର ପ୍ରତିଷ୍ଠାତା ଥିଲେ ସୂର୍ଯ୍ୟବଂଶୀୟ। ଏହାକୁ ମଧ୍ୟ ଗଜପତି ବଂଶ ବୋଲି କୁହାଯାଏ। ଏହି ବଂଶର ପ୍ରତିଷ୍ଠାତା ହେଉଛନ୍ତି କପିଳେନ୍ଦ୍ର ଦେବ (ଖ୍ରୀ.୧୪୩୫-୧୪୬୭)। ତାଙ୍କରି ରାଜତ୍ୱରେ ପିପିଲି-ଡ଼େଲାଙ୍ଗ ଅଞ୍ଚଳରେ ସେପରି କିଛି ଉଲ୍ଲେଖନୀୟ ଘଟଣା ସଂଘଟିତ ହୋଇଥିବାର ଜଣାଯାଏ ନାହିଁ। ମାତ୍ର ତାଙ୍କର ପରବର୍ତ୍ତୀ ନରପତି ପୁରୁଷୋତ୍ତମଦେବଙ୍କ ରାଜତ୍ୱ (ଖ୍ରୀ.୧୪୬୭-୧୪୯୭)ରେ କେତୋଟି ଘଟଣା ଉକ୍ତ ଅଞ୍ଚଳର ଇତିହାସକୁ ଉଜ୍ଜ୍ୱଳ କରିଥିବାର ଜଣାଯାଏ। ସେ କାଞ୍ଚି ବିରୁଦ୍ଧରେ ଅଭିଯାନ ଚଳାଇ ତା'ର ରାଜା ସାଳ୍ୱଭ ନରସିଂହକୁ ପରାଜିତ କରିବା ସଙ୍ଗେ ସଙ୍ଗେ ତାଙ୍କର କନ୍ୟା ରୂପାମ୍ବିକାଙ୍କୁ ନିଜ ରାଜଧାନୀ କଟକକୁ ନେଇ' ଆସିଥିଲେ। ଏକ ଜନଶ୍ରୁତି ଅନୁଯାୟୀ ପୁରୁଷୋତ୍ତମଦେବ ପୁରୀର ରଥଯାତ୍ରାରେ ତିନି ଠାକୁରଙ୍କ ଆଗରେ ଛେରା ପହଁରା କରୁଥିବା ସମୟରେ ତାଙ୍କର ମନ୍ତ୍ରୀ ରୂପାମ୍ବିକାଙ୍କୁ ବିବାହ କରିବା ପାଇଁ ତାଙ୍କ ହସ୍ତରେ ଅର୍ପଣ କରିଥିଲେ। ଏହା ଥିଲା ୧୪୬୯ ମସିହାର କଥା। ବିବାହ ପରେ ତାଙ୍କର ନାମ ହୋଇଥିଲା ପଦ୍ମାବତୀ।(୯)। ଉଭୟ ପୁରୁଷୋତ୍ତମଦେବ ଓ ପଦ୍ମାବତୀ ପିପିଲି ଦେଇ ପୁରୀକୁ ଯାତ୍ରା କରିଥିଲେ। ଏହି ସ୍ମୃତିକୁ ସ୍ମରଣୀୟ କରି ରଖିବା ପାଇଁ ସେ ପିପିଲିର ଅଦୂରବର୍ତ୍ତୀ ବୀର ପୁରୁଷୋତ୍ତମପୁର ଶାସନ

---

(୭) ମାଦଳାପାଞ୍ଜି - ପୃ.୨୫
(୮) ଦିବ୍ୟସିଂହ ଚମ୍ପତି : ଅରାଗଡ଼ର ଇତିହାସ - ପୃ.୮
(୯) K.C.Panigrahi : Orissa History - p.156

Digitized by srujanika@gmail.com

ପ୍ରତିଷ୍ଠା କରିଥିଲେ। କେବଳ ସେତିକି ନୁହେଁ, ପୁରୁଷୋତ୍ତମ ମଧ କାଞ୍ଚି ଅଭିଯାନରେ ଯାଇ ଗୋଟିଏ ଗୋପାଳ ମୂର୍ତ୍ତି, ଏକ ରତ୍ନ ସିଂହାସନ ଓ ଗଣେଶ ବିଗ୍ରହ ଓଡ଼ିଶାକୁ ଆଣିଥିଲେ। ସେହି ରତ୍ନ ସିଂହାସନକୁ ପୁରୀ ନେଇ ଜଗନ୍ନାଥ ମନ୍ଦିରରେ ରଖିଥିଲେ। ଏବେ ତା' ଉପରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଅଧିଷ୍ଠିତ। ଗୋପାଳ ମୂର୍ତ୍ତିକୁ ଆଣିଥିଲେ ବିଦ୍ୟାନଗରରୁ। ଅଧୁନା ଏହାକୁ ଆନ୍ଧ୍ର ପ୍ରଦେଶର ରାଜମହେନ୍ଦ୍ରୀ ସହିତ ଚିହ୍ନିତ କରାଯାଏ। ଶାରଳାଦାସଙ୍କ ମହାଭାରତରେ ଏହା ମଧ ଉଲ୍ଲିଖିତ। ସେହି ଗୋପାଳ ମୂର୍ତ୍ତିକୁ ଆଣି ପୁରୁଷୋତ୍ତମଦେବ କଟକରେ ଏକ ମନ୍ଦିର ନିର୍ମାଣ କରି ତା' ମଧରେ ସ୍ଥାପନ କରିଥିଲେ। ସେହି ହେଉଛନ୍ତି ସାକ୍ଷୀଗୋପାଳ। ସେ ବିଷୟରେ ଏକ ଜନଶ୍ରୁତି ମଧ ରହିଛି। ଏକଦା ଓଡ଼ିଶାର ଜଣେ ବୃଦ୍ଧ ଓ ଜଣେ ଯୁବକ ସାଥି ହୋଇ ତୀର୍ଥ କରିବା ପାଇଁ ବିଦ୍ୟାନଗରୀ ଯାଇଥିଲେ। ପ୍ରତ୍ୟହ ସେମାନେ ଗୋପାଳଙ୍କୁ ଦର୍ଶନ କରିବାକୁ ଯାଆନ୍ତି। ଇତି ମଧରେ ବୃଦ୍ଧ ଲୋକଟି ଗୁରୁତର ଭାବେ ଅସୁସ୍ଥ ହୋଇ ପଡ଼ିବାରୁ ଯୁବକଟି ଅତି ନିଷ୍ଠାର ସହିତ ତାଙ୍କର ସେବା ଶୁଶ୍ରୂଷା କରି ତାଙ୍କୁ ରୋଗମୁକ୍ତ କରାଇଥିଲେ। ସେହି ଗୋପାଳଙ୍କ ନିକଟରେ ବୃଦ୍ଧ ବ୍ୟକ୍ତି ଜଣକ ପ୍ରତିଜ୍ଞା କରିଥିଲେ ଯେ, ତୀର୍ଥରୁ ଫେରିବା ପରେ ସେ ତାଙ୍କର କନ୍ୟାକୁ ସେହି ଯୁବକଙ୍କୁ ବିବାହ ଦେବେ। କିଛି ଦିନ ପରେ ଓଡ଼ିଶାକୁ ସେମାନେ ଫେରି ଆସିଥିଲେ। ମାତ୍ର ପ୍ରତିଜ୍ଞାବଦ୍ଧ ହୋଇ ମଧ ବୃଦ୍ଧଟି ଯୁବକଙ୍କୁ ତାଙ୍କର କନ୍ୟାକୁ ବିବାହ ଦେଇ ନଥିଲେ ସେ ନୀଚ କୂଳରେ ଜାତ ହୋଇଥିବାରୁ। ଯୁବକଟି ଅତୀତର ପ୍ରତିଜ୍ଞାକୁ ସ୍ମରଣ କରାଇ ଦେଇଥିଲେ ମଧ ସେ ଏପରି କିଛି ପ୍ରତିଜ୍ଞା କରି ନାହାନ୍ତି ବୋଲି କହିଥିଲେ। ନିରାଶ ହୋଇ ଯୁବକ ଜଣକ ଏହି କଥା ଗୋପାଳଙ୍କ ନିକଟରେ ପ୍ରକାଶ କରିବାରୁ ସେ ସାକ୍ଷୀ ଦେଇଥିଲେ। ସେହିଠାରୁ ତାଙ୍କୁ କୁହାଗଲା ସାକ୍ଷୀଗୋପାଳ। ଏ ବିଷୟରେ ଏକ ବର୍ଣ୍ଣନା ଦେଇଛନ୍ତି ଶ୍ରୀଚୈତନ୍ୟଙ୍କର ଜୀବନୀକାର କୃଷ୍ଣଦାସ କବିରାଜ (ଖ୍ରୀ.୧୫୩୭-୧୬୧୫)। ତାଙ୍କ ଦ୍ୱାରା ଷୋଡ଼ଶ ଶତାବ୍ଦୀରେ ରଚିତ ଚୈତନ୍ୟଚରିତାମୃତରେ ସେ ଲେଖିଛନ୍ତି,

"ସେହି ରାତି ତାହିଁ (ଯାଜପୁର ଗ୍ରାମ)ରହି କରିଲା ଗମନ
କଟକ ଆଇଲା ଦେଖିତେ
ଗୋପାଳ ସୌନ୍ଦର୍ଯ୍ୟଦେଖି ହେଲା ଆନନ୍ଦିତେ
ପ୍ରେମାବେଶେ ନୃତ୍ୟକରି କଥୋ କ୍ଷଣ
ସେହି ରାତ୍ରି ହିଁ ରହି ଭକ୍ତଗଣ ସଂଗେ
ସାକ୍ଷୀଗୋପାଳର କଥା ସେ ଶୁନିଲ ଲୋକମୁଖେ "।(୧୦)।

---

(୧୦) ଚୈତନ୍ୟଚରିତାମୃତ - ମଧ ଲୀଳା - ପଞ୍ଚମ ଅଧାୟ - ପଙ୍‌କ୍ତି ୨-୪

Digitized by srujanika@gmail.com

ପରବର୍ତ୍ତୀ ସମୟରେ ସେହି ସାକ୍ଷୀଗୋପାଳ ମୂର୍ତ୍ତିକୁ ସ୍ଥାନାନ୍ତରିତ କରାଯାଇ ରତ୍ନଚିରା ନଦୀକୂଳରେ ସ୍ଥାପନ କରା ଯାଇଥିଲା। ତାଙ୍କର ନାମାନୁସାରେ ସ୍ଥାନଟି ମଧ୍ୟ ସାକ୍ଷୀଗୋପାଳ ନାମରେ କଥିତ।

ପୁରୁଷୋତ୍ତମଙ୍କ ପରେ ଗଜପତି ସିଂହାସନ ଅଳଙ୍କୃତ କରିଥିଲେ ପ୍ରତାପରୁଦ୍ର ଦେବ। ଖ୍ରୀ.୧୪୯୭ ରୁ ୧୫୪୦ ଥିଲା ତାଙ୍କର ରାଜୁତି କାଳ। 'ଅମୁକ୍ତମାଲୟଦା' ପୁସ୍ତକରେ ଉଲ୍ଲିଖିତ ତଥ୍ୟ ଉଦ୍ଧାର କରି କୁହାଯାଇଛି ଯେ, ବିଜୟନଗର ସାମ୍ରାଜ୍ୟର ନରପତି କୃଷ୍ଣଦେବରାୟ ପୁରୀ ଆସି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଉପାସନା କରିଥିଲେ। ସେହି ବର୍ଣ୍ଣନା ଅନୁଯାୟୀ, ସେ ପୁରୀରୁ କଟକ ଯିବା ବାଟରେ ତାଙ୍କର ରଣବାଦ୍ୟ ପ୍ରତାପରୁଦ୍ର ଶୁଣି ଭୟଭୀତ ହୋଇ ପଳାୟନ କରିଥିଲେ। ମାତ୍ର ଡକ୍ଟର ପାଣିଗ୍ରାହୀ ଏହା ସତ୍ୟ ନୁହେଁ ବୋଲି ଦର୍ଶାଇଛନ୍ତି। ତାଙ୍କ ମତାନୁଯାୟୀ କୃଷ୍ଣଦେବ ରାୟ କେବେ କଟକ ଯାଇ ନାହାନ୍ତି। ତାହା ହୋଇଥିଲେ ତାଙ୍କ ଦ୍ୱାରା ଖୋଦିତ ଅନୁଶାସନରେ ଏହା ଉଲ୍ଲିଖିତ ହୋଇଥାଆନ୍ତା। ସେ ଯାହାହେଉ, ଶ୍ରୀଚୈତନ୍ୟ ଜଣେ ବୈଷ୍ଣବ ସନ୍ନ୍ୟାସୀର ବ୍ରତ ଅବଲମ୍ବନ କରିବା ପରେ ୧୫୧୦ ଖ୍ରୀଷ୍ଟାବ୍ଦରେ ପୁରୀ ଆସିଥିଲେ। ସେତେବେଳେ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ। ଅବଶ୍ୟ ଶ୍ରୀଚୈତନ୍ୟ ପ୍ରଥମେ ସ୍ଥିର କରିଥିଲେ ଯେ, ସେ ବୃନ୍ଦାବନରେ ରହିବେ। ମାତ୍ର ତାଙ୍କ ମାତା ଶଚିଦେବୀ ତାଙ୍କୁ ପୁରୀରେ ରହିବା ପାଇଁ ପରାମର୍ଶ ଦେଇଥିଲେ। କାରଣ ସେ ପ୍ରତି ବର୍ଷ ରଥଯାତ୍ରା ସମୟରେ ନଦିଆରୁ ପୁରୀକୁ ଯାଉଥିବା ତୀର୍ଥଯାତ୍ରୀଙ୍କଠାରୁ ନିଜ ପୁତ୍ରର ଖବର ପାଇ ପାରିବେ। ମାତାଙ୍କର ପରାମର୍ଶ ଅନୁଯାୟୀ ସେ ପୁରୀକୁ ଆସିଥିଲେ। ସମ୍ଭବତଃ ତାହା ଥିଲା ଜୁନ୍ ମାସ। କଟକରେ ଗୋପାଳଙ୍କର ମଙ୍ଗଳ ଆରତୀ ଦର୍ଶନ କରିବା ପରେ ସେଠାରୁ ପିପିଲି ଦେଇ ପୁରୀକୁ ଗତି କରିଥିବା ପଥରେ ସେ ଆସିଥିବା ବିଷୟ କୃଷ୍ଣଦାସ କବିରାଜଙ୍କର 'ଚୈତନ୍ୟ ଚରିତାମୃତ'ରେ ବର୍ଣ୍ଣନା କରାଯାଇଛି। ରାସ୍ତାରେ ସେ ବଳପୁର ଗାଁ ନିକଟସ୍ଥ ଭାର୍ଗବୀ ନଦୀରେ ସ୍ନାନ କରି ପୁରୀ ଯାଇଥିବାର ଜଣାଯାଏ।(୧୧)। ଏହି ଗାଁଟି ପିପିଲି ଭୂଖଣ୍ଡର ଅନତିଦୂରରେ ଅବସ୍ଥିତ ଥିବାର ଜନମୁଖରୁ ଶୁଣିବାକୁ ମିଳେ। କିଛି ଦିନ ପରେ ରଥରେ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରି ଭାବ ବିହ୍ୱଳ ହୋଇ ସେ କହିଥିଲେ, "ଯେଉଁ କୁରୁକ୍ଷେତ୍ରର ଶ୍ରୀକୃଷ୍ଣଙ୍କୁ ଖୋଜୁଥିଲି, ଆମେ ସେହି ପ୍ରାଣନାଥଙ୍କୁ ପାଇଲୁ।"(୧୨)। ପୁରୀରେ ଦୁଇ ମାସ ରହିବା ପରେ

(୧୧) ଚୈତନ୍ୟଚରିତାମୃତ :- ମଧ୍ୟ ଲୀଳା - ପଞ୍ଚମ ପରିଚ୍ଛେଦ
(୧୨) ଏଜନ: ପଙ୍କ୍ତି - ୪୦

Digitized by srujanika@gmail.com

ଶ୍ରୀଚୈତନ୍ୟ ଦକ୍ଷିଣକୁ ଯାତ୍ରା କରି ବୃନ୍ଦାବନକୁ ଗମନ କରିଥିଲେ । ପରେ ପରେ ସେ ଭାରତ ବର୍ଷର ବିଭିନ୍ନ ସ୍ଥାନ ଦର୍ଶନ କରି ଶେଷରେ ୧୫୧୫ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଥର ପାଇଁ ପୁରୀକୁ ଆସିଥିଲେ । ଏହିଠାରେ ହିଁ ଜୀବନର ଶେଷ ୧୮ ବର୍ଷ ବିତାଇ ୧୫୩୩ ଖ୍ରୀଷ୍ଟାବ୍ଦରେ ସେ ମରଣଶରୀର ତ୍ୟାଗ କରିଥିଲେ । ଶ୍ରୀଚୈତନ୍ୟ ଥିଲେ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରଚାରକ । ଏହି ଦ୍ୱିତୀୟ ଥର ରହଣି ମଧ୍ୟରେ ଗଜପତି ପ୍ରତାପରୁଦ୍ର ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ତାଙ୍କ ବ୍ୟତୀତ ଭଗବାନ ପଟ୍ଟନାୟକ ଓ ତାଙ୍କର ଦୁଇ ପୁତ୍ର ରାମାନନ୍ଦ ଓ ଗୋପିନାଥ ଏବଂ ଜନ୍ମେଇ ଖୁଣ୍ଟିଆଙ୍କ ସମେତ ଜନାର୍ଦ୍ଦନ ମହାନ୍ତି, ତୁଳସୀ ପରିଛା, ରଘୁନାଥ, କାଶୀ ମିଶ୍ର, ପ୍ରଦ୍ୟୁମ୍ନ ମିଶ୍ର, କୃଷ୍ଣ ଦାସ, ଶିଖି ମହାନ୍ତି ଓ ତାଙ୍କର ଭଉଣୀ ମାଧବୀ ଦାସ ପ୍ରଭୃତି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିବାର ଜଣାଯାଏ । ସେହିପରି ପଞ୍ଚସଖା ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଅନନ୍ତ ଦାସ ଓ ଯଶୋବନ୍ତ ଦାସଙ୍କ ରଚନାରେ ଶ୍ରୀଚୈତନ୍ୟଙ୍କ ବିଷୟରେ ଲେଖା ଥିବାରୁ ସେମାନେ ମଧ୍ୟ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରି ପାରିଥା'ନ୍ତି ।(୧୩)। ଶ୍ରୀଚୈତନ୍ୟଙ୍କ ବ୍ୟତୀତ ସେହି ସମୟରେ ଅନ୍ୟ କେତେଜଣ ସିଦ୍ଧ ପୁରୁଷ ମଧ୍ୟ ଶ୍ରୀକ୍ଷେତ୍ରକୁ ଆସି ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିଥିବାର ଜଣାଯାଏ । ତନ୍ମଧ୍ୟରୁ ରାମାନନ୍ଦ, ରାମାନୁଜ, ମାଧବତୀର୍ଥ, ନରହରିତୀର୍ଥ, କବୀର ଓ ନାନକଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

## ଭୋଇବଂଶ ରାଜତ୍ୱରେ ପିପିଲି :

ପ୍ରତାପରୁଦ୍ରଙ୍କ ମୃତ୍ୟୁ ପରେ ଓଡ଼ିଶାର ରାଜନୈତିକ ରଙ୍ଗମଞ୍ଚରେ ଏକ ନୂତନ ରାଜବଂଶର ଆବିର୍ଭାବ ହୋଇଥିଲା । ତାହା ଭୋଇ ବଂଶ ନାମରେ ଖ୍ୟାତ । ଏହି ବଂଶର ପ୍ରତିଷ୍ଠାତା ଥିଲେ ଗଜପତି ପ୍ରତାପରୁଦ୍ରଙ୍କ ଜନୈକ ସେନାପତି ଗୋବିନ୍ଦ ବିଦ୍ୟାଧର । ସେ ନିଜେ ଭୋଇ ବା ଲେଖକ ଶ୍ରେଣୀର ସନ୍ତାନ ହୋଇଥିବାରୁ ତାଙ୍କ ବଂଶର ନାମକରଣ ଏପରି ହୋଇଥିବାର ଜଣାଯାଏ । ପରେ ପରେ ଭୋଇ ବଂଶର ରାଜ ଦରବାରରେ ବହୁ ରୋମାଞ୍ଚକର ଘଟଣା ସଂଘଟିତ ହୋଇଥିଲା । ଏକ ଷଡ଼ଯନ୍ତ୍ରର ଆଶ୍ରୟ ନେଇ ମୁକୁନ୍ଦଦେବ ଉତ୍କଳ ସିଂହାସନ ଅଳଙ୍କୃତ କରିଥିଲେ । ୧୫୫୯ ଖ୍ରୀଷ୍ଟାବ୍ଦରେ ସେ ବିଶାଖାପାଟଣା ଜିଲାର ବାହୁବଳେନ୍ଦ୍ର ନାମରେ ଜଣେ ରାଜାଙ୍କ ଏକ କରଦ ରାଜ୍ୟର ବଂଶଧର ବୋଲି ବିଶ୍ୱାସ କରାଯାଏ । ସେମାନେ ହରିଚନ୍ଦନ ନାମରେ କଥିତ ହୋଇ ଥିବାରୁ ମୁକୁନ୍ଦଦେବଙ୍କ ନାମରେ ହରିଚନ୍ଦନ

(୧୩) K.C.Panigrahi: Orissa History

Digitized by srujanika@gmail.com

ଉପାଧି ଲାଗିଥିଲା । ଓଡ଼ିଶାର ଲୋକେ ତାଙ୍କୁ ତେଲେଙ୍ଗା ମୁକୁନ୍ଦଦେବ କହିଥା'ନ୍ତି । ସେ ଯାହା ହେଉ, ତାଙ୍କ ସାମ୍ରାଜ୍ୟ ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ସେ ମଧ୍ୟ ଥିଲେ ଜଣେ ଉଚ୍ଚାଭିଳାଷୀ ବ୍ୟକ୍ତି ଓ ଦକ୍ଷ ଶାସକ । ତାଙ୍କରି ପ୍ରଚେଷ୍ଟାରେ ଓଡ଼ିଶା ସାମ୍ରାଜ୍ୟରେ ଶାନ୍ତି ଓ ଶୃଙ୍ଖଳା ବିରାଜମାନ କରୁଥିଲା । କେବଳ ସେତିକି ନୁହେଁ ; ସେ ମଧ୍ୟ ଓଡ଼ିଶାର ସାଂସ୍କୃତିକ ବିଭବକୁ ଋଦ୍ଧିମନ୍ତ କରିବା ପାଇଁ ବହୁ ପଦକ୍ଷେପ ଗ୍ରହଣ କରିଥିଲେ । ପୁରୀ ଜଗନ୍ନାଥ ମନ୍ଦିରର ବେଢ଼ା ମଧ୍ୟରେ ସେ କେତୋଟି ଛୋଟ ଛୋଟ ମନ୍ଦିର ନିର୍ମାଣ କରିଥିବାର ଜଣାଯାଏ । ପୁରୀ ସହରର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ସେ କେତୋଟି ବ୍ରାହ୍ମଣ ଶାସନ ବସାଇ ଥିବାର ପ୍ରମାଣ ମଧ୍ୟ ରହିଛି । ତନ୍ମଧ୍ୟରୁ ସର୍ବ ବୃହଦ୍ ଥିଲା ପିପିଲି ବଜାରଠାରୁ ପାଞ୍ଚ କିଲୋମିଟର ଦୂରରେ ଅବସ୍ଥିତ ଦାଣ୍ଡମୁକୁନ୍ଦପୁର ଶାସନ । ଉକ୍ତ ଶାସନକୁ ସେ ୬ଟି ପଡ଼ା କରି ବ୍ରାହ୍ମଣମାନଙ୍କୁ ଦାନ କରି ଥିବାରୁ ତାଙ୍କ ନାମ ସଂଲଗ୍ନ କରି ଦାନମୁକୁନ୍ଦପୁର ନାମରେ ଖ୍ୟାତ ହୋଇଥିଲା । କାଳକ୍ରମେ ଅପଭ୍ରଂଶ ହୋଇ ତାହା ଦାଣ୍ଡମୁକୁନ୍ଦପୁର ନାମରେ କଥିତ ହୋଇ ଅଧୁନା ତାହା ସେହି ନାମରେ ପରିଚିତ । ଅବଶ୍ୟ ଖୋର୍ଦ୍ଧାରେ ଅନ୍ୟ ଦୁଇ ଜଣ ମୁକୁନ୍ଦଦେବ ରାଜୁତି କରିଥିଲେ ମଧ୍ୟ ସେମାନେ କୌଣସି ଶାସନ ପ୍ରତିଷ୍ଠା କରିଥିବାର ଜଣାଯାଏ ନାହିଁ । ଏପରି ସ୍ଥଳେ ଦାନମୁକୁନ୍ଦପୁର ଶାସନଟି ମୁକୁନ୍ଦଦେବ ହରିଚନ୍ଦନ ସ୍ଥାପନ କରିଥିବାର ଚିନ୍ତା କରାଯାଇ ପାରେ । କେବଳ ସେତିକି ନୁହେଁ, ସେ ସମ୍ପର୍କରେ ଏକ ଲୋକଶ୍ରୁତି ରହିଛି । ତାହା ହେଲା,

ପୋଖରୀ ଦିଘୀ ଦହନ
　　　　ଖଣ୍ଡିଆ ଜଗମୋହନ,

ମୁକୁନ୍ଦଦେବ ବାଇ ;
ଛଅଖଣ୍ଡି ପଡ଼ା ବସାଇଲେ
　　　　କେହି କାହାର ନାହିଁ ।

ଅର୍ଥାତ୍ ମୁକୁନ୍ଦଦେବ ବାଇ ବା ମତୁଆଲା ହୋଇ ୬ ଖଣ୍ଡି ପଡ଼ା ବିଶିଷ୍ଟ ଏକ ଶାସନ ସ୍ଥାପନ କରିଥିଲେ । ଏହି ପଡ଼ାଗୁଡ଼ିକର ନାମ ରଖାଯାଇଥିଲା, ପ୍ରଥମ-ଶ, ଦ୍ୱିତୀୟ-ଶ, ତୃତୀୟ-ଶ, ଚତୁର୍ଥ-ଶ, ପଞ୍ଚମ-ଶ ଓ ଷଷ୍ଠ-ଶ । ମାତ୍ର ମୁକୁନ୍ଦ ଦେବଙ୍କର ଅକାଳ ମୃତ୍ୟୁ ଯୋଗୁଁ ପଡ଼ାଗୁଡ଼ିକ ସଂପୂର୍ଣ୍ଣ ନହୋଇ ତାଙ୍କର ମୂଳ ଲକ୍ଷ୍ୟ ପୂରଣ ହୋଇ ପାରିଲା ନାହିଁ । ସେହିପରି ଜୟଗୋପାଳ ଠାକୁରଙ୍କ ପାଇଁ ନିର୍ମିତ ଜଗମୋହନ ମୁକୁନ୍ଦଦେବଙ୍କର ମୃତ୍ୟୁ ପାଇଁ ଖଣ୍ଡିଆ ହୋଇ ରହିଥିଲା । ପରେ ପରେ ରାଣୀ ତାକୁ ସଂପୂର୍ଣ୍ଣ କରିବା ସଂଗେ ସଂଗେ ପୁରୀରୁ ପୁଷ୍ପାଳକ

Digitized by srujanika@gmail.com

ଉପାଧି ଥିବା କେତେକ ପୂଜକ ବ୍ରାହ୍ମଣ ଆଣି ଗୋପାଳ ମନ୍ଦିରର ସେବା ପୂଜା ମାର୍ଯ୍ୟରେ ନିଯୁକ୍ତ କରିଥିଲେ। ଏବେ ମଧ୍ୟ ପୁଷ୍ଟାଳକ ଉପାଧି ଧାରଣ କରି ଦାଣ୍ଡମୁକୁନ୍ଦପୁର ଗ୍ରାମରେ କେତେକ ବ୍ରାହ୍ମଣ ପରିବାର ବାସ କରୁଥିବାର ଦେଖାଯାଏ। ତନ୍ମଧ୍ୟରୁ ଉକ୍ତ ପୁସ୍ତକର ତଥ୍ୟ ସଂଗ୍ରହ ଅବକାଶରେ ସାହାଯ୍ୟ କରିଥିବା କୃଷ୍ଣଚନ୍ଦ୍ର ପୁଷ୍ଟାଳକଙ୍କ ନାମ ଉଲ୍ଲେଖ ଯୋଗ୍ୟ। ମୁକୁନ୍ଦ ଦେବ ମଧ୍ୟ ଗୋପାଳଙ୍କ ମନ୍ଦିର ଉତ୍ତର ପାର୍ଶ୍ୱରେ ଭୁବନେଶ୍ୱର ପୁରୀ ରାସ୍ତାର ଡାହାଣ କଡ଼ରେ ଏକ ବିରାଟ ପୁଷ୍କରିଣୀ ଖନନ କରିଥିଲେ। ଏହା ଦିଘୀ ଦହନ ନାମରେ କଥିତ ହୋଇଥିଲା। ସେତେବେଳେ ଏହାର ଆୟତନ ୨୯ ଏକର ଥିଲା। ମାତ୍ର ପରେ ପରେ ଏହାର ଆୟତନ ହ୍ରାସ ପାଇ ବର୍ତ୍ତମାନ ଏହା ୨୫ ଏକର ଥିବାର ଜଣା ଯାଇଛି। ଏବେ ଏହା ବଡ଼ ପୋଖରୀ ନାମରେ କଥିତ। ଦାନମୁକୁନ୍ଦପୁର ଶାସନ ବ୍ୟତୀତ ମୁକୁନ୍ଦ ଦେବ ଅନ୍ୟ ୯ଟି ଛୋଟ ଛୋଟ ଶାସନ ପ୍ରତିଷ୍ଠା କରିଥିଲେ। ତାହା ୯ ଭାଗ ଶାସନ ନାମରେ କଥିତ। କାନ୍ୟକୁବ୍ଜରୁ ବ୍ରାହ୍ମଣ ଅଣାଇ ସେଗୁଡ଼ିକରେ ସେ ସେମାନଙ୍କୁ ବସବାସ କରାଇ ଥିବାର ଜଣାଯାଏ। ଏବେ ସେମାନେ ମିଶ୍ର, ରଥ, ଓତା, ତିଆଡ଼ି, ଦାସ, ପତି, ମହାପାତ୍ର, ଶତପଥୀ, ନନ୍ଦ, ଷଡ଼ଙ୍ଗୀ ପ୍ରଭୃତି ଉପାଧି ଧାରଣ କରି ସେହି ଶାସନରେ ବସବାସ କରି ରହୁଛନ୍ତି। ମୁକୁନ୍ଦ ଦେବ ମଧ୍ୟ ଶାସନ ପ୍ରତିଷ୍ଠା କରିବା ପରେ କିଛି ନିଷ୍କର ଚାଷ ଜମି ବା ଗହିର ଦାନ କରିଥିଲେ। ତାହା ଏବେ ଦାନଗହିର ନାମରେ କଥିତ। ଏହା ଏବେ ଏକ ମୁସଲମାନ ବହୁଳ ଗ୍ରାମ ଭାବେ ହାଟସାହି ପଞ୍ଚାୟତରେ ବିଦ୍ୟମାନ।

ଏହି ମୁକୁନ୍ଦଦେବ ହରିଚନ୍ଦନ ପିପିଲିର ଗୁରୁତ୍ୱ ଉପଲବ୍ଧି କରି ସେଠାରେ ସେ ଏକ ନଅର ତୋଳାଇଥିବାର ଜଣାଯାଏ। ଏହା ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଦ୍ୱାରା ଲିଖିତ 'ଓଡ଼ିଶାର ଇତିହାସ' ପୁସ୍ତକରୁ ସୂଚିତ ହୁଏ। ଏହି ନଅରର ଭଗ୍ନାବଶେଷ ନଥିଲେ ମଧ ଏହା ସପକ୍ଷରେ ଭୂୟସୀ ପ୍ରମାଣ ରହିଛି। କଟକ ଆଡୁ ପୁରୀ ରାସ୍ତାରେ ଗଲେ ଡାହାଣ ପଟରେ କେତୋଟି କୁଦ ଦେଖାଯାଏ। ଏହା ନଅରପଦା ନାମରେ କଥିତ। ଏଠାରେ ବର୍ତ୍ତମାନ ଜବାହର ବିଦ୍ୟାପୀଠ ଓ ମହିଳା ସି.ଟି. ସ୍କୁଲ ଅବସ୍ଥିତ। ସି.ଟି. ସ୍କୁଲ ନିର୍ମାଣ ସମୟରେ କୁଦ ଭିତରୁ କେତୋଟି ଛୋଟ ଛୋଟ ମୂର୍ତ୍ତି ଓ ଚଉରା ମିଳିଥିବାର ଜଣାପଡ଼ିଛି। ସେଠାରେ ମଧ ଏକ ପୁରାତନ କୂଅର ସଂକେତ ମିଳେ। ଏହା ବ୍ୟତୀତ ଏଠାରେ ଏକ ଛୋଟ ପୁଷ୍କରିଣୀ ବିଦ୍ୟମାନ। ଏହା ରାଣୀ ପୋଖରୀ ନାମରେ ଖ୍ୟାତ।

Digitized by srujanika@gmail.com

ଏହି ପୋଖରୀ ଚାରିପଟେ ପଥର ଦ୍ୱାରା ସଜ୍ଜିତ ହୋଇ ଅଛି ଓ ଏହାର ଲମ୍ବ ୨୫ ଫୁଟ ଓ ଓସାର ୧୫ ଫୁଟ ସହ ସୁନ୍ଦର ସୁନ୍ଦର ପାହାଚ ମାନ ରହିଛି। ଠିକ୍ ଏହି ପୋଖରୀକୁ ଲାଗି କରି ସେହି ସି.ଟି. ସ୍କୁଲ ହତା ମଧ୍ୟରେ ୪ ଫୁଟ ଲମ୍ବର ଗୋଟିଏ ପ୍ରସ୍ତର ଖଣ୍ଡରେ ନିର୍ମିତ ଏକ ତୁଳସୀ ଚଉଁରା ପଡ଼ିଥିବାର ଦେଖାଯାଏ। ଏହା ପୋଖରୀ କୂଳକୁ ଲାଗି ରହିଥିଲା। ରାଣୀ ସ୍ନାନ କରିବା ପରେ ହିନ୍ଦୁମାନଙ୍କର ପାରମ୍ପାରିକ ପ୍ରଥାନୁଯାୟୀ ସେ ଉକ୍ତ ଚଉଁରାରେ ଜଳଦେଇ ଉପାସନା କରୁଥିଲେ। ଏହି ରାଣୀ ପୋଖରୀ ପ୍ରାୟ ଏକ କିଲୋମିଟର ଦୂରରେ ଅବସ୍ଥିତ ମକରବା ପୋଖରୀ ସହିତ ଏକ ନାଳ **(Tunnel)** ଦ୍ୱାରା ସଂଯୋଜିତ ହୋଇଥିବାର ଜନଶ୍ରୁତି ରହିଛି। ମାତ୍ର ଏହାର ସତ୍ୟତା ପ୍ରମାଣିତ ହୋଇ ନାହିଁ। ରାସ୍ତାର ଅପର ପାର୍ଶ୍ୱରେ ଅନ୍ୟ ଏକ ପୁଷ୍କରିଣୀ ରହିଥିବାର ଦେଖାଯାଏ। ଏହା ବେଣ୍ଟ ପୋଖରୀ ନାମରେ ଖ୍ୟାତ। ଏହାର ମଧ୍ୟ ଭାଗରେ ଏକ ଦ୍ୱୀପଦଣ୍ଡୀ ରହିଥିବାର ଏଠାକାର ବୟସ୍କ ଅଧିବାସୀଙ୍କ ମୁଖରୁ ଶୁଣାଯାଏ। ସମ୍ଭବତଃ ଏହା ରାଜା ଓ ତାଙ୍କର ପାରିଷଦଙ୍କ ବ୍ୟବହାର ପାଇଁ ଉଦ୍ଦିଷ୍ଟ ଥିଲା। ଯାହା ଅନୁମାନ କରାଯାଏ ଏହି ନଅର ରକ୍ଷଣାବେକ୍ଷଣ ଅଭାବରୁ କାଳକ୍ରମେ ଭାଙ୍ଗି ପଡ଼ିବା ପରେ ଏ ଅଂଚଳର ଅଧିବାସୀ ପଥରଗୁଡ଼ିକୁ ନେଇ ନିଜ କାର୍ଯ୍ୟରେ ବ୍ୟବହାର କରିଛନ୍ତି।

ପରେ ପରେ ମୁକୁନ୍ଦଦେବ ହରିଚନ୍ଦନଙ୍କର ଭାଗ୍ୟାକାଶ ଦୁର୍ଯୋଗର ବାଦଲରେ ଆଚ୍ଛାଦିତ ହୋଇ ପଡ଼ିଥିଲା। ବଙ୍ଗଳାର ଆଫଗାନ ସୁଲତାନ ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଆକ୍ରମଣ କରିଥିଲେ। ସେ ଥିଲେ ସୁଲେମାନ କରାନୀ। ସେ ତାଙ୍କ ପୁତ୍ର ବାୟାଜିଦ ଓ ସେନାଧ୍ୟକ୍ଷ କଳାପାହାଡ଼ଙ୍କ ସହ ଆସି ବାରବାଟୀ ଦୁର୍ଗ ଆକ୍ରମଣ କରିଥିଲେ। କେଉଁ ପରିସ୍ଥିତିରେ ମୁକୁନ୍ଦଦେବ ନିହତ ହୋଇଥିଲେ, ତାହା ଏବେ ମଧ୍ୟ ରହସ୍ୟାବୃତ୍ତ ହୋଇ ରହିଛି। ସେ ଯାହା ହେଉନା କାହିଁକି, ଏହା ଓଡ଼ିଶାର ଘୋର ଦୁର୍ଯୋଗ ଯେ, ମୁକୁନ୍ଦଦେବ ତାଙ୍କର ନିଜ ଲୋକଙ୍କ ଦ୍ୱାରା ନିହତ ହେବା ପରେ ଓଡ଼ିଶାରେ ଆଫଗାନ ଶାସନର ନାଟକ ଉନ୍ମୋଚିତ ହୋଇଥିଲା। ଏଥି ସହିତ ପିପିଲି-ଡେଲାଙ୍ଗ ଇତିହାସରେ ଏକ ଘଟଣା ବହୁଳ ଅଧ୍ୟାୟ ସଂଯୋଜିତ ହୋଇଥିଲା।

□ □ □

Digitized by srujanika@gmail.com

# ତୃତୀୟ ଅଧ୍ୟାୟ

## ଆଫଗାନ, ମୋଗଲ ଓ ମରହଟ୍ଟା ରାଜତ୍ୱରେ ପିପିଲି ଭୂଖଣ୍ଡର ରାଜନୈତିକ ଇତିହାସ (ଖ୍ରୀ. ୧୫୬୮-୧୮୦୩)

୧୫୬୮ ଖ୍ରୀଷ୍ଟାବ୍ଦରେ ହିନ୍ଦୁ ରାଜତ୍ୱର ଅବସାନ ପରେ ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପର୍ଯ୍ୟନ୍ତ ଓଡ଼ିଶାର ରାଜନୈତିକ ପଟ୍ଟଭୂମିରେ ଆଫଗାନ(ଖ୍ରୀ.୧୫୬୮-୧୫୭୬), ମୋଗଲ(ଖ୍ରୀ.୧୫୭୬-୧୭୦୭), ନାଏବ ନାଜିମ୍(ଖ୍ରୀ.୧୭୦୭-୧୭୫୧) ଓ ମରହଟ୍ଟାମାନେ(ଖ୍ରୀ.୧୭୫୧-୧୮୦୩) ସର୍ବମୟ କର୍ତ୍ତାରୂପେ ନିଜ ନିଜର ଶାସନ ପ୍ରତିଷ୍ଠିତ କରାଇଥିଲେ। ସେହି ସମୟରେ ପ୍ରତ୍ୟେକଙ୍କ ଶାସନ ଥିଲା ଭଣା ଅଧିକେ ଓଡ଼ିଶା ଇତିହାସରେ ଗୋଟିଏ ଗୋଟିଏ କଳଙ୍କିତ ଅଧ୍ୟାୟ। ପିପିଲି ଭୂଖଣ୍ଡରେ ମଧ୍ୟ ସେମାନଙ୍କ ଶାସନର ପ୍ରଭାବ ଅନୁଭୂତ ହୋଇଥିଲା। ତାର ଏକ ବିବରଣୀ ଦେବା ପୂର୍ବରୁ ଖୋର୍ଦ୍ଧାରେ ଏକ ସ୍ୱାଧୀନ ରାଜ୍ୟର ପ୍ରତିଷ୍ଠା ଉପରେ କିଞ୍ଚିତ୍ ଆଲୋକପାତ କରିବା ବାଞ୍ଛନୀୟ। କାରଣ ପିପିଲି, ଡ଼େଲାଙ୍ଗ ଖୋର୍ଦ୍ଧା ରାଜ୍ୟର ସମୀପବର୍ତ୍ତୀ ହୋଇଥିବାରୁ ଗୋଟିଏ ଅନ୍ୟଟିର ଭାଗ୍ୟ ସହିତ ଜଡ଼ିତ ହୋଇଥିଲା।

### ଖୋର୍ଦ୍ଧାରେ ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠା

ମୁକୁନ୍ଦଦେବ ହରିଚନ୍ଦନଙ୍କ ରାଜତ୍ୱରେ ରମାଇ ରାଉତରାୟ ମହାପାତ୍ର ନାମରେ ଜଣେ କ୍ଷମତାଲିପ୍ସୁ ବ୍ୟକ୍ତି ଓଡ଼ିଶା ସାମ୍ରାଜ୍ୟର ଦକ୍ଷିଣ ସୀମାରେ ନିଜ ପିତାଙ୍କ ସହ ରହୁଥିଲେ। ତାଙ୍କ ପିତା ହେଉଛନ୍ତି ଭୋଇ ବଂଶର ପ୍ରଖ୍ୟାତ ସେନାପତି ଜନାର୍ଦ୍ଦନ ବିଦ୍ୟାଧର। ସେ ମଧ୍ୟ ଦନେଇ ବିଦ୍ୟାଧର ନାମରେ ପରିଚିତ। ସେ ଭୋଇ ବଂଶର ୪ଜଣ ରାଜାଙ୍କର ମନ୍ତ୍ରୀ ଓ ସେନାପତି ଭାବେ କାର୍ଯ୍ୟକରି



Digitized by srujanika@gmail.com

ଶାସନ କ୍ଷେତ୍ରରେ ଖୁବ୍ ପ୍ରଭାବଶାଳୀ ହୋଇ ଓଡ଼ିଶା ସାମ୍ରାଜ୍ୟର ସର୍ବମୟ କର୍ତ୍ତା ହେବାର ସ୍ୱପ୍ନ ଦେଖୁଥିଲେ। ମୁକୁନ୍ଦଦେବଙ୍କୁ ଏହି ବିଷୟ ଅଜ୍ଞାତ ନଥିଲା। ତେଣୁ ସେ ଓଡ଼ିଶା ସାମ୍ରାଜ୍ୟର ଦକ୍ଷିଣ ସୀମାକୁ ସୁରକ୍ଷିତ କରି ରଖିବା ଆଳରେ ତାଙ୍କୁ ସୁଦୂର ଗୋଦାବରୀ ନଦୀ ତଟକୁ ପ୍ରେରଣ କରିଥିଲେ। ତାଙ୍କରି ସଙ୍ଗରେ ଥିଲେ ନିଜର ଯୁବକ ପୁତ୍ର ରମାଇ ରାଉତରାୟ। ସେ ଜଣେ ଉଚ୍ଚାଭିଳାଷୀ ଉଦ୍ଧାମ ଯୁବକ ହୋଇଥିବାର ଲକ୍ଷ୍ୟକରି ମୁକୁନ୍ଦଦେବ ହରିଚନ୍ଦନ ତାଙ୍କୁ ରାଜମହେନ୍ଦ୍ରୀଠାରେ ବନ୍ଦୀକରି ରଖିଥିଲେ। ମାତ୍ର ସେ ଜନ୍ମ ଗ୍ରହଣ କରି ନଥିଲେ ଆଜୀବନ ବନ୍ଦୀଶାଳାରେ ଦୁଃଖ କଷ୍ଟରେ ଅତିବାହିତ କରିବାପାଇଁ, ବରଂ ନିଜେ ଏକ ରାଜ୍ୟ ପ୍ରତିଷ୍ଠା କରି ତାର ସିଂହାସନ ଅଳଙ୍କୃତ କରିବା ଥିଲା ତାଙ୍କର ଲକ୍ଷ୍ୟ। ସେହି ସୁଯୋଗ ଅପେକ୍ଷାରେ ସେ ରହିଥା'ନ୍ତି। ୧୫୬୮ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବ ନିହତ ହେଲେ। ପରେ ପରେ ତାଙ୍କର ଭାଗ୍ୟରବି ଉଦିତ ହେଲା। ସେ ବନ୍ଦୀଶାଳାରୁ ମୁକ୍ତ ହୋଇ ନିଜର ରାଜନୈତିକ ରଙ୍ଗମଞ୍ଚ ପ୍ରସ୍ତୁତ କରିବା ପାଇଁ ଅଗ୍ରସର ହେଲେ। ସେ ରହିଲେ ଗୋଟମା ଗଡ଼ରେ। ଏହାକୁ ଆନ୍ଧ୍ରର ବିଶାଖାପାଟଣା ଜିଲ୍ଲା ବୀରଗୋଟମେ ସହିତ ଚିହ୍ନିତ କରାଯାଏ। ସେଠାରେ ସେ ଦୀର୍ଘ ୩ ବର୍ଷ କାଳ ଅବସ୍ଥାନ କରିଥିଲେ। ଖୋର୍ଦ୍ଧାର ପାର୍ଶ୍ୱବର୍ତ୍ତୀ କେତୋଟି ଗଡ଼ର ଅଧିକାରୀ ଓ ଗ୍ରାମର ପ୍ରଭାବଶାଳୀ ବ୍ୟକ୍ତି ତଥା ଦକ୍ଷିଣ ଓଡ଼ିଶାର କେତେଜଣ ସାମନ୍ତ ରାଜାଙ୍କ ସହ ଯୋଗସୂତ୍ର ସ୍ଥାପନ କରିବା ପୂର୍ବକ ନିଜର କ୍ଷମତା ବିସ୍ତାର କରିବା ଦିଗରେ ସେ ଉଦ୍ୟମ ଚଳାଇ କୃତକାର୍ଯ୍ୟ ମଧ ହୋଇଥିଲେ। ସେହି କାର୍ଯ୍ୟରେ ତାଙ୍କୁ ସହାୟତା ଦେଇଥିଲେ ଖୋର୍ଦ୍ଧା ନିକଟବର୍ତ୍ତୀ ମଳିପଡ଼ା ଗଡ଼ର ଅଧିବାସୀ, ଡେଲାଙ୍ଗ ନିକଟବର୍ତ୍ତୀ ଘୋଡ଼ାଡ଼ିହାଁ (ଘୋରଡ଼ିହା) ଗ୍ରାମର ଝାଡୁ ପରିଡ଼ା, ଚିଲିକା ପୂର୍ବ ଉପକୂଳର ଭାର୍ଗବୀ ନଦୀ ତଟରେ ଅବସ୍ଥିତ କୋକଳଗଡ଼ର ବାଘୁ ପାତ୍ର।(୧)। ସେହିମାନଙ୍କ ସମର୍ଥନରେ ରମାଇ ରାଉତରାୟ ମହାପାତ୍ର ବରୁଣାଇ ପାହାଡ଼ର ଖୁରୁଧା ନାମକ ଏକ ଗ୍ରାମରେ ଗୋଟିଏ ସୁଦୃଢ଼ ଦୁର୍ଗ ପ୍ରତିଷ୍ଠା କରିଥିଲେ। ଏହି ସ୍ଥାନର ଅନ୍ୟ ନାମ ମଧ ଥିଲା, ଜଗନ୍ନାଥ କଟକ। ଗଡ଼ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ରମାଇ ରାଉତରାୟ ରାମଚନ୍ଦ୍ରଦେବ ନାମ ଧାରଣ କରି ନିଜକୁ ଗଜପତି ରାଜବଂଶର ବଂଶଧର ବୋଲି ଘୋଷଣା କରିଥିଲେ। ସେ ମଧ ଏକ ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠା କରି ତା'ର ନାମ ରଖିଥିଲେ ଖୁରୁଧା ରାଜ୍ୟ। ଏହା ଥିଲା ୧୫୭୧-୧୫୭୨ ମସିହାର କଥା। କାଳକ୍ରମେ

---

(୧) ସୁଧାକର ପଟ୍ଟନାୟକ : ଚକଡ଼ା ପୋଥି ଓ ଚୟନୀ ଚକଡ଼ା- ପୃ.୫-୬

Digitized by srujanika@gmail.com

ଖୁରୁଧା ଖୋର୍ଦ୍ଧା ନାମ ଧାରଣ କରିଥିଲା । କେବଳ ସେତିକି ନୁହେଁ, ସ୍ୱାଧୀନ ଖୋର୍ଦ୍ଧା ରାଜ୍ୟ ପ୍ରତିଷ୍ଠାକୁ ସ୍ମରଣୀୟ କରିବା ପାଇଁ ସେ ଏକ ଅଙ୍କ ପ୍ରଚଳନ କରିଥିଲେ । ସେହିଠାରୁ ଆରମ୍ଭ ହୋଇଥିଲା ଖୋର୍ଦ୍ଧାର ଗଜପତି ରାଜାଙ୍କ ରାଜତ୍ୱ । ଗଜପତି ପଦବୀ ଧାରଣ କରିଥିଲେ ସୁଦ୍ଧା ସେ କପିଳେନ୍ଦ୍ର ଦେବଙ୍କଦ୍ୱାରା ପ୍ରତିଷ୍ଠିତ ସୂର୍ଯ୍ୟବଂଶୀୟ ଗଜପତି ରାଜବଂଶର ବଂଶଧର ନଥିଲେ । ସେ ଯାହାହେଉ, ଖୋର୍ଦ୍ଧାର ଏ ଐତିହାସିକ ରାଜବଂଶ ଖ୍ରୀ.୧୫୭୧ରୁ ପ୍ରାୟ ୨୩୬ ବର୍ଷ ରାଜତ୍ୱ କରି ୧୮୦୭ ଖ୍ରୀଷ୍ଟାବ୍ଦରେ ଇଂରେଜ ପ୍ରଶାସକଙ୍କ ଆଦେଶ କ୍ରମେ ପୁରୀକୁ ସ୍ଥାନାନ୍ତରିତ ହୋଇଥିଲା । ସେହି ବର୍ଷ ଖୋର୍ଦ୍ଧାରେ ଗଜପତି ଶାସନର ଯବନିକା ପଡ଼ି ପୁରୀରେ ଉକ୍ତ ଶାସନର ଅଯମାରମ୍ଭ ହୋଇଥିଲା ।

ରାମଚନ୍ଦ୍ର ଦେବ ନିଜକୁ ପ୍ରତିଷ୍ଠିତ କରାଇବା ପରେ ଆଫଗାନମାନଙ୍କ କର୍ତ୍ତୃତ୍ୱରେ ରହିଥିବା ବାରବାଟୀ ଦୁର୍ଗକୁ ପୁନରୁଦ୍ଧାର କରିବା ପାଇଁ ଉଦ୍ୟମ ନକରି ନିଜର ରାଜ୍ୟକୁ ଅଧିକ ସୁଦୃଢ଼ କରିବା ଦିଗରେ ମନୋନିବେଶ କରିଥିଲେ । ଆବୁଲଫାଜଲଙ୍କ ବର୍ଣ୍ଣନାନୁଯାୟୀ ତାଙ୍କ ରାଜ୍ୟ ଉତ୍ତର ସୀମା କୁଆଖାଇ ନଦୀଠାରୁ ଦକ୍ଷିଣରେ ପୁରୀ ଓ ପୂର୍ବରେ ପିପିଲି ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ଏହି ରାଜ୍ୟକୁ ସୁଦୃଢ଼ କରିବା ଦିଗରେ ରାଜ୍ୟର ଚତୁଃପାର୍ଶ୍ୱରେ କେତୋଟି ଗଡ଼ ନିର୍ମାଣ କରିବା ତାଙ୍କର ପ୍ରଥମ ପଦକ୍ଷେପ ଥିଲା । ତନ୍ମଧ୍ୟରୁ ଅଧିକାଂଶ ଗଡ଼ ଥିଲା ପିପିଲି-ଡ଼େଲାଙ୍ଗ ଅଞ୍ଚଳରେ । କାରଣ ସେ ଯଥାର୍ଥରେ ଚିନ୍ତା କରିଥିଲେ ଯେ ଆଫଗାନ୍ ଓ ମୋଗଲ ପ୍ରଶାସକମାନେ କଟକ ପୁରୀ ରାସ୍ତାରେ ଯାଇ ନିଶ୍ଚିତ ରୂପେ ଜଗନ୍ନାଥ ମନ୍ଦିର ଆକ୍ରମଣ କରିବେ । ଏଥି ସହିତ ଅର୍ଥ ଲୋଭରେ ସମୃଦ୍ଧଶାଳୀ ଖୋର୍ଦ୍ଧା ରାଜ୍ୟର ରାଜଧାନୀ ଖୁରୁଧାଗଡ଼ ମଧ ସେମାନେ ଆକ୍ରମଣ କରି ପାରନ୍ତି । ତାଙ୍କର ଚିନ୍ତା ମଧ ଅମୂଳକ ନଥିଲା । ପ୍ରକୃତ ପକ୍ଷେ ଜଣା ଅଧିକେ ସବୁ ଆଫଗାନ୍ ଓ ମୋଗଲ ପ୍ରଶାସକ ତାହାହିଁ କରିଥିଲେ । କିଏ ଜଗନ୍ନାଥ ମନ୍ଦିର ଆକ୍ରମଣ କରିବା ପାଇଁ ପଦକ୍ଷେପ ନେଇଛନ୍ତି ତ କିଏ ଖୋର୍ଦ୍ଧାଗଡ଼ ଆକ୍ରମଣ କରିଛନ୍ତି । ସେ ଦିଗରେ କିଏ ଜୟଯୁକ୍ତ ହୋଇଛନ୍ତି ତ କିଏ ପରାଜୟ ବରଣ କରି ନିଜର ରାଜଧାନୀ କଟକକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି । ସେ ଯାହାହେଉ, ରାମଚନ୍ଦ୍ର ଦେବ ନିଜର ରାଜୁତି ସମୟରେ ୧୫୭୦ଖ୍ରୀଷ୍ଟାବ୍ଦରୁ ୧୬୦୦ ଖ୍ରୀଷ୍ଟାବ୍ଦ ମଧରେ ନିର୍ମାଣ କରିଥିବା କେତେକ ଗଡ଼ର ନାମ ଆବୁଲଫାଜଲ୍ ତାଙ୍କ ଦ୍ୱାରା ରଚିତ ଆଇନ୍-ଇ-ଆକବରୀ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।(୨)। ତନ୍ମଧ୍ୟରୁ ଭୂଇଁମୂଳ,

---

(୨) ଆକବରନାମା - ପୃ.୯୬୧

Digitized by srujanika@gmail.com

ସହଜପାଳ କଟକ, ଖରଗଡ଼, କହନନର ନାମ ଉଲ୍ଲେଖଯୋଗ୍ୟ। ଏ ସବୁର ଅବସ୍ଥିତି ଥିଲା ଡ଼େଲାଙ୍ଗ-ପିପିଲି ଭୂଖଣ୍ଡରେ। ଭୂଇଁମୂଳକୁ ଡ଼େଲାଙ୍ଗ ନିକଟରେ ଭୂଇଁମୂଳ ଗଡ଼, ସେହି ଡ଼େଲାଙ୍ଗ ନିକଟରେ ସହଜପାଳ କଟକକୁ ସହଜପାରି ସହିତ, ଖରଗଡ଼କୁ ଢଟଣୀ ନିକଟବର୍ତ୍ତୀ ଅରାଗଡ଼ ସହିତ ଓ କହନନକୁ କାକୁଡ଼ିଆ ଗ୍ରାମ ନିକଟରେ ଥିବା ଗଡ଼ କୁରକି ସହିତ ଚିହ୍ନିତ କରାଯାଇଥାଏ। ଗଡ଼ କୁରକି ଏବେ ନିଜଗଡ଼ କୁରକି ନାମରେ କଥିତ।

ଗଡ଼ ନିର୍ମାଣ କରିବା ବ୍ୟତୀତ ରାମଚନ୍ଦ୍ର ଦେବ ପୁରୀଠାରୁ କିଛି ଦୂରରେ କେତୋଟି ଶାସନ ପ୍ରତିଷ୍ଠା କରି ତାର ନାମ ରଖିଥିଲେ ଶ୍ରୀରାମଚନ୍ଦ୍ରପୁର, ପ୍ରତାପ ରାମଚନ୍ଦ୍ରପୁର ଓ ବିଜୟ ରାମଚନ୍ଦ୍ରପୁର। ଏ ସବୁ ପିପିଲି-ଡ଼େଲାଙ୍ଗ ତହସିଲ ସୀମାଠାରୁ ଅନତିଦୂରରେ ଅବସ୍ଥିତ। ରାମଚନ୍ଦ୍ର ଦେବଙ୍କ ରାଜତ୍ୱରେ ଅନ୍ୟ ଏକ ଅଭିଶପ୍ତ ଘଟଣା ହେଉଛି କଳାପାହାଡ଼ଙ୍କ ଦ୍ୱାରା ବହୁ ହିନ୍ଦୁ ମନ୍ଦିରର ଧ୍ୱଂସ ସାଧନ। ତାଙ୍କ ନାମ ଜନଶ୍ରୁତିରେ ଏପରି ଭାବରେ ଜଡ଼ିତ ହୋଇଯାଇଛି ଯେ ଓଡ଼ିଶାର ଯେ କୌଣସି ଭଗ୍ନ ମନ୍ଦିର ଦେଖିଲେ ତାହା କଳାପାହାଡ଼ର କାର୍ଯ୍ୟ ବୋଲି କୁହାଯାଇଥାଏ। ମାତ୍ର ତାହା ସତ୍ୟ ନୁହେଁ। ସେ ଯାହା ହେଉ, ଏହି କଳାପାହାଡ଼ ଥିଲେ ଆଫଗାନ୍ ସୁଲ୍‌ତାନ ସୁଲେମାନ୍ କରାନୀଙ୍କର ସେନାଧ୍ୟକ୍ଷ। ବଙ୍ଗଳାର ଏକ ଲୋକଶ୍ରୁତିରୁ ଜଣାଯାଏ ଯେ ସେ ଥିଲେ ଜଣେ ହିନ୍ଦୁ ବ୍ରାହ୍ମଣ। ତାଙ୍କର ଦୁଇ ଜଣ ହିନ୍ଦୁ ପତ୍ନୀ ଥିବା ସତ୍ତ୍ୱେ ସେ ବଙ୍ଗଳାର ସୁଲ୍‌ତାନଙ୍କ କନ୍ୟା ଦୁଲାରୀଙ୍କ ପ୍ରେମରେ ପଡ଼ି ତାଙ୍କୁ ବିବାହ କରିଥିଲେ। ମାତ୍ର ଏହା ସତ୍ତ୍ୱେ ସେ ହିନ୍ଦୁ ହୋଇ ରହିବାକୁ ଆଗ୍ରହ ପ୍ରକାଶ କରି ପୁରୀ ଜଗନ୍ନାଥ ମନ୍ଦିରରେ ପ୍ରାୟଶ୍ଚିତ କରିବାକୁ ଚାହିଁଥିଲେ। ମନ୍ଦିରର ବ୍ରାହ୍ମଣମାନେ ସେଥିପାଇଁ ଅନୁମତି ନ ଦେବାରୁ ସେ ପ୍ରତିକ୍ରିୟାଶୀଳ ହୋଇ ପ୍ରତିମା ଓ ମନ୍ଦିର ବିଧ୍ୱଂସକାରୀର ଭୂମିକା ଗ୍ରହଣ କରିଥିଲେ। ପ୍ରଭାତ କୁମାର ମୁଖାର୍ଜୀ ସମେତ ଅନ୍ୟ କେତେକ ଐତିହାସିକ କିଛି ଉର୍ଦ୍ଦୁ ଗ୍ରନ୍ଥକୁ ଉଦ୍ଧାର କରି ମତବ୍ୟକ୍ତ କରିଛନ୍ତି ଯେ କଳାପାହାଡ଼ କେବେ ହିନ୍ଦୁ ନଥିଲେ। ସେ ଥିଲେ ଜଣେ ମୁସଲମାନ ଓ ତାଙ୍କ ନାମ ଥିଲା ବାହାଲାଲ ଲୋଦୀ। ମାତ୍ର ଉଭୟ ମତବାଦକୁ ବିଚାର କଲେ ସେ ହିନ୍ଦୁ ଥିବାର ଯୁକ୍ତିଟି ଅଧିକ ସମ୍ଭାବ୍ୟ ବୋଲି ଜଣାପଡ଼େ। କାରଣ ସେ ପ୍ରତିକ୍ରିୟାଶୀଳ ହୋଇ ନଥିଲେ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ଏତେ ସଂଖ୍ୟକ ମନ୍ଦିର ଓ ମୂର୍ତ୍ତି ଧ୍ୱଂସ କରି ନଥାନ୍ତେ। ଅବଶ୍ୟ ତାଙ୍କ ପୂର୍ବରୁ ତୋଗଲକ ବଂଶର ଦିଲ୍ଲୀ ସୁଲତାନ ଫିରୋଜଶାହା ତୋଗଲକ ୧୩୬୦-୬୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଅଭିଯାନରେ ଆସି ଜଗନ୍ନାଥ ମନ୍ଦିର ଆକ୍ରମଣ

Digitized by srujanika@gmail.com

କରିଥିବାର ବର୍ଣ୍ଣନା ମିଳେ। ମାତ୍ର ଏହା ପୁରୀର ଜଗନ୍ନାଥ ମନ୍ଦିର ବା କଟକସ୍ଥିତ ଜଗନ୍ନାଥ ମନ୍ଦିର ତାହା ସଠିକ ରୂପେ କହି ହେଉନାହିଁ। ତଥାପି ଡ଼କ୍ଟର ଏମ୍.ଏ.ହକ୍ ବହୁ ପ୍ରମାଣ ଉପସ୍ଥାପନ କରି ତାହା କଟକସ୍ଥିତ ଜଗନ୍ନାଥ ମନ୍ଦିର ବୋଲି ମତବ୍ୟକ୍ତ କରିଛନ୍ତି। ସେ ଯାହାହେଉ, କଳାପାହାଡ଼ ପୁରୀର ଜଗନ୍ନାଥ ମନ୍ଦିର ଆକ୍ରମଣ ବିଷୟରେ ଏକ ବର୍ଣ୍ଣନା ମାଦଳା ପାଞ୍ଜିରେ ଦେଖିବାକୁ ମିଳେ। ଆଫଗାନ ମୁସଲମାନ କଟକ ଅଧିକାର କରିବା ପରେ ପୁରୀ ଜଗନ୍ନାଥ ମନ୍ଦିରର ସେବକମାନେ ମନ୍ଦିର ଆକ୍ରମଣର ଆଶଙ୍କା କରି ୩ଟି ଯାକ ବିଗ୍ରହକୁ ଚିଲିକା ହ୍ରଦରେ ଥିବା ପାରିକୁଦରେ ଲୁଚାଇ ରଖିଥିଲେ। କଳାପାହାଡ଼ ଜଗନ୍ନାଥ ମନ୍ଦିର ଆକ୍ରମଣ କରି ମନ୍ଦିରଟି ବିଗ୍ରହଶୂନ୍ୟ ଥିବାର ଦେଖିଲେ। ଖବର ନେବାରୁ ଜାଣିଲେ ଯେ ଚିଲିକାରେ ବିଗ୍ରହଗୁଡ଼ିକ ଲୁଚାଇ ରଖାଯାଇଛି। ତେଣୁ ସେ ତୁରନ୍ତ ସେଠାକୁ ଯାଇ ବିଗ୍ରହଗୁଡ଼ିକୁ ହାତୀ ପିଠିରେ ବଙ୍ଗଳାକୁ ନେଇଗଲେ ଓ ଗଙ୍ଗା ନଦୀ କୂଳରେ ସେଗୁଡ଼ିକୁ ପୋତି ଦେଇଥିଲେ। ଇତିମଧ୍ୟରେ ବିଶର ମହାନ୍ତି ନାମରେ ଜଣେ ବୈଷ୍ଣବ ଧର୍ମର ଉପାସକ କଳାପାହାଡ଼ଙ୍କର ପଶ୍ଚାଦ୍ଧାବନ କରି ଗଙ୍ଗା ନଦୀ କୂଳରୁ ତିନି ବିଗ୍ରହ ମଧ୍ୟରେ ଥିବା ବ୍ରହ୍ମ (ସମ୍ଭବତଃ ରତ୍ନ) ଉଦ୍ଧାର କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକୁ ଗୋଟିଏ ମୃଦଙ୍ଗ ମଧ୍ୟରେ ରଖି ପୁରୀ ମନ୍ଦିର ମଧ୍ୟରେ ସ୍ଥାପନ କରିଥିଲେ। ସେହି ମାଦଳା ପାଞ୍ଜିରେ ଅନ୍ୟ ଏକ ବର୍ଣ୍ଣନାରୁ ଜଣାଯାଏ ଯେ, କଳାପାହାଡ଼ ଜଗନ୍ନାଥ ମନ୍ଦିରର 'ଅମଲାକୀଶିକା' ପର୍ଯ୍ୟନ୍ତ ଧ୍ୱଂସ କରିଥିଲେ। ମାତ୍ର ଏହାର କୌଣସି ପ୍ରମାଣ ନାହିଁ ବୋଲି ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମତବ୍ୟକ୍ତ କରିଛନ୍ତି। ବିଗ୍ରହଗୁଡ଼ିକୁ ବିବର୍ଣ୍ଣ କରି ଦେଇଥିଲେ ମଧ୍ୟ ମନ୍ଦିରର କିଛି ଧ୍ୱଂସ ସାଧନ କରିବାର ସଂକେତ ନାହିଁ।(୩)। କଳାପାହାଡ଼ କଟକରୁ ପୁରୀ ଯିବା ରାସ୍ତାରେ ଡ଼ାହାଣରେ ଥିବା ଦାଣ୍ଡମୁକୁନ୍ଦପୁରର ଗୋପାଳଜୀଉ ମନ୍ଦିର ଓ ନୂଆଶାସନସ୍ଥିତ ନୃସିଂହ ଦେବ ମନ୍ଦିର ଧ୍ୱଂସ କରିଥିବାର ଜଣାଯାଏ। ସେ ଭୂଖଣ୍ଡର ମଧ୍ୟଭାଗକୁ ଯିବାକୁ ଉଦ୍ୟମ କରି ନଥିଲେ। ତାହା ହୋଇଥିଲେ ଅନ୍ୟ କେତେକ ମନ୍ଦିର ତାଙ୍କର ଶରବ୍ୟ ହୋଇ ଥାଆନ୍ତା।

## ଆଫଗାନ୍ ଓ ମୋଗଲ ରାଜତ୍ୱରେ ପିପିଲି

ଅନ୍ୟ ଏକ ଦୃଷ୍ଟିକୋଣରୁ ସେହି ରାମଚନ୍ଦ୍ର ଦେବଙ୍କ ରାଜତ୍ୱ ଥିଲା ଗୁରୁତ୍ୱପୂର୍ଣ୍ଣ। ୧୫୬୮ ଖ୍ରୀଷ୍ଟାବ୍ଦରେ ସୁଲତାନ ସୁଲେମାନ କରାନୀ ଓଡ଼ିଶା ଅଧିକାର କରି ଓଡ଼ିଶା ସମେତ ବଙ୍ଗଳାରେ ୧୫୭୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିବା

(୩) K.C.Panigrahi: Orissa History - p.244

Digitized by srujanika@gmail.com

ପରେ ସେହି ବର୍ଷ ମୃତ୍ୟୁ ବରଣ କରିଥିଲେ। ତାଙ୍କ ପରେ ବଙ୍ଗଳାର ସିଂହାସନ ଆରୋହଣ କରିଥିଲେ ତାଙ୍କ ପୁତ୍ର ବାୟାଜିଦ୍। ମାତ୍ର ବେଶୀ ଦିନ ଶାସକ ହେବାର ସୁଯୋଗ ତାଙ୍କ ଭାଗ୍ୟରେ ଯୁଟି ନଥିଲା। ସେ ତାଙ୍କର ସାନଭାଇ ଦାଉଦ୍ କରାନୀଙ୍କ ଛୁରିକାଘାତର ଶିକାର ହୋଇ ମୃତ୍ୟୁ ବରଣ କରିଥିଲେ। ତାଙ୍କ ପରେ ଦାଉଦ୍ ହୋଇଥିଲେ ବଙ୍ଗଳାର ସୁଲ୍‌ତାନ। ସେହି ଦୃଷ୍ଟିରୁ ଓଡ଼ିଶା ମଧ୍ୟ ରହିଲା ତାଙ୍କ ଅଧୀନରେ। ଏହିପରି ରାଜନୈତିକ ଅସ୍ଥିରତାର ସୁଯୋଗ ନେବାକୁ ଚାହିଁଥିଲେ ମହାମାନ୍ୟ ମୋଗଲ ସମ୍ରାଟ ଆକବର। କାରଣ ଗୋଳିଆ ପାଣିରେ ମାଛ ଧରିବା ସୁବିଧା- ତାହାହିଁ ରାଜନୀତି କ୍ଷେତ୍ରରେ ପ୍ରଯୁଜ୍ୟ। ପରେ ପରେ ୧୫୭୪ ଖ୍ରୀଷ୍ଟାବ୍ଦରେ ଆକବର ରାଜା ତୋଡ଼ରମଲ୍ଲଙ୍କୁ ସେନାଧକ୍ଷ ଭାବରେ ଓଡ଼ିଶା ଜୟ କରିବା ପାଇଁ ଏକ ସେନାବାହିନୀ ସହ ପ୍ରେରଣ କରିଥିଲେ। ଦାଉଦ୍ ଓ ତୋଡ଼ରମଲ୍ଲଙ୍କ ମଧ୍ୟରେ ଏକ ଭୟାବହ ସଂଘର୍ଷ ସଂଘଟିତ ହୋଇଥିଲା ସୁବର୍ଣ୍ଣରେଖା ନଦୀର ବାମପଟକୁ ଦୁଇ ମାଇଲ୍ ଦୂରରେ ଅବସ୍ଥିତ ତୁକୋରୋଇଠାରେ। ଦାଉଦ୍‌ଙ୍କର ପରାଜୟ ଥିଲା ଭାଗ୍ୟର ନିଷ୍ପତ୍ତି। ତା'ପରେ ତୋଡ଼ରମଲ୍ଲ କଟକ ମଧ୍ୟରେ ପ୍ରବେଶ କରି ଆକବରଙ୍କର ବିଜୟ ବୈଜୟନ୍ତୀ ଉଡ଼ାଇଥିଲେ।

ସେହି ସମୟରେ ତୋଡ଼ରମଲ୍ଲ ଓଡ଼ିଶାର କିଛି ଅଂଶ ବିଶେଷତଃ ପିପିଲି-ଢ଼େଙ୍କାଳ ସମେତ ପୁରୀ ଜିଲ୍ଲାର କେତେକ ଅଞ୍ଚଳର ଜମିଜମାର ବନ୍ଦୋବସ୍ତ କଟକରେ ଆରମ୍ଭ କରାଇଥିଲେ। ଆଣ୍ଡ୍ରିଉ ଷ୍ଟାର୍ଲିଂ ତାଙ୍କର History of Orissa or Cuttack Proper ପୁସ୍ତକରେ ଲେଖିଛନ୍ତି ଯେ, ତୋଡ଼ରମଲ୍ଲ ୧୫୮୦ ଖ୍ରୀଷ୍ଟାବ୍ଦରେ ଏହି ଜମିଜମା ବନ୍ଦୋବସ୍ତ ଆରମ୍ଭ କରାଇଥିଲେ। ସେ ମଧ୍ୟ ବାଙ୍କକାଟି, ବାଲିଅନ୍ତା, ପିପିଲି ଦେଇ ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରିଥିବାର ଜଣାଯାଏ। ଏହିପରି ଭାବେ ସେ ବିଜୟର ଧ୍ୱଜା ବହନ କରି ଦିଲ୍ଲୀ ଫେରି ଯାଇଥିଲେ। ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ, ଆଫଗାନମାନଙ୍କୁ ସେ ସଂପୂର୍ଣ୍ଣ ରୂପେ ଦମନ କରି ପାରିଛନ୍ତି। ମାତ୍ର ତାଙ୍କର ଭାବନା ତ୍ରୁଟିପୂର୍ଣ୍ଣ ଥିଲା। ଅର୍ଦ୍ଧ ମୃତ ଅବସ୍ଥାରେ ପଡ଼ିଥିବା ସର୍ପ ପବନ ଆହାର ନେଇ ମୁଣ୍ଡ ଟେକିଲା ପରି ପୁଣି ଥରେ ଓଡ଼ିଶାରେ ଆଫଗାନମାନେ ମୋଗଲ ବିରୁଦ୍ଧରେ ବିଦ୍ରୋହ କରିଥିଲେ। ଫଳରେ ଆକବର ୧୫୯୨ ଖ୍ରୀଷ୍ଟାବ୍ଦରେ ତାଙ୍କର ଅନ୍ୟତମ ସେନାଧକ୍ଷ ରାଜା ମାନସିଂଙ୍କୁ ଆଫଗାନ ବିଦ୍ରୋହର ପ୍ରତ୍ୟେକ ବୀଜାଣୁ ଧ୍ୱଂସ କରିବା ପାଇଁ ଓଡ଼ିଶା ପ୍ରେରଣ କରିଥିଲେ। ତାହାହିଁ ମଧ୍ୟ ହୋଇଥିଲା। ତାଙ୍କରି ଉଦ୍ୟମ କ୍ରମେ ଆଫଗାନମାନେ ଓଡ଼ିଶାର ରାଜନୈତିକ ରଙ୍ଗମଞ୍ଚରୁ ଦୀର୍ଘ ଏକ ଶତ ବର୍ଷ ପାଇଁ ଅପସାରିତ ହୋଇଥିଲେ।

Digitized by srujanika@gmail.com

ବିଧିବଦ୍ଧ ଭାବେ ସେମାନଙ୍କର ସ୍ଥାନ ମୋଗଲମାନେ ଗ୍ରହଣ କରିଥିଲେ ।

ରାଜା ମାନସିଂ ପ୍ରଥମେ ତୋଡ଼ରମଲ୍ଲ ଆରମ୍ଭ କରିଥିବା ବନ୍ଦୋବସ୍ତ କାର୍ଯ୍ୟ ସମାପ୍ତ କରିଥିଲେ । ଏଥି ସହିତ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳକୁ ନିଜ ଅଧୀନରେ ରଖି ଶାନ୍ତି ଶୃଙ୍ଖଳା ରକ୍ଷା ନିମନ୍ତେ କେତୋଟି ଥାନା ନିର୍ମାଣ କରିଥିଲେ । ତନ୍ମଧ୍ୟରୁ ପିପିଲି ଥାନା ଅନ୍ୟତମ । ସାମରିକ ଦୃଷ୍ଟି କୋଣରୁ ପିପିଲିର ଗୁରୁତ୍ୱ ଉପଲବ୍ଧି କରି ସେ ସେଠାରେ ମୋଗଲ ସେନାଙ୍କର ଛାଉଣୀ ମଧ୍ୟ ପ୍ରତିଷ୍ଠା କରିଥିଲେ । ଏହାକୁ ପିପିଲି ନଥର ବୋଲି କୁହାଯାଉଥିଲା । ଅବଶ୍ୟ ଇକ୍‌ବାଲ-ଇ-ଜାହାଙ୍ଗୀର ପୁସ୍ତକରେ ଲେଖା ଯାଇଛି ଯେ, ପିପିଲି ଓଡ଼ିଶାରେ ମୋଗଲମାନଙ୍କର ରାଜଧାନୀ ଥିଲା । ମାତ୍ର ତାହା ସତ୍ୟ ନୁହେଁ । ସେତେବେଳେ କଟକ ଥିଲା ସେମାନଙ୍କର ରାଜଧାନୀ, କିନ୍ତୁ ପିପିଲି ସେନା ଛାଉଣୀ ଥିଲା ସେମାନଙ୍କର ସର୍ବ ପ୍ରଧାନ ଛାଉଣୀ । ଏହାର ପ୍ରତିଷ୍ଠା ସମ୍ଭବତଃ ୧୫୯୩ ମସିହାର ଘଟଣା ।

ପରେ ପରେ ରାମଚନ୍ଦ୍ରଦେବଙ୍କ କ୍ଷମତାର ଅବସାନ ଘଟାଇବା ପାଇଁ ରାଜା ମାନସିଂ ୧୫୯୩ ଖ୍ରୀଷ୍ଟାବ୍ଦରେ ନିଜର ପୁତ୍ର ଜଗତ ସିଂହଙ୍କ ଅଧିନାୟକତ୍ୱରେ ଏକ ସେନା ବାହିନୀ ଖୋର୍ଦ୍ଧା ଅଭିମୁଖେ ପ୍ରେରଣ କରିଥିଲେ । ସେମାନେ ପିପିଲିଠାରେ ଅବସ୍ଥିତ ସେନା ଛାଉଣୀରୁ ଯାତ୍ରା ଆରମ୍ଭ କରିଥିଲେ । ଏଥିରୁ ସୂଚିତ ହୁଏ ଯେ, ପିପିଲିସ୍ଥିତ ସେନା ଛାଉଣୀଟି ଥିଲା ମୋଗଲମାନଙ୍କର ପ୍ରଧାନ ସାମରିକ ଘାଟୀ । ସେ ଯାହାହେଉ, ଜଗତ ସିଂହ ପ୍ରଥମେ ଡ଼େଲାଙ୍ଗ ଅଞ୍ଚଳରେ ଥିବା ରାମଚନ୍ଦ୍ର ଦେବଙ୍କର କେତୋଟି ଗଡ଼ ଅଧିକାର କରିଥିବାର ଜଣାଯାଏ । ସେଗୁଡ଼ିକ ଥିଲା ଘୋରଡ଼ିହା, ଭୂଇଁମୂଳ ଗଡ଼, ସହଜପାରି କଟକ ଓ କାଳୁପଡ଼ା । ସେହିପରି ଛଟଣୀ ନିକଟସ୍ଥ ଅନ୍ୟ ଦୁଇଟି ଗଡ଼ ମଧ୍ୟ ତାଙ୍କର ଅଧୀନସ୍ଥ ହୋଇଥିଲା । ତାହାଥିଲା ଅରାଗଡ଼ ଓ କାହନାନ (ନିଜଗଡ଼ କୁରୁକି) । ରାଜା ମାନସିଂହଙ୍କର ଖୋର୍ଦ୍ଧା ଆକ୍ରମଣକୁ ମୋଗଲ ସମ୍ରାଟ ଆକବର ଘୋର ନିନ୍ଦା କରି ଏଥିରୁ କ୍ଷାନ୍ତ ହେବା ପାଇଁ ତାଙ୍କ ନିକଟକୁ ସନ୍ଦେଶ ପ୍ରେରଣ କରିଥିଲେ । ତାହା ମାନିନେଇ ମାନସିଂହ ଖୋର୍ଦ୍ଧା ଆକ୍ରମଣରୁ ନିବୃତ୍ତ ହେବା ସଂଗେ ସଂଗେ ଭବିଷ୍ୟତରେ ସେ ଦିଗରେ ମନ ବଳାଇ ନଥିଲେ ।

ମାଦଳା ପାଞ୍ଜିର ଏକ ବିବରଣୀରୁ ଜଣାଯାଏ ଯେ, ରାଜା ମାନସିଂହ ମୁକୁନ୍ଦଦେବ ହରିଚନ୍ଦନଙ୍କ ରାଜ ପରିବାରର ଏକ କଳହ ସମାଧାନ କରିବା ପାଇଁ ପୁରୀ ଗମନ କରିଥିଲେ । ସେ ମଧ୍ୟ କଟକରୁ ବାହାରି କାଠଯୋଡ଼ି ଅତିକ୍ରମ

Digitized by srujanika@gmail.com

କରି ବାଲିଅନ୍ତା, ବାଳକାଟି ଓ ପିପିଲି ଦେଇ ପୁରୀ ଯାଉଥିଲେ। ସେ ପିପିଲିଠାରେ ଗୋଟିଏ ଦିନ ରହିଥିବାର ଜଣାଯାଏ। ଏହି କଳହଟି ଉପୁଜି ଥିଲା ମୁକୁନ୍ଦଦେବଙ୍କ ଦୁଇ ପୁତ୍ର ରାମଚନ୍ଦ୍ର ରାୟ ଓ ଚୈନି ଭ୍ରମରବରଙ୍କ ମଧ୍ୟରେ ଖୋର୍ଦ୍ଧା ଗାଦି ଉପରେ ଅଧିକାର ସାବ୍ୟସ୍ତ ପାଇଁ। ରାଜା ମାନସିଂହ ଏହାର ସମାଧାନ ନିମନ୍ତେ ସେମାନଙ୍କ ସହିତ ପୁରୀ ଯାଇଥିଲେ। ସେ ଜଗନ୍ନାଥ ମନ୍ଦିରରେ ବିମଳାଙ୍କ ପ୍ରସାଦ ଛୁଆଁଇ ତାର ଏକ ସନ୍ତୋଷଜନକ ସମାଧାନ କରିଥିଲେ।

ରାଜା ମାନସିଂହଙ୍କ ସମୟରେ ମୋଗଲ ବନ୍ଦୀ ଶବ୍ଦଟି ଉଦ୍ଭବ ହୋଇଥିଲା। "ମୋଗଲବନ୍ଦୀ" ଏକ ହିନ୍ଦୀ ଶବ୍ଦ। ମୋଗଲ ଶାସନ ସହିତ ବନ୍ଦୀ ବା ବନ୍ଧା ହୋଇଥିବା ଅଞ୍ଚଳକୁ କୁହାଗଲା ମୋଗଲବନ୍ଦୀ। ଏହା ମୁଖ୍ୟତଃ ମୋଗଲମାନଙ୍କର ପ୍ରତ୍ୟକ୍ଷ ଶାସନାଧୀନ ଥିବା କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳକୁ ବୁଝାଉଥିଲା। ଏତଦ୍ ବ୍ୟତୀତ ଅନ୍ୟ ଅଞ୍ଚଳକୁ କୁହାଗଲା ଗଡ଼ଜାତ। ତଦନୁଯାୟୀ ମାନସିଂହ ମୋଗଲବନ୍ଦୀ ଅଞ୍ଚଳର ବନ୍ଦୋବସ୍ତ କରାଇ ଥିଲେ।

ଇତି ମଧ୍ୟରେ ଖୋର୍ଦ୍ଧା ରାଜା ରାମଚନ୍ଦ୍ରଦେବ ଉପଲବ୍ଧି କରି ପାରିଥିଲେ ଯେ, ତାଙ୍କ ଗଡ଼ ଉପରେ ମୋଗଲମାନଙ୍କର ଆକ୍ରମଣର ଆଶଙ୍କା ରହିଛି। ସେମାନେ ମଧ୍ୟ ପୁରୀ ଯାଇ ଜଗନ୍ନାଥ ମନ୍ଦିର ଆକ୍ରମଣର ଆଶଙ୍କାକୁ ଏଡ଼ାଇ ଦିଆ ଯାଇ ନ ପାରେ। ନିଜର ଗଡ଼ ଓ ପୁରୀ ଆକ୍ରମଣର ପ୍ରତିରୋଧ ପାଇଁ ସେ ଶିଶୁପାଳଗଡ଼ର ଆଖ ପାଖରେ କେତୋଟି ଛୋଟ ଛୋଟ ଦୁର୍ଗ ନିର୍ମାଣ କରିଥିଲେ। ତନ୍ମଧ୍ୟରୁ କେତୋଟି ଅଧୁନା ଭୁବନେଶ୍ୱର ଅଞ୍ଚଳରେ ଅବସ୍ଥିତ ଥିବାର ଜଣାଯାଏ। ଝାରପଡ଼ା, ବରଗଡ଼, ନୂଆପଲ୍ଲୀ କପିଳ ପ୍ରସାଦ, ଡୁମଡୁମା ଓ ଧଉଳି ଗଡ଼ର ନାମ ଉଲ୍ଲେଖ ଯୋଗ୍ୟ। ସେ ରଥୀପୁର ଓ ପିପିଲିଠାରେ ମଧ୍ୟ ଗଡ଼ ନିର୍ମାଣ କରିଥିଲେ। ସାମରିକ ଗୁରୁତ୍ୱ ଦୃଷ୍ଟିରୁ ବିଚାର କରି ପିପିଲିଠାରେ ସେ ଅପେକ୍ଷାକୃତ ଏକ ବଡ଼ ଦୁର୍ଗ ନିର୍ମାଣ କରିଥିଲେ। ତା'ର ଭଗ୍ନାବଶେଷ ଏଠାରେ ଏବେ ପରିଦୃଷ୍ଟ ହେଉ ନଥିଲେ ମଧ୍ୟ ଭୁବନେଶ୍ୱର ପୁରୀ ରାସ୍ତାର ପିପିଲି ବଜାରଠାରୁ କିଛି ଦୂରରେ ବାମପଟେ ଏକ କୁଦ ଦେଖାଯାଏ। ତାକୁ ଏବେ ଲୋକମାନେ ନଅର କୁଦ କହି ଥାଆନ୍ତି। ଏହା ବର୍ତ୍ତମାନ ଚୌଧୁରୀ ନଟବର ସାହୁଙ୍କ ବଗିଚାର ଏକ ଅଂଶ ବିଶେଷ। ତଥ୍ୟ ସଂଗ୍ରହ ଅବକାଶରେ ମୁଁ ଅନ୍ୟମାନଙ୍କ ସହ ଏହି ଅଞ୍ଚଳ ପରିଦର୍ଶନ କରି ଏକ ଗଭୀର ପୁଷ୍କରିଣୀ ଦେଖିବାକୁ ପାଇଥିଲି। ଉକ୍ତ ପୁଷ୍କରିଣୀ ଖୋଦନ ସମୟରେ ବହୁ ପରିମାଣର

Digitized by srujanika@gmail.com

ବଡ଼ ବଡ଼ ପଥର ଓ ଖପରା ମିଳିଥିବା ବିଷୟ ଶ୍ରୀ ସାହୁଙ୍କ ମୁଖରୁ ଶୁଣିବାକୁ ମିଳିଥିଲା । ଚାନ୍ଦିନୀ ଥାଇ ୫-୬ ଟି କୂଦ ମଧ୍ୟ ସେହିଠାରେ ପରିଲକ୍ଷିତ ହୋଇଥିଲା ବୋଲି ସେ କହିଥିଲେ । ତେଣୁ ସେହିଠାରେ ଗଡ଼ଟି ପ୍ରତିଷ୍ଠିତ ହୋଇଥିବା ସମ୍ଭାବ୍ୟ । କାରଣ ପୂର୍ବରୁ ରାଜାଙ୍କର ଗଡ଼କୁ ନଅର ବୋଲି କୁହାଯାଉ ଥିଲା । ଏହି ଗଡ଼ ସେଠାରେ ଥିବାର ଅନ୍ୟ କେତୋଟି ପ୍ରମାଣ ମଧ୍ୟ ମିଳିଛି । ତାକୁ ସଂଲଗ୍ନ କରି ଏକ ସ୍ଥାନକୁ ଘୋଡ଼ାହତା ବୋଲି କୁହାଯାଏ । ରାଜାଙ୍କ ଗଡ଼ରେ ଅବସ୍ଥାପିତ ଅଶ୍ୱାରୋହୀ ସେନାଙ୍କର ଘୋଡ଼ା ପାଇଁ ସେଠାରେ ନିବାସସ୍ଥଳୀ ଥିବାର ଅନୁମାନ କରାଯାଏ । ବର୍ତ୍ତମାନ ସେଠାରେ ପିପିଲି ଡ଼ାକ୍ତରଖାନାଟି ବିଦ୍ୟମାନ । ପିପିଲି କଲେଜ ନିକଟସ୍ଥ ଏକ ସାହିକୁ ଘାସିଆସାହି କୁହାଯାଏ । ସମ୍ଭବତଃ, ଖୋର୍ଦ୍ଧା ରାଜା ରାମଚନ୍ଦ୍ରଦେବଙ୍କ ସୈନ୍ୟ ବାହିନୀର ଘୋଡ଼ାମାନଙ୍କୁ ଘାସ ଯୋଗାଇବା ପାଇଁ ସେଠାରେ ଘାସିଆମାନେ ରହୁଥିଲେ । ସେ ଯାହା ହେଉ, ରାମଚନ୍ଦ୍ରଦେବ ତାଙ୍କ ରାଜ୍ୟ ମଧ୍ୟରେ ଏହିପରି ଛୋଟ ଛୋଟ ୭୧ଟି ଦୁର୍ଗ ନିର୍ମାଣ କରିଥିବାର ଜଣାଯାଏ । ଖୋର୍ଦ୍ଧା ରାଜାଙ୍କର ରାଜତ୍ୱ ଅନ୍ୟ କେତୋଟି ଦୃଷ୍ଟି କୋଣରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । କୌଣସି ଏକ କାରଣରୁ ଜଗନ୍ନାଥ ମନ୍ଦିରରେ ମହାପ୍ରସାଦ ବନ୍ଦ ହୋଇ ଯାଇଥିବାରୁ ରାମଚନ୍ଦ୍ରଦେବ ଏହାର ପୁନଃ ପ୍ରଚଳନ କରିଥିଲେ । ସେହିପରି ପ୍ରାୟ ୮ ବର୍ଷ ଧରି ବନ୍ଦ ହୋଇ ଯାଇଥିବା ଭାରତ ପ୍ରସିଦ୍ଧ ରଥଯାତ୍ରାକୁ ସେ ପୁନରାୟ ଆରମ୍ଭ କରିଥିଲେ ।(୪)। ଏ ସବୁର କାରଣ ଉଲ୍ଲେଖ କରାଯାଇ ନଥିଲେ ମଧ୍ୟ ସମ୍ଭବତଃ କଳାପାହାଡ଼ର ପୁରୀ ଜଗନ୍ନାଥ ମନ୍ଦିର ଆକ୍ରମଣ ପରେ ଏହା ବନ୍ଦ ହୋଇ ପାରିଥାଏ ।

ଏହିପରି ଭାବେ ୩୦ ବର୍ଷ ରାଜୁତି କରିବା ପରେ ରାମଚନ୍ଦ୍ର ଦେବ ୧୬୦୦ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ବରଣ କରିଥିଲେ । ତାପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଖୋର୍ଦ୍ଧା ସିଂହାସନ ଆରୋହଣ କରି ୧୬୨୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜୁତି କରିଥିଲେ । ସେହିପରି ଦିଲ୍ଲୀସ୍ଥିତ ମୋଗଲ ଦରବାରରେ ମଧ୍ୟ ପଟ୍ଟ ପରିବର୍ତ୍ତନ ହୋଇଥିଲା । ୧୬୦୫ ଖ୍ରୀଷ୍ଟାବ୍ଦରେ ଆକବର ମୃତ୍ୟୁ ବରଣ କରିଥିଲେ । ତାଙ୍କ ପରେ ତାଙ୍କ ପୁତ୍ର ଜାହାଙ୍ଗୀର ମୋଗଲ ସିଂହାସନ ଅଳଂକୃତ କରିଥିଲେ । ତାଙ୍କ ରାଜତ୍ୱ ଓଡ଼ିଶା ଇତିହାସରେ ଏକ ଘଟଣା ବହୁଳ ଅଧ୍ୟାୟ । ଏହି ଇତିହାସ ସହିତ ପିପିଲି ମଧ୍ୟ ଜଡ଼ିତ ହୋଇଥିଲା । ଏ ପର୍ଯ୍ୟନ୍ତ ଓଡ଼ିଶା ମୋଗଲମାନଙ୍କର ଏକ ସ୍ୱତନ୍ତ୍ର ପ୍ରଦେଶ ବା ସୁବା ହୋଇ ନଥିଲା । ବଙ୍ଗଳା ସୁବା ସହ ଏହା

---

(୪) କେଦାରନାଥ ମହାପାତ୍ର : ଖୋର୍ଦ୍ଧା ଇତିହାସ

Digitized by srujanika@gmail.com

ମିଶି କରି ରହିଥିଲା। ଜାହାଙ୍ଗୀରଙ୍କ ରାଜତ୍ୱରେ ୧୬୦୭ ଖ୍ରୀଷ୍ଟାବ୍ଦରେ ପ୍ରଥମ ଥର ପାଇଁ ଓଡ଼ିଶା ମୋଗଲମାନଙ୍କର ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇଥିଲା। ପ୍ରଥମ ସୁବେଦାର ବା ପ୍ରାଦେଶିକ ଶାସନ କର୍ତ୍ତା ଭାବେ ହାସିମ୍ ଖାଁ ସେହି ୧୬୦୭ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୨୬ ତାରିଖ ଦିନ ଯୋଗ ଦେଇ ବାରବାଟୀ ଦୁର୍ଗରେ ଅବସ୍ଥାନ କରିଥିଲେ।

ଏହି ହାସିମ୍ ଖାଁଙ୍କ ସମୟରେ କଟକରେ ଅବସ୍ଥାପିତ ଜଣେ ରାଜପୁତ କର୍ମଚାରୀ ପୁରୀରେ ଜଗନ୍ନାଥ ମନ୍ଦିର ଆକ୍ରମଣ କରିବା ସଂଗେ ସଂଗେ ପୁରୁଷୋତ୍ତମ ଦେବଙ୍କର ଖୋର୍ଦ୍ଧା ରାଜ୍ୟ ଆକ୍ରମଣ କରିଥିବାର ଦେଖାଯାଇଥିଲା। ସେ ହେଉଛନ୍ତି କଟକର ଜଣେ ଜାଗିରଦାର କେଶୋଦାସ ମାରୁ। ସେ ଥିଲେ ଜଣେ ଦୁର୍ଦ୍ଧର୍ଷ ପ୍ରକୃତିର ଲୋକ। ତାହା ହୋଇ ନଥିଲେ ହିନ୍ଦୁ ହୋଇ ମଧ ସେ ଜଗନ୍ନାଥ ମନ୍ଦିର ଅକ୍ରମଣ କରିବା ପାଇଁ ଆଗଭର ହୋଇ ନଥାନ୍ତେ। ଏଥିପାଇଁ ସେ ଅତ୍ୟନ୍ତ ହୀନ ପନ୍ଥାର ଆଶ୍ରୟ ନେଇଥିଲେ। ଜଣେ ତୀର୍ଥଯାତ୍ରୀର ଛଳନା କରି ସେ ଜଗନ୍ନାଥ ମନ୍ଦିରକୁ ପ୍ରବେଶ କରିଥିଲେ। ଏଥିପାଇଁ ସେ କେବଳ ମାତ୍ର କେତେ ଜଣ ରାଜପୁତ ଅନୁଚରଙ୍କୁ ସାଥିରେ ନେଇଥିଲେ ଯେପରି କି ବ୍ରାହ୍ମଣ ପୁରୋହିତମାନେ ତାଙ୍କୁ ତୀର୍ଥଯାତ୍ରୀ ଭାବେ ଗ୍ରହଣ କରିବେ ଓ ସେମାନେ ବିନା ପ୍ରତିରୋଧରେ ମନ୍ଦିର ମଧ୍ୟରେ ପ୍ରବେଶ କରିପାରିବେ। ମନ୍ଦିର ଭିତରକୁ ପ୍ରବେଶ କରି ସେମାନେ ମନ୍ଦିରରେ ଗଚ୍ଛିତ ପ୍ରାୟ ଦୁଇକୋଟି ଟଙ୍କାର ସମ୍ପତ୍ତି ନେଇ ଯାଇଥିଲେ। ଜଣେ ହିନ୍ଦୁ ହୋଇ ସେ ଯେ ସ୍ୱତଃ ପ୍ରବୃତ୍ତ ଭାବେ ଏପରି ଏକ ହୀନ ପନ୍ଥାର ଆଶ୍ରୟ ନେବେ ଏହା ଥିଲା ସମସ୍ତଙ୍କର କଳ୍ପନାର ବାହାରେ। ସମୟ ସମୟରେ କ୍ଷମତା ଓ ଅର୍ଥ ଲୋଭରେ ମଣିଷ ତାର ସବୁ ସୂକ୍ଷ୍ମ କୋମଳ ପ୍ରବୃତ୍ତିକୁ ଜଳାଞ୍ଜଳି ଦେଇ ପାଷାଣ୍ଡର ଭୂମିକା ଗ୍ରହଣ କରିଥାଏ ଓ କେଶୋଦାସ ମାରୁ ଥିଲେ ତା'ର ଏକ ଜ୍ୱଳନ୍ତ ଉଦାହରଣ। ସେ ଯାହା ହେଉ, କେଶୋଦାସ ମାରୁ ମଧ୍ୟ ଖୋର୍ଦ୍ଧା ଆକ୍ରମଣ କରିଥିଲେ। ଏଥର ଅଧିକ ସଂଖ୍ୟକ ମୋଗଲ ସୈନ୍ୟ ସେ ନେଇଥିଲେ ପିପିଲି ସେନା ଛାଉଣୀରୁ। ପ୍ରବଳ ପ୍ରତିରୋଧ ସତ୍ତ୍ୱେ ଖୋର୍ଦ୍ଧାରେ ସେ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ। ଏଥିପାଇଁ ମୋଗଲ ସୁବେଦାର ହାସିମ୍ ଖାଁଙ୍କର ଅପାରଗତା ଦାୟୀ ବୋଲି ଦର୍ଶାଇ ତାଙ୍କୁ ଦିଲ୍ଲୀକୁ ପ୍ରତ୍ୟାହାର କରି ନିଆଯାଇଥିଲା। ତାଙ୍କ ସ୍ଥାନରେ ପ୍ରଖ୍ୟାତ ସେନାପତି ରାଜା ତୋଡ଼ରମଲ୍ଲଙ୍କ ପୁତ୍ର କଲ୍ୟାଣ ସିଂହଙ୍କୁ ୧୬୧୧ ଖ୍ରୀଷ୍ଟାବ୍ଦରେ ସୁବେଦାର ଭାବେ ନିଯୁକ୍ତି ଦିଆଯାଇଥିଲା। ସେ ତାଙ୍କର ପୂର୍ବବର୍ତ୍ତୀ ସୁବେଦାର ହାସିମ ଖାଁ ଓ ଜାୟଗିରଦାର କେଶୋଦାସଙ୍କର

Digitized by srujanika@gmail.com

ପଦାଙ୍କ ଅନୁସରଣ କରି ଖୋର୍ଦ୍ଧା ଆକ୍ରମଣ କରିଥିଲେ ସେହି ୧୬୧୧ ଖ୍ରୀଷ୍ଟାବ୍ଦରେ। ମାଦଳାପାଞ୍ଜିର ବର୍ଣ୍ଣନା ଅନୁଯାୟୀ କଲ୍ୟାଣ ସିଂହ ବିଶ୍ୱାସଘାତକତା କରି ୧୬ ଜଣ ଓଡ଼ିଆ ସେନାପତିଙ୍କୁ ହତ୍ୟା କରିଥିଲେ। ତେଣୁ ଓଡ଼ିଆ ପାଇକ ସେନା ଉତ୍‌କ୍ଷିପ୍ତ ହୋଇ ମୋଗଲ ବାହିନୀ ଉପରେ ପ୍ରଚଣ୍ଡ ଆକ୍ରମଣ କରିଥିଲେ। କଲ୍ୟାଣ ସିଂହ ପ୍ରାଣ ବିକଳରେ କଟକ ଆଡ଼କୁ ପଳାୟନ କରୁଥିବା ସମୟରେ ଓଡ଼ିଆ ପାଇକ ପିପିଲି ନିକଟବର୍ତ୍ତୀ ବାଗସରପୁର ଠାରେ ତାଙ୍କୁ ହତ୍ୟା କରିଥିଲେ। ମାତ୍ର ଜାହାଙ୍ଗୀରଙ୍କ ଆତ୍ମଚରିତ 'ତୁଜକି-ଇ-ଜାହାଙ୍ଗୀର' ପୁସ୍ତକରେ ବର୍ଣ୍ଣିତ ଘଟଣାକୁ ଗ୍ରହଣ କଲେ ଏହା ସତ୍ୟ ନୁହେଁ ବୋଲି ଜଣାଯାଏ। ଉକ୍ତ ପୁସ୍ତକରେ ଉଲ୍ଲେଖ କରାଯାଇଛି ଯେ, ରାଜା କଲ୍ୟାଣ ସିଂହ ୧୬୧୭ ଖ୍ରୀଷ୍ଟାବ୍ଦରେ ମୋଗଲ ଦରବାରକୁ ପ୍ରତ୍ୟାବର୍ତ୍ତନ କରିଥିଲେ। ମାତ୍ର ବାଗସରପୁରଠାରେ ଘଟିଥିବା ହତ୍ୟାକାଣ୍ଡଟି ମଧ୍ୟ ଠିକ୍। ସେଠାରେ ମୋଗଲ ସେନାବାହିନୀ ବିପର୍ଯ୍ୟସ୍ତ ହୋଇଥିବା ଘଟଣାଟି ମଧ୍ୟ ଠିକ୍। ହୁଏତ ସେମାନେ ଅନ୍ୟ କେହି ରାଜପୁତ ସେନାଧକ୍ଷଙ୍କୁ ରାଜା କଲ୍ୟାଣ ସିଂହ ଭାବି ହତ୍ୟା କରିଥିଲେ।

## ସାଲବେଗ ଉପାଖ୍ୟାନ

ଏହି ପୁରୁଷୋତ୍ତମ ଦେବଙ୍କ ରାଜତ୍ୱରେ ଦାଣ୍ଡମୁକୁନ୍ଦପୁର ଠାରେ ଏକ ଚାଞ୍ଚଲ୍ୟକର ଘଟଣା ସଂଘଟିତ ହୋଇଥିଲା। ତାହାର ଏକ ବର୍ଣ୍ଣନା ରାମ ଦାସଙ୍କ ବିରଚିତ ଦାର୍ଢ୍ୟତା ଭକ୍ତିରେ ଉଲ୍ଲେଖ କରାଯାଇଛି। ଏହାର ଏକ ବର୍ଣ୍ଣନା କେଦାର ନାଥ ମହାପାତ୍ର ଖୋର୍ଦ୍ଧା ଇତିହାସ ପୁସ୍ତକରେ ଦେଇଛନ୍ତି। ଜାହାଙ୍ଗୀରଙ୍କ ରାଜତ୍ୱ ଆରମ୍ଭରେ ସେ ତାଙ୍କର ଜନୈକ ପ୍ରିୟ ପାତ୍ର ଜାହାଙ୍ଗୀର କୁଲିଖାଁଙ୍କୁ ଚାରିହଜାର ମନସବାଦାର ପଦ ଦେଇ ବିହାରର ସୁବେଦାର ରୂପେ ନିଯୁକ୍ତି ଦେଇଥିଲେ। ତାଙ୍କର ଅନ୍ୟନାମ ଥିଲା ଲାଲ୍‌ବେଗ୍। ମାତ୍ର ୧୬୦୭ ଖ୍ରୀଷ୍ଟାବ୍ଦରେ ସେ ତାଙ୍କୁ କଟକ ପ୍ରେରଣ କରିଥିଲେ ଏକ ଗୁରୁତ୍ୱ ପୂର୍ଣ୍ଣ ପଦବୀ ଦେଇ। ସେ ପହଞ୍ଚିବା ପରେ ପରେ ମୋଗଲ ସେନାବାହିନୀ ସହ ଯାଇଥିଲେ ପୁରୀ ଆକ୍ରମଣ କରିବା ପାଇଁ। ପ୍ରତ୍ୟାବର୍ତ୍ତନ ପଥରେ ଦାଣ୍ଡମୁକୁନ୍ଦପୁରସ୍ଥିତ ପୁଷ୍କରିଣୀ କୂଳରେ ଏକ ଅଳ୍ପବୟସ୍କା ଅନିନ୍ଦ୍ୟ ସୁନ୍ଦରୀ ଅପରୂପ ଯୌବନ ସମ୍ପନ୍ନା ଯୁବତୀ ବିଧବା ବ୍ରାହ୍ମଣୀ ସ୍ନାନ କରୁଥିବାର ଦେଖି ସେ ତାଙ୍କୁ ବଳପୂର୍ବକ ଅପହରଣ କରି କଟକ ନେଇ ଆସିଥିଲେ। ଉକ୍ତ ପୁଷ୍କରିଣୀର ପଶ୍ଚାତ ଭାଗରେ ଅବସ୍ଥିତ ପୁଟିଆସାହି ଗ୍ରାମରେ ତାଙ୍କର ଘର ବୋଲି ଜନଶ୍ରୁତି ରହିଛି। ଏବେ ମଧ୍ୟ ସେହି ସାହିଟି ବିରାଜମାନ। ଏହି ଘଟଣା ପରେ ୧୬୦୮ ଖ୍ରୀଷ୍ଟାବ୍ଦର ଶେଷ ଭାଗକୁ ବ୍ରାହ୍ମଣୀଙ୍କ ଗର୍ଭରୁ ଏକ

Digitized by srujanika@gmail.com

ପୁତ୍ର ସନ୍ତାନ ଜନ୍ମ ଗ୍ରହଣ କରିଥିଲା। ତାର ନାମ ରଖାଯାଇଥିଲା ସାଲବେଗ।(୫)। ପୁତ୍ର ଜନ୍ମ ହେବାର କିଛିଦିନ ପରେ ଲାଲବେଗ ମୃତ୍ୟୁ ବରଣ କରିଥିଲେ।

୧୬୩୩ ଖ୍ରୀଷ୍ଟାବ୍ଦରେ ଲାଲବାଗ୍ ପ୍ରାସାଦ ନିର୍ମିତ ହୋଇଥିଲା। ସାଲବେଗ ଜଣେ ଉଚ୍ଚ କ୍ଷମତା ସଂପନ୍ନ ସ୍ୱର୍ଗତ ମୋଗଲ ପ୍ରଶାସକଙ୍କର ପୁତ୍ର ହୋଇଥିବାରୁ ତାଙ୍କୁ ଲାଲବାଗ ଅଞ୍ଚଳରେ କୌଣସି ଏକ ଦାୟିତ୍ୱପୂର୍ଣ୍ଣ ଚାକିରୀ ମିଳିଥିବ। ଦାର୍ଢ୍ୟତାଭକ୍ତି ପୁସ୍ତକ ରଚନା ବେଳକୁ ଲାଲବାଗ ଅଞ୍ଚଳର ଅଧିବାସୀ ରୂପେ ସେ ଖ୍ୟାତି ଲାଭ କରିଥିବେ। ତାଙ୍କ ପିତା ଜଣେ ମୁସଲମାନ ହୋଇଥିବାରୁ ସେ ଉର୍ଦ୍ଦୁ ଓ ହିନ୍ଦୀ ନିଶ୍ଚୟ ଶିକ୍ଷା କରିଥିବେ। ସେହିପରି ମାତା ଜଣେ ଉତ୍କଳୀୟା ବ୍ରାହ୍ମଣୀ ହୋଇ କଟକରେ ବସତି ସ୍ଥାପନ କରିଥିବାରୁ ସେ ଓଡ଼ିଆ ଭାଷାରେ ଯଥେଷ୍ଟ ପାଣ୍ଡିତ୍ୟ ଲାଭ କରିଥିବେ। ଦାର୍ଢ୍ୟତାଭକ୍ତିରେ ପ୍ରଦତ୍ତ ବର୍ଣ୍ଣନାନୁଯାୟୀ ତାଙ୍କ ଶରୀରରେ ଘା' ହୋଇଯିବାରୁ ତାଙ୍କ ମାତା ବୃନ୍ଦାବନ ବିହାରୀ କୃଷ୍ଣ ଓ ନୀଳାଚଳ ବିହାରୀ ଜଗନ୍ନାଥଙ୍କୁ ଆରାଧନା କରିବା ପାଇଁ ପରାମର୍ଶ ଦେଇଥିଲେ। ତାହା କରିବାରୁ ସେ ରୋଗ ମୁକ୍ତ ହୋଇଥିଲେ। ସୁଦର୍ଶନ ଦାସଙ୍କ ରଚିତ ଯଶୋବନ୍ତ ଦାସଙ୍କ 'ଚଉରାଶି ଆଜ୍ଞା' ଗ୍ରନ୍ଥରେ ସାଲବେଗ ଯଶୋବନ୍ତ ଦାସଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିବାର ଉଲ୍ଲେଖ ଅଛି। ମାତ୍ର ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥ 'ରସିକ ମଙ୍ଗଳ'ରେ ସାଲବେଗ ଶ୍ରୀ ଶ୍ୟାମାନନ୍ଦଙ୍କ ଶିଷ୍ୟ ଥିଲେ ବୋଲି ବର୍ଣ୍ଣନା ରହିଛି। ଉକ୍ତ ଗ୍ରନ୍ଥରେ ମଧ୍ୟ ବର୍ଣ୍ଣନା କରାଯାଇଛି ଯେ ପ୍ରଭୁ ଶ୍ୟାମାନନ୍ଦ ୧୫୫୨ ଶକ ବା ୧୬୩୦ ଖ୍ରୀଷ୍ଟାବ୍ଦରେ ଇହଲୀଳା ସମ୍ବରଣ କରିଥିଲେ ଓ ସେତେବେଳକୁ ସାଲବେଗଙ୍କ ବୟସ ୨୨ ବର୍ଷ ହୋଇଥିଲା। ଏହାର ଅଳ୍ପଦିନ ପୂର୍ବରୁ ସେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ। ଏହାପରେ ସେ ତାଙ୍କର ଭଜନଗୁଡ଼ିକ ରଚନା କରିଥିବେ।(୬)। ଯବନ ସାଲବେଗଙ୍କ ସମ୍ପର୍କରେ ଦାର୍ଢ୍ୟତା ଭକ୍ତିରେ ଲାଲବେଗ- ସାଲବେଗ ଶିରୋନାମାରେ ଲିଖିତ ପଦ୍ୟାବଳୀରୁ କେତେକାଂଶ ଏଠାରେ ଉଦ୍ଧୃତ କରାଗଲା।

କଟକ ନାମ ଯେ ସହର
ଲାଲବାଗରେ ତା'ର ଘର
ମୁଗଲ ନାମେ ଲାଲବେଗ

(୫) କେଦାରନାଥ ମହାପାତ୍ର : ଖୋର୍ଦ୍ଧା ଇତିହାସ
(୬) ଏଜନ

Digitized by srujanika@gmail.com

ତାହାର ପୁତ୍ର ସାଲବେଗ
ସେ ଲାଲବେଗ ଅତି ଦୁଷ୍ଟ
ଖଳ ପ୍ରପଞ୍ଚ ବୁଦ୍ଧି ନଷ୍ଟ
ଅନେକ ସୈନ୍ୟ ଠୁଳକଲା,
ଓଡ଼ିଶା ଯୁଝିବାକୁ ଗଲା ।
ଶ୍ରୀ ଗଜପତି ଦଣ୍ଡଧାରୀ,
ସଂଗତେ ଶତ୍ରୁପଣ କରି,
ତହିଁ ଏକ ବିଧବା ନାରୀ
ଯାଉଥିଲା ଯେ ସ୍ନାନ କରି
ଏକେ ବ୍ରାହ୍ମଣୀ ଦୁଜେ ଯୁବା
କେ କହିପାରେ ତାର ଶୋଭା,
ଅଂଜନୁ ବଳି କେଶ ଶୋଭା
ବାହୁ ଯୁଗଳ ଦିବ୍ୟ ଶୋଭା
ହୃଦୟ ଭାଗ ଅତି ଉଚ୍ଚ
ଶ୍ରୀଫଳ ଜିଣି ବେନି କୁଚ
ବସାଇ ଅଶ୍ୱର ଉପରେ
ସେ ନାରୀ ଦଇବ ସୁମରେ
ତା ନିଜ କୁଟୁମ୍ବ ସୁମରି
ବୋଇଲା ଦେବି ପ୍ରାଣ ହାରି
ତାହା ଦେଖିଣ ସେ ପଠାଣ
ସେ ନାରୀ ଚରଣ ଧରିଣ,
ଅନେକ ବିନୟୀ କହିଲା,
କୋଳେ ବସାଇ ଚୁମ୍ବ ଦେଲା
ଅନେକ ଅଳଙ୍କାର ମାନ
ଅଙ୍ଗେ କଲାକ ମଣ୍ଡନ,
ସର୍ବାଙ୍ଗେ ଗନ୍ଧସାର ବୋଳି
ତା ସଂଗେ କଲା କାମ କେଳି
ଦଇବେ ଅବଳା ଶରୀର
ସଙ୍ଗହିଁ ସିନା ମୂଳ ତାର
ତା ଠାରୁ ରତି ସୁଖ ପାଇ

Digitized by srujanika@gmail.com

ରହିଲା ପତ୍ନୀ ପ୍ରାୟ ହୋଇ
ଏମନ୍ତେ କେତେ ଦିନ ଗଲା
ସେ ନାରୀ ପୁତ୍ର ପ୍ରସବିଲା
ପୁତ୍ରକୁ ଦେଖି ଲାଲବେଗ
ତା ନାମ ଦେଲା ସାଲବେଗ ।(୭)

ଯୁବାବସ୍ଥାରେ ସାଲବେଗ ଅଶ୍ୱ ଓ ଖଣ୍ଡାଚାଳନା ଶିକ୍ଷା କରିଥିଲେ । ଦିନେ ସେ ତାଙ୍କ ମାତାଙ୍କୁ ପ୍ରଶ୍ନ କରିଥିଲେ, ------

"ସେ ଯେ ପଠାଣ ତୁ ବ୍ରାହ୍ମଣୀ
କି ରୂପେ ତୁ ତା'ର ଘରଣୀ ?"

ତାଙ୍କ ମା ଉତ୍ତର ଦେଲେ,

"ଗ୍ରାମ ମଧ୍ୟେ ଯେ ଉତ୍ତମ
ଦାଣ୍ଡ ମୁକୁନ୍ଦପୁର ତା'ର ନାମ
ସେହି ଗ୍ରାମରେ ମୋ'ର ଘର
ନଥିଲେ ମୋ ଶାଶୁ ଶ୍ୱଶୁର
ତୋ ବାପ ଯୁଦ୍ଧେ ଯାଇଥିଲେ
ସଂଗେ ବହୁତ ସୈନ୍ୟ ଥିଲେ
ମୁଁ ଯାଇଥିଲି ସ୍ନାନ କରି
ତହୁଁ ଆଣିଲା ମୋତେ ଧରି ।"

* * * * * * *

ଇତି ମଧ୍ୟରେ ସାଲବେଗଙ୍କ ଶରୀରରେ କିଛି ଘା' ଦେଖା ଦେଇଥିଲା । ତେଣୁ ମାତା ତାଙ୍କୁ ଉପଦେଶ ଦେଇ କହିଥିଲେ,

"ମାତା ବୋଲଇ ପୁତ୍ର ଶୁଣ
ତୋ ମନେ ବିଶ୍ୱାସ କରିଣ
ଶ୍ରୀବୃନ୍ଦାବନ ଚନ୍ଦ୍ର ଭଜ
ସେ ଯେ ଅଶେଷ ଦେବରାଜ
ଏମନ୍ତ କହି ସେ ନନ୍ଦନ

---

(୭) ଧାର୍ମ୍ମିତାଲିକି : ଦ୍ୱିତୀୟ ଭାଗ, ପୃ.୨୧୫-୨୨୫

Digitized by srujanika@gmail.com

କୃଷ୍ଣ ଭଜନେ ଦେଲା ମନ
ମାତା ବୋଇଲା ରେ ତନୁଜ
ବିଶ୍ୱାସ ସିନା ମୂଳ ବୀଜ
ଦୃଢ଼େ ତୁ ଯେ ତାକୁ ଭଜିବୁ
ଦ୍ୱାଦଶ ଦିନେ ଭଲ ହେବୁ
ଏମନ୍ତ କହି ସେ ନନ୍ଦନ
କୃଷ୍ଣ ଭଜନେ ଦେଲା ମନ।''

* * * * * * *

''ବାଳ ମୁକୁନ୍ଦ ରୂପେ ହୋଇ
ବିଜୟ କଲେ, ଭାବଗ୍ରାହୀ
ବେଗେତୁ ଉଠରେ କୁମର
ଛାଡ଼ ସକଳ ଚିନ୍ତା ତୋର
ଧରି ଏ ବିଭୂତି ମୁଠାଏ
ଲଗାଇ ଦିଅ ତୋର ଘାଏ।''

ତାହା କରିବାରୁ ପ୍ରଭାତରୁ ଉଠି ସାଲବେଗ ଦେଖେତ ତା' ଦେହରେ ହେଲେ ତ ଘାଆ ନାହିଁ, କେବଳ ଚିହ୍ନ ମାତ୍ର ଅଛି।(୮)।

ତା'ପରେ ସାଲବେଗ ସନ୍ୟାସୀ ହୋଇ ପୁରୀ ଗଲେ ଓ ସେଠାରେ ଭଜନ ରଚନା କରିବାରେ ନିଜକୁ ନିମଜ୍ଜିତ କରିଦେଲେ।

ଖୋର୍ଦ୍ଧା ରାଜା ଗଜପତି ପୁରୁଷୋତ୍ତମଦେବ ପିପିଲି ଭୂଖଣ୍ଡର ଅନତିଦୂରରେ ନିଜ ନାମରେ ତିନୋଟି ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରିଥିଲେ। ସେଗୁଡ଼ିକ ଥିଲା ବୀରପୁରୁଷୋତ୍ତମ ପୁର, ଶ୍ରୀପୁରୁଷୋତ୍ତମପୁର ଓ ପ୍ରତାପପୁରୁଷୋତ୍ତମପୁର। ସେହି ଶାସନଗୁଡ଼ିକ ଏବେ ମଧ୍ୟ ବିଦ୍ୟମାନ ରହି ତାଙ୍କର ସ୍ମୃତିଚାରଣ କରୁଛି।

ପୁରୁଷୋତ୍ତମଦେବଙ୍କର ମୃତ୍ୟୁ ହୁଏ ୧୬୨୨ ଖ୍ରୀଷ୍ଟାବ୍ଦରେ। ତାଙ୍କପରେ ଖୋର୍ଦ୍ଧା ସିଂହାସନ ଅଳଙ୍କୃତ କରିଥିଲେ ଗଜପତି ନରସିଂହ ଦେବ। ତାଙ୍କରି ସମୟରେ (ଖ୍ରୀ. ୧୬୨୨-୧୬୪୭) ଭକ୍ତ କବି ସାଲବେଗ ଭଜନଗୁଡ଼ିକ ରଚନା କରିଥିବାର ଜଣାଯାଏ। ନରସିଂହଦେବ ମଧ୍ୟ ନିଜ ନାମରେ ଶାସନ

(୮) ଦାର୍ଢ୍ୟତାଭକ୍ତି : ଦ୍ୱିତୀୟ ଭାଗ, ପୃ.୨୧୫-୨୩୫

Digitized by srujanika@gmail.com

ପ୍ରତିଷ୍ଠା କରି ତା'ର ନାମ ରଖିଥିଲେ ବୀରନରସିଂହପୁର। ତାଙ୍କପରେ ତାଙ୍କର ବଡ଼ ଭାଇ ବଳଭଦ୍ରଦେବ (ଖ୍ରୀ.୧୬୪୭-୧୬୫୭) ଓ ତାଙ୍କପରେ ତାଙ୍କ ପୁତ୍ର ପ୍ରଥମ ମୁକୁନ୍ଦଦେବ ୧୬୫୭ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ସିଂହାସନରେ ଅଧିଷ୍ଠିତ ହୋଇ ୧୬୮୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ। ତାଙ୍କର ରାଜତ୍ୱ ଥିଲା ପିପିଲି-ଡେଲାଙ୍ଗ ଇତିହାସରେ ଏକ ଗୁରୁତ୍ୱ ପୂର୍ଣ୍ଣ ତଥା ଘଟଣା ବହୁଳ ଅଧ୍ୟାୟ। ସେତେବେଳେ ମୋଗଲ ସମ୍ରାଟ ଥାଆନ୍ତି ଆଉରଙ୍ଗଜେବ।

ଏହି ପ୍ରଥମ ମୁକୁନ୍ଦଦେବଙ୍କ ରାଜତ୍ୱରେ ଓଡ଼ିଶାରେ ମୋଗଲ ସୁବାଦାର ଖ୍ୟାନ୍-ଇ-ଦୁରାନ ୧୬୬୧ ମସିହା ଫେବୃୟାରୀ ୭ ତାରିଖରେ ଖୋର୍ଦ୍ଧା ଗଡ଼ ଆକ୍ରମଣ କରିବା ପାଇଁ କଟକରୁ ବାହାରି ପିପିଲି ଦେଇ ଖୋର୍ଦ୍ଧା ଯାଇଥିଲେ। ତାଙ୍କ ଗତି ପଥରେ ଅବସ୍ଥିତ ପିପିଲି- ଡେଲାଙ୍ଗ ଅଂଚଳର କରକହି (କାଳୁପଡ଼ା) ଓ ଖୁରଦିହା (ଘୋର ଡିହା) ଓ ସାହାଜିପୁର ସମେତ ୭ଟି ଦୁର୍ଗ ଅଧିକାର କରି ନେଇଥିଲେ।(୯)। ପରେ ପରେ ସେ ମୁକୁନ୍ଦଦେବଙ୍କ ସାନଭାଇ ଭ୍ରମରବରଙ୍କୁ ଖୋର୍ଦ୍ଧା ସିଂହାସନରେ ଅଧିଷ୍ଠିତ କରାଇଥିଲେ। ମାତ୍ର ୧ ବର୍ଷ ୭ ମାସ ରାଜା ହେବା ପରେ ମୁକୁନ୍ଦଦେବ ତାଙ୍କୁ ବିତାଡ଼ିତ କରି ପୁନର୍ବାର ଖୋର୍ଦ୍ଧା ସିଂହାସନ ଅଧିକାର କରିଥିଲେ। ଏହି ମୁକୁନ୍ଦଦେବଙ୍କ ରାଜତ୍ୱରେ ପିପିଲି ଠାରେ ଏକ ଚାଞ୍ଚଲ୍ୟକର ଓ ଅଲୌକିକ ଘଟଣା ସଂଘଟିତ ହୋଇଥିଲା।

ସେତେବେଳେ ମୋଗଲ ସୁବେଦାର ଥାଆନ୍ତି ଆବୁନାସର ଖାଁ। ସେ ପୂର୍ବ ସୁବେଦାରଙ୍କ ପରି ଜଗନ୍ନାଥ ମନ୍ଦିର ଆକ୍ରମଣ କରିବାର ନିଷ୍ପତ୍ତି ନେଇ ପୁରୀ ଅଭିମୁଖେ କଟକରୁ ଯାତ୍ରା ଆରମ୍ଭ କରିଥିଲେ। ଏହି ଖବର ଯାଇ ପହଞ୍ଚି ଥିଲା ମୁକୁନ୍ଦଦେବଙ୍କ ନିକଟରେ। ଏହି ପରିସ୍ଥିତିରେ ସେ କଣ କରିବେ କିଛି ସ୍ଥିର କରି ପାରି ନଥିଲେ। ଯଦି ସୁବେଦାରଙ୍କ ଆକ୍ରମଣକୁ ପ୍ରତିହତ କରିବା ପାଇଁ ସେ ତାଙ୍କ ଯାତ୍ରା ପଥରେ ପ୍ରତିବନ୍ଧକ ସୃଷ୍ଟି କରନ୍ତି, ତେବେ ସେ ନିଶ୍ଚିତ ପକ୍ଷେ ପରାଜୟ ବରଣ କରିବେ। କାରଣ ସେତେବେଳକୁ ଖାନ୍-ଇ-ଦୁରାନ୍ ତାଙ୍କର ୭ଟି ଗଡ଼ ଅବରୋଧ କରିସାରି ଥାଆନ୍ତି। ପରାଜୟ ବରଣ କଲେ ଚିନ୍ତା ନାହିଁ। ମାତ୍ର ସୁବେଦାର ଅଧିକ ଉତ୍କ୍ଷିପ୍ତ ହୋଇ ଜଗନ୍ନାଥ ମନ୍ଦିରରେ ନାହିଁ ନଥିବା କ୍ଷୟକ୍ଷତି ଘଟାଇବେ। ତେଣୁ ସେ ଚିନ୍ତା କରିଥିଲେ ଯେ ତାଙ୍କ ମନୋଭାବକୁ ଶିଥିଳ କରିବା ପାଇଁ କୌଣସି ଏକ ପଦକ୍ଷେପ ଗ୍ରହଣ କରିବେ। ସେଥିପାଇଁ ସେ ଖୋର୍ଦ୍ଧାଗଡ଼ ଛାଡ଼ି ନିଜ ରାଣୀଙ୍କ ସହ ଦାଣ୍ଡମୁକୁନ୍ଦପୁରର ଅଦୂରରେ

---

(୯) Jadunath Sarkar, Studies in Aurangzeb's Reign

Digitized by srujanika@gmail.com

ପିପିଲିସ୍ଥିତ ମୁକୁନ୍ଦଦେବ ହରିଚନ୍ଦନଙ୍କ ଦ୍ୱାରା ନିର୍ମିତ ନଅର ଠାରେ ଅପେକ୍ଷା କରିଥିଲେ। ଏହା ଥିଲା ୧୬୮୭ ମସିହା ଜୁନମାସର କଥା।

ମୋଗଲ ସୁବେଦାର ଆବୁନାସର ଖାଁ ପିପିଲି ଠାରେ ପହଞ୍ଚିବା ପରେ ଅପେକ୍ଷାରତ ମୁକୁନ୍ଦଦେବ ତାଙ୍କୁ ଅତି ବିନମ୍ର ଭାବରେ ଅନୁରୋଧ କରି କହିଥିଲେ ଯେ, ସେ ଗୋଟିଏ ଦିନ ତାଙ୍କ ନଅରରେ ଅବସ୍ଥାନ କରନ୍ତୁ। ସୁବେଦାରଙ୍କ କଠୋର ମନୋଭାବକୁ କୋହଳ କରାଇବା ଥିଲା ତାଙ୍କର ଆଭିମୁଖ୍ୟ। ସୌଭାଗ୍ୟ ବଶତଃ ସୁବେଦାର ଏଥିରେ ସମ୍ମତି ପ୍ରଦାନ କରି ତାଙ୍କର ଆତିଥ୍ୟ ଗ୍ରହଣ କରିଥିଲେ। ତା' ପରଦିନ ସକାଳେ ସେ ପ୍ରସ୍ତୁତ ହୋଇଗଲେ ପୁରୀ ଯିବା ପାଇଁ। ତାହାଥିଲା ଚୈତ୍ର ମାସ। ମେଘ ମୁକ୍ତ ଆକାଶ। ବଉଦର ଚିହ୍ନ ମଧ୍ୟ ନାହିଁ। କିନ୍ତୁ ହଠାତ୍ ଏକ ପ୍ରଚଣ୍ଡ ଘଡ଼ଘଡ଼ିର ଶବ୍ଦ ଶୁଣାଗଲା। ଏହି ଶବ୍ଦ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଅଧିବାସୀଙ୍କୁ ଚମତ୍କୃତ କରିଦେଇଥିଲା। କ'ଣ ହେଲା- କେଉଁଠୁ ଆସିଲା ଏ ଶବ୍ଦ। ଏହାର ରହସ୍ୟ ମୋଗଲ ସୁବେଦାର ମଧ୍ୟ ଜାଣି ପାରି ନଥିଲେ। କିଛି ସମୟ ଏହା ଯେ ତାଙ୍କୁ ବିଚଳିତ କରିଥିଲା, ଏଥିରେ ସନ୍ଦେହ ନାହିଁ। ଶେଷରେ ସେ ସ୍ଥିର କରିଥିଲେ ଯେ, ସେ ଆଉ ପୁରୀ ଯିବେ ନାହିଁ। ତେଣୁ ମୁକୁନ୍ଦଦେବଙ୍କ ସହ ବନ୍ଧୁତା ସ୍ଥାପନ କରି ସେ ଫେରି ଆସିଥିଲେ କଟକ। ଆଉ କେବେ ମଧ୍ୟ ସେ ସାହସ କରି ନାହାନ୍ତି ପୁରୀ ଯିବା ପାଇଁ। ଏପରିକି ମୁକୁନ୍ଦଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଅନ୍ୟ କେହି ମୋଗଲ ସୁବେଦାର ଖୋର୍ଦ୍ଧା ରାଜ୍ୟ ବା ପୁରୀର ଜଗନ୍ନାଥ ମନ୍ଦିର ଆକ୍ରମଣ କରିବା ପାଇଁ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରି ନଥିଲେ। ତେଣୁ ତାଙ୍କ ରାଜ୍ୟରେ ଅପେକ୍ଷାକୃତ ଶାନ୍ତି ବିରାଜମାନ କରିଥିଲା। ଘଡ଼ଘଡ଼ି ଶବ୍ଦର କାରଣ ଏବେ ସୁଦ୍ଧା ରହସ୍ୟାବୃତ ହୋଇ ରହିଥିଲେ ମଧ୍ୟ ଏହା ଦୈବକୃତ ଓ ଜଗନ୍ନାଥଙ୍କର ଅପାର କରୁଣା ବୋଲି ବିଶ୍ୱାସ କରାଯାଇ ଥାଏ। ଘଟଣାଟି ମାଦଳା ପାଞ୍ଜିରେ ନିମ୍ନ ପ୍ରକାରେ ବର୍ଣ୍ଣିତ ହୋଇଛି।

"ଏ ମହାରାଜାଙ୍କ ୩୮ ଅଙ୍କେ ଶ୍ରୀପୁରୁଷୋତ୍ତମକୁ ଆବିଜ କରିବା ବିଚାରି ନାଏବ ଅବଦୁଲ ନସର ଖାଁ ପିପିଲି ଯାଏ ଅଇଲା, ଏହାଙ୍କ ସହିତ ରାଜା କୁମ୍ଭେ ଘେନି ଦାଣ୍ଡମୁକୁନ୍ଦପୁର ନଅରରେ ବିଜେ କଲେ - ଚଇତି ମାସରେ ପିପିଲିଠାରେ ଚଡ଼କ ପଡ଼ିବାରେ ଆରଦିନ ରାଜାଙ୍କ ସହିତ ପ୍ରୀତ ହୋଇ କଟକ ବାହୁଡ଼ା କଲା।"(୧୦)।

ଏହି ମୁକୁନ୍ଦଦେବଙ୍କ ରାଜତ୍ୱରେ ୧୬୭୪ ଖ୍ରୀଷ୍ଟାବ୍ଦରେ ଅବଦୁଲ ଅଜିଜ୍

(୧୦) ମାଦଳାପାଞ୍ଜି- ପୃ.୬୯

Digitized by srujanika@gmail.com

ପିପିଲି ଠାରେ ଏକ ବିଶାଳ ମସ୍‌ଜିଦ୍ ନିର୍ମାଣ କରିଥିଲେ। ସେତେବେଳେ ମୋଗଲ ସୁବେଦାର ଥାଆନ୍ତି ସନ୍ଧୌଲା ଖାଁ।(୧୧)। ସେହି ମସ୍‌ଜିଦ୍ ଏବେ ପିପିଲି ବଜାରର ପଶ୍ଚାତ୍‌କୁ ମୁସଲମାନ ବହୁଳ ନରସିଂହପୁର ଗ୍ରାମ ମଧ୍ୟରେ ଦଣ୍ଡାୟମାନ।

ଏହି ଗଜପତି ମୁକୁନ୍ଦଦେବ ଯାଜପୁରଠାରେ ବସନ୍ତ ରୋଗରେ ପୀଡ଼ିତ ହୋଇ ୧୬୮୯ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ବରଣ କରିଥିଲେ। ସମ୍ଭବତଃ, ନସର ଖାଁଙ୍କ ଦ୍ୱାରା ସଂଘଟିତ ମନ୍ଦିରର ଧ୍ୱଂସ ଲୀଳା ଦେଖିବା ପାଇଁ ସେ ସେଠାକୁ ଯାଇଥିଲେ। ତାଙ୍କ ପାଟରାଣୀ ସ୍ୱାମୀଙ୍କ ଚିତାରେ ଝାସ ଦେଇଥିଲେ।

ମୁକୁନ୍ଦଦେବଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଦିବ୍ୟସିଂହଦେବ ୧୬୮୮ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ସିଂହାସନରେ ଅଧିଷ୍ଠିତ ହୋଇ ଖ୍ରୀ.୧୭୧୬ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ। ତାଙ୍କରି ରାଜତ୍ୱ କାଳରେ ପୁରୀ ଓ ପିପିଲି-ଡେଲାଙ୍ଗ ସମେତ ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଏକ ରୋମାଞ୍ଚକର ଘଟଣା ସଙ୍ଘଟିତ ହୋଇଥିଲା। ୧୬୯୪ ମସିହା ଅକ୍ଟୋବର ୬ ତାରିଖ ଦିନ ଏକ ନାହିଁ ନଥିବା ବାତ୍ୟା ହୋଇଥିଲା। ଫଳରେ ବହୁ ଲୋକଙ୍କର ଘର ଭାଙ୍ଗିଯିବା ସଙ୍ଗେ ସଙ୍ଗେ ବହୁ ବଟବୃକ୍ଷରୁ ଡାଳ ଭାଙ୍ଗି ପଡ଼ିଥିଲା। ସେହିଦିନ ବଡ଼ଦେଉଳ ଚୂଡ଼ାରେ ଶୋଭା ପାଉଥିବା ନୀଳଚକ୍ରଟି ମଧ୍ୟ ଭାଙ୍ଗି ତଳେ ପଡ଼ିଯାଇଥିଲା। ଏହି ନୀଳଚକ୍ର ୨୦ ବର୍ଷ ପରେ ୧୭୧୫ ମସିହା ଜାନୁୟାରୀ ୨୬ ତାରିଖରେ ପୁନଃ ପ୍ରତିଷ୍ଠା କରାଯାଇ ଥିଲା। ମାଦଳାପାଞ୍ଜିର ବର୍ଣ୍ଣନା ଅନୁଯାୟୀ ପରମାନନ୍ଦ ପଟ୍ଟନାୟକଙ୍କ ପୁତ୍ର ଧରମୁ ହରିଚନ୍ଦନ ମହାପାତ୍ର ନୀଳଚକ୍ରକୁ ପ୍ରତିଷ୍ଠା କରିଥିଲେ। କେବଳ ସେତିକି ନୁହେଁ, ଏହି ଦିବ୍ୟସିଂହଦେବଙ୍କ ରାଜତ୍ୱରେ ବାତ୍ୟା ହେବାର ପରବର୍ଷ ଅର୍ଥାତ୍ ୧୬୯୫ ଖ୍ରୀଷ୍ଟାବ୍ଦରେ ପୁରୀ ଜିଲ୍ଲାରେ ଏକ ଭୟାବହ ଦୁର୍ଭିକ୍ଷ ପଡ଼ିଥିଲା। ଏଥିରେ ପିପିଲି ଅଞ୍ଚଳର ବହୁଲୋକ ପ୍ରାଣ ହରାଇଥିବାର ଜଣାଯାଏ।

## ନାଏବ ନାଜିମଙ୍କ ରାଜତ୍ୱରେ ପିପିଲି

ଖ୍ରୀ. ୧୭୦୭ରେ ମୋଗଲ ସମ୍ରାଟ ଆଉରଙ୍ଗଜେବଙ୍କର ମୃତ୍ୟୁ ହୁଏ। ତାଙ୍କର ଉତ୍ତରାଧିକାରୀ ଥିଲେ ସମ୍ପୂର୍ଣ୍ଣ ଅଯୋଗ୍ୟ। ଏହାର ସୁଯୋଗ ନେଇ ଓଡ଼ିଶାର ମୋଗଲ ସୁବେଦାର ମୁର୍ଶିଦ କୁଲିଖାଁ ସ୍ୱାଧୀନତା ଘୋଷଣା କରିବା ସଙ୍ଗେ ସଙ୍ଗେ ନିଜକୁ ବଙ୍ଗଳାର ନବାବ ବା ନାଜିମ ବୋଲି ଘୋଷଣା କରିଥିଲେ। ଏହିପରି ଭାବେ ସେ ଏକ ସମୟରେ ଦୁଇଟି ପଦବୀରେ ଅଧିଷ୍ଠିତ ହୋଇଥିଲେ।

(୧୧) Orissa Historical Research Journal, Vol.II - No.4 -p.61

Digitized by srujanika@gmail.com

ପ୍ରଥମଟି ହେଲା, ଓଡ଼ିଶାର ସୁବେଦାର ଓ ଅନ୍ୟଟି ହେଲା ବଙ୍ଗଳାର ନାଜିମ୍‌। ଦୁଇଟି କାର୍ଯ୍ୟ ଏକ ସମୟରେ ଚଳାଇ ପାରିବେ ନାହିଁ ବୋଲି ଆଶଙ୍କା କରି ସେ ତାଙ୍କ ଜ୍ୱାଇଁ ସୁଜାଉଦ୍ଦିନ ମହମ୍ମଦ ଖାଁଙ୍କୁ ନାଏବ-ନାଜିମ ରୂପେ ଘୋଷଣା କରି ଓଡ଼ିଶାରେ ଅଧିଷ୍ଠିତ କରାଇଥିଲେ। ସେହିଦିନୁ ଅର୍ଥାତ ଖ୍ରୀ.୧୭୦୭ ରୁ ଖ୍ରୀ.୧୭୫୧ ପର୍ଯ୍ୟନ୍ତ ଓଡ଼ିଶା ରହିଲା ନାଏବ୍‌-ନାଜିମ୍‌ଙ୍କ ଅଧୀନରେ। ପ୍ରକୃତ ପକ୍ଷେ ସେମାନେ ଓଡ଼ିଶାର ସର୍ବମୟ କର୍ତ୍ତା ହେଲେ। ସୁଜାଉଦ୍ଦିନଙ୍କ ପରେ ତାଙ୍କ ଦ୍ୱିତୀୟ ସ୍ତ୍ରୀଙ୍କର ପୁତ୍ର ମହମ୍ମଦ ତକିଖାଁ ହୋଇଥିଲେ ନାଏବ୍‌-ନାଜିମ୍‌। ତାଙ୍କରି ସମୟରେ ପିପିଲିର ଇତିହାସ ସମ୍ପର୍କରେ କିଛି ତଥ୍ୟ ମିଳିଥାଏ।

ସେତେବେଳକୁ ଖୋର୍ଦ୍ଧା ରାଜ୍ୟର ରାଜନୈତିକ ପଟ୍ଟଭୂମିରେ କେତେକ ପରିବର୍ତ୍ତନ ସଂଘଟିତ ହୋଇ ସାରିଥାଏ। ଗଜପତି ଦିବ୍ୟସିଂହଦେବଙ୍କ ମୃତ୍ୟୁପରେ ତାଙ୍କର ସାନଭାଈ ହରେକୃଷ୍ଣଦେବ ଖ୍ରୀ.୧୭୧୬ରୁ ଖ୍ରୀ.୧୭୨୦ ପର୍ଯ୍ୟନ୍ତ ଓ ତାଙ୍କ ପରେ ତାଙ୍କ ପୁତ୍ର ଗୋପୀନାଥ ଦେବ ଖ୍ରୀ.୧୭୨୦ରୁ ଖ୍ରୀ.୧୭୨୭ ପର୍ଯ୍ୟନ୍ତ ରାଜ ସିଂହାସନ ଅଳଂକୃତ କରିଥିଲେ। ତାଙ୍କୁ ହତ୍ୟା କରିବା ପରେ ତାଙ୍କ ସାନଭାଇ ଦ୍ୱିତୀୟ ରାମଚନ୍ଦ୍ରଦେବ ଖ୍ରୀ.୧୭୩୬ ପର୍ଯ୍ୟନ୍ତ ରାଜା ହୋଇଥିଲେ। ତାଙ୍କରି ରାଜତ୍ୱରେ ନାଏବ-ନାଜିମ୍‌ ମହମ୍ମଦ ତକିଖାଁ ପିପିଲିଠାରେ ଗୋଟିଏ ଦରଘା ନିର୍ମାଣ କରିଥିଲେ।(୧୨)। ତାହା ଏବର ଜବାହର ବିଦ୍ୟାପୀଠ ନିକଟରେ ସ୍ଥାପିତ ହୋଇଥିବାର ଅନୁମାନ କରାଯାଏ। ମହମ୍ମଦ ତକିଖାଁ ଥିଲେ ପ୍ରଚଣ୍ଡ ହିନ୍ଦୁ ବିଦ୍ୱେଷୀ ଓ ଲୋଭୀ। ଧନଲୋଭରେ ସେ ଖୋର୍ଦ୍ଧା ଆକ୍ରମଣ କରିଥିଲେ। ଏହି ଆଶାରେ ସେ ୧୭୩୧ ମସିହା ଡିସେମ୍ବର ମାସ ୨ ତାରିଖରେ ଶିଶୁପାଳଗଡ଼ ଧ୍ୱଂସ କରି ଧଉଳି ଅଧିକାର କରିଥିଲେ। ପିପିଲିର ୯୦ ବର୍ଷ ବୟସ୍କ ଡକ୍ଟର ହରିଚରଣ ଗିରି କହିଥିଲେ, ‘‘ତକିଖାଁଙ୍କ କିଛି ସୈନ୍ୟଙ୍କୁ ପିପିଲିଠାରେ ଅବସ୍ଥିତ ଖୋର୍ଦ୍ଧା ରାଜାଙ୍କ ଗଡ଼ର ପାଇକ ସେନା ପ୍ରବଳ ପ୍ରତିରୋଧ କରିବାରୁ ସେମାନେ ଉତ୍ତରା ଆଡ଼କୁ ପଳାୟନ କରିଥିଲେ। ପାଇକ ସେନା ସେମାନଙ୍କୁ ଗୋଡ଼ାଇ ଗୋଡ଼ାଇ ଭାର୍ଗବୀ ନଦୀ କୂଳ ପର୍ଯ୍ୟନ୍ତ ଆସିଥିଲେ। ସେମାନେ ସେଠାରେ ରାତାରାତି ବାଳକାଟି ଲଣ୍ଡାହୋଇଯିବା ସଂଗେ ସଂଗେ ସକାଳ ହେବା ପୂର୍ବରୁ କଟକ ପଳାଇ ଯାଇଥିଲେ। ସେଥିପାଇଁ ସେ ସ୍ଥାନର ନାମ ‘ବାଳକାଟି’ ହୋଇଛି।’’ ଏହା ସେ ପିପିଲିରେ ବାସ କରୁଥିବା କେତେଜଣ ବୟୋବୃଦ୍ଧଙ୍କ ଠାରୁ ଶୁଣିଛନ୍ତି ବୋଲି କହିଥିଲେ। ଏହା ଅବଶ୍ୟ କୌଣସି କାଗଜ ପତ୍ରରେ ଲିପିବଦ୍ଧ ଥିବାର

(୧୨) Orissa Historical Research Journal, Vol.VI-No.4 p.290

Digitized by srujanika@gmail.com

ମୁଁ ଦେଖିନାହିଁ। ତଥାପି ଜନଶ୍ରୁତିକୁ ସଂପୂର୍ଣ୍ଣରୂପେ ଏଡ଼ାଇ ଦିଆଯାଇ ନପାରେ।

ଇତି ମଧ୍ୟରେ ଖୋର୍ଦ୍ଧା ରାଜା ଦ୍ୱିତୀୟ ରାମଚନ୍ଦ୍ରଦେବ ତାଙ୍କର ପ୍ରଧାନମନ୍ତ୍ରୀ ପରମଲକ୍ଷ୍ମୀଙ୍କୁ କଟକ ପ୍ରେରଣ କରି ଏକ ଷଡ଼ଯନ୍ତ୍ର ମାଧ୍ୟମରେ ତକିଖାଁଙ୍କର ମୃତ୍ୟୁ ଘଟାଇଥିଲେ। ୧୭୩୪ ଖ୍ରୀଷ୍ଟାବ୍ଦରେ ତକିଖାଁଙ୍କୁ କଟକସ୍ଥିତ କଦମରସୁଲଠାରେ କବର ଦିଆ ଯାଇଥିଲା। ତାଙ୍କପରେ ଦ୍ୱିତୀୟ ମୁର୍ଶିଦ କୁଲିଖାଁ ଓଡ଼ିଶାର ନାଏବ ଭାବେ ଅବସ୍ଥାପିତ ହୋଇଥିଲେ। ସେ ତାଙ୍କର ଜଣେ ଦେବାନଙ୍କ ସହାୟତାରେ ଶାସନ କାର୍ଯ୍ୟ ଚଳାଇଥିଲେ। ତାଙ୍କର ନାମ ଥିଲା ମୀର୍ ହବିବ୍।

୧୭୩୬ ଖ୍ରୀଷ୍ଟାବ୍ଦରେ ଗଜପତି ଦ୍ୱିତୀୟ ରାମଚନ୍ଦ୍ରଦେବଙ୍କର ମୃତ୍ୟୁ ହୁଏ। ତାଙ୍କ ପରେ ୧୭୩୭ ଖ୍ରୀଷ୍ଟାବ୍ଦରେ ଗଜପତି ବୀରକିଶୋର ଦେବ ଖୋର୍ଦ୍ଧା ସିଂହାସନରେ ଅଧିଷ୍ଠିତ ହୁଅନ୍ତି। ଦୀର୍ଘ ୫୬ ବର୍ଷ (ଖ୍ରୀ.୧୭୩୭-୧୭୯୩) ଥିଲା ତାଙ୍କର ଶାସନ କାଳ। ତାଙ୍କ ରାଜୁତି ଥିଲା ଯେପରି ଦୀର୍ଘ ଠିକ୍ ସେହିପରି ଘଟଣା ବହୁଳ। ଶେଷ ଜୀବନରେ ସେ ପାଗଳ ହୋଇ ନିଜର ଚାରିପୁତ୍ରଙ୍କୁ ହତ୍ୟା କରି ଦେବାରୁ ତାଙ୍କୁ ବାରବାଟୀ ଦୁର୍ଗରେ ବନ୍ଦୀକରି ରଖାଯାଇଥିଲା ଓ ସେହିଠାରେ ହିଁ ତାଙ୍କର ମୃତ୍ୟୁ ହୋଇଥିଲା ୧୭୯୩ ଖ୍ରୀଷ୍ଟାବ୍ଦରେ।

ତା'ପରେ ଗଜପତି ଦ୍ୱିତୀୟ ଦିବ୍ୟସିଂହଦେବ (ଖ୍ରୀ.୧୭୯୩-୧୭୯୮) ଓ ଶେଷରେ ଦ୍ୱିତୀୟ ମୁକୁନ୍ଦଦେବ (ଖ୍ରୀ.୧୭୯୮ ରୁ ଖ୍ରୀ.୧୮୧୭) ରାଜୁତି କରିଥିଲେ।

୧୭୪୦ ଖ୍ରୀଷ୍ଟାବ୍ଦ ଏପ୍ରିଲ ୧୦ ତାରିଖ ଦିନ ଆଲିବର୍ଦ୍ଦି ଖାଁ ବଙ୍ଗଳା, ବିହାର ଓ ଓଡ଼ିଶାର ନାଜିମ ବା ନବାବ ପଦରେ ଅଧିଷ୍ଠିତ ହୋଇଥିଲେ। ମାତ୍ର ତତ୍‌କାଳୀନ ନାଏବ-ନାଜିମ୍ ଦ୍ୱିତୀୟ ମୁର୍ଶିଦ କୁଲିଖାଁ ଓ ତାଙ୍କ ଦେବାନ୍ ମୀର ହବିବ୍ ତାଙ୍କୁ ନବାବ ଭାବେ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ। ଫଳରେ ଆଲିବର୍ଦ୍ଦି ଖାଁ କଟକ ଆକ୍ରମଣ କରି ଏକ ଭୟାବହ ଯୁଦ୍ଧରେ ଉଭୟଙ୍କୁ ପରାସ୍ତ କରିବା ପରେ ଶେଖ୍ ମାଉସୁମ୍ ପାନିପତିଙ୍କୁ ନାଏବ-ନାଜିମ୍ ପଦରେ ଅଧିଷ୍ଠିତ କରାଇ ସେ ବଙ୍ଗଳାକୁ ଫେରି ଯାଇଥିଲେ।

## ମରହଟ୍ଟା ରାଜତ୍ୱରେ ପିପିଲି

ଇତି ମଧ୍ୟରେ ନାଗପୁରର ମରହଟ୍ଟା ରାଜା ରଘୁଜୀ ଭୋଁସଲେଙ୍କର ଲୋଲୁପ ଦୃଷ୍ଟି ପଡ଼ିଥିଲା ଓଡ଼ିଶା ଉପରେ। ସେ ଓଡ଼ିଶା ଆକ୍ରମଣ କରିବା

Digitized by srujanika@gmail.com

ପାଇଁ ସ୍ୱପ୍ନାଭିଳାଷୀ ହୋଇ ପଡ଼ିଥିଲେ। ଦ୍ୱିତୀୟ ମୁର୍ଶିଦ କୁଲିଖାଁଙ୍କର ବିତାଡ଼ିତ ଦେବାନ୍ ମୀର୍ ହବିବ୍ ମରହଟ୍ଟା ରାଜାଙ୍କୁ ଓଡ଼ିଶା ଆକ୍ରମଣ କରିବା ଦିଗରେ ପ୍ରଲୋଭିତ କରିଥିବାର ବିଶ୍ୱାସ କରାଯାଏ। ସେ ଯାହାହେଉ, ଓଡ଼ିଶାକୁ ଅଧିକାର କରିବା ପାଇଁ ମରହଟ୍ଟା ଓ ଆଲିବର୍ଦ୍ଦି ଖାଁଙ୍କ ମଧ୍ୟରେ ସଂଘର୍ଷ ଦୀର୍ଘ ୧୦ ବର୍ଷ ଧରି (ଖ୍ରୀ.୧୭୪୧-୧୭୫୧) ଲାଗି ରହିଥିଲା। ଶେଷରେ ୧୭୫୧ ମସିହାରେ ଆଲିବର୍ଦ୍ଦି ଖାଁ ମରହଟ୍ଟା ରାଜା ରଘୁଜୀ ଭୋଁସଲେଙ୍କ ସହ ଏକ ଚୁକ୍ତି ସମ୍ପାଦନ କରି ଓଡ଼ିଶା ସୁବାକୁ ହସ୍ତାନ୍ତର କରିଥିଲେ। ସେହିଠାରୁ ଓଡ଼ିଶା ମରହଟ୍ଟାମାନଙ୍କ ଶାସନାଧୀନରେ ରହିଥିଲା। ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପର୍ଯ୍ୟନ୍ତ ମରହଟ୍ଟାମାନେ ଓଡ଼ିଶାର ସର୍ବମୟ କର୍ତ୍ତା ହୋଇଥିଲେ।

ମରହଟ୍ଟାମାନଙ୍କ ଶାସନକାଳ ମଧ୍ୟରେ ପିପିଲି ଭୂଖଣ୍ଡରେ ସେପରି କିଛି ରୋମାଞ୍ଚକର ଘଟଣା ସଂଘଟିତ ହୋଇଥିବାର ଜଣାଯାଏ ନାହିଁ। ତଥାପି ପିପିଲିରେ ମରହଟ୍ଟାମାନେ ନିଜର ଏକ ସେନାଛାଉଣୀ ପ୍ରତିଷ୍ଠା କରି ସେଠାରେ ଧର୍ମରାୟ ପଣ୍ଡିତଙ୍କ ଅଧ୍ୟକ୍ଷତାରେ ସୈନ୍ୟମାନଙ୍କୁ ଅବସ୍ଥାପିତ କରାଇଥିଲେ। କାରଣ ସେମାନେ ଦକ୍ଷିଣରୁ ଆସୁଥିବା ଇଂରେଜ ସେନାକୁ ପ୍ରତିରୋଧ କରିବେ।(୧୩)। ସେଥିପାଇଁ ମରହଟ୍ଟା ଓ ଇଂରେଜ ସେନାଧ୍ୟକ୍ଷ ହଚିନ୍‌ସନ୍‌ଙ୍କ ମଧ୍ୟରେ ସଂଘଟିତ ସଂଘର୍ଷ ବେଶ୍ ଭୟାବହ ହୋଇଥିଲା। ୧୭୮୧ ମସିହାରେ ଇଂରେଜ ଗଭର୍ଣ୍ଣର ଜେନେରାଲ ଓ୍ୱାରେନ୍ ହେଷ୍ଟିଙ୍ଗସ୍ କର୍ଣ୍ଣେଲ ପିଏରସଙ୍କୁ ଓଡ଼ିଶା ପଠାଇଥିଲେ। ସେତେବେଳେ ମରହଟ୍ଟା ସୁବେଦାର ଥାଆନ୍ତି ରାଜାରାମ ପଣ୍ଡିତ। ସେ କଟକରୁ କାଠଯୋଡ଼ି ନଦୀ ଅତିକ୍ରମ କରି ବାଲିଅନ୍ତା, ବାଲକାଟି, ପିପିଲି ଦେଇ ଦକ୍ଷିଣକୁ ଗମନ କରିଥିବାର ଜଣାଯାଏ। ପୁନଶ୍ଚ, ମରହଟ୍ଟା ସୁବେଦାର ଭବାନୀ ପଣ୍ଡିତଙ୍କ ସମୟରେ ଖ୍ରୀ.୧୭୮୪ ରେ କଟକରୁ କେତେଜଣ ଧାର୍ମିକ ବ୍ୟକ୍ତି ବା ଗୋସ୍ୱାମୀ ପୁରୀର ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଯାଇଥିଲେ। ଯିବା ବାଟରେ ନିଶ୍ଚିତ ପକ୍ଷେ ସେମାନେ ପିପିଲିସ୍ଥିତ ସଦାବର୍ତ୍ତ ମଠରେ ଦିନେ ଦୁଇଦିନ ବିତାଇଥିବେ। ସେମାନେ ଚାଲି ଚାଲି ଯାଉଥିବାରୁ କଟକରୁ ବାହାରିଲେ ପିପିଲିଠାରେ ସନ୍ଧ୍ୟା ହୋଇ ଯାଉଥିବ। ପୁନଶ୍ଚ ସେମାନେ ଗୋସ୍ୱାମୀ ହୋଇଥିବାରୁ ଅନ୍ୟ କାହାରି ରୋଷେଇରେ ନଖାଇ ନିଜେ ଖାଦ୍ୟ ପ୍ରସ୍ତୁତ କରିଥିବେ। ସେହି ସଦାବର୍ତ୍ତ ମଠରୁ

(୧୩) B.C.Roy, Orissa under the Marathas, p.111

Digitized by srujanika@gmail.com

ତୀର୍ଥ ଯାତ୍ରୀମାନଙ୍କୁ ଜାଳେଣି କାଠ, ଚାଉଳ, ଡାଲି ଓ ପନିପରିବା ଆଦି ଦିଆ ଯାଉଥିଲା । ସେଠାରେ ମଧ୍ୟ ଜଳଛତ୍ରର ବ୍ୟବସ୍ଥା ଥିଲା । ସେହି ସଦାବର୍ତ୍ତ ମଠ ମଧ୍ୟରେ ରାଧାକୃଷ୍ଣ ମୂର୍ତ୍ତି ସ୍ଥାପନ କରାଯାଇଥିଲା । ଏହି ମଠକୁ ରାଢସ ଗ୍ରାମର ଜମିଦାର ପରିଚାଳନା କରୁଥିଲେ । ତାହା ବର୍ତ୍ତମାନର ପିପିଲି ତହସିଲଦାରଙ୍କ ସରକାରୀ ବାସଭବନ ନିକଟରେ ଅବସ୍ଥିତ ଥିଲା ।

ଏହା ହେଉଛି ୧୫୬୮ ଖ୍ରୀଷ୍ଟାବ୍ଦରୁ ୧୮୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାରେ ଶାସନ କରିଥିବା ଆଫଗାନ, ମୁସଲମାନ ଓ ମରହଟ୍ଟାଙ୍କ ସମୟରେ ପିପିଲି-ଡେଲାଙ୍ଗର ରୋମାଞ୍ଚ ପୂର୍ଣ୍ଣ ରାଜନୈତିକ ଇତିହାସ ।

□ □ □

Digitized by srujanika@gmail.com

# ଚତୁର୍ଥ ଅଧ୍ୟାୟ

## ଇଂରେଜ ରାଜତ୍ୱରେ ପିପିଲିର ଇତିହାସ

## (ଖ୍ରୀ. ୧୮୦୩ - ୧୯୪୭)

ପୂର୍ବପରି ଇଂରେଜ ରାଜତ୍ୱରେ ପିପିଲିର ଇତିହାସ ଯେପରି ରୋମାଞ୍ଚକର, ସେହିପରି ଉଦ୍ଦୀପନା ମୂଳକ। ତାର ଏକ ବର୍ଣ୍ଣନା ଦେବା ପୂର୍ବରୁ ୧୮୦୩ ମସିହାରେ ଇଂରେଜମାନଙ୍କର ଓଡ଼ିଶା ଅଧିକାର ବିଷୟରେ ଏକ ସଂକ୍ଷିପ୍ତ ସୂଚନା ଦେବା ପ୍ରାସଙ୍ଗିକ ହେବ।

### ଇଂରେଜମାନଙ୍କର ଓଡ଼ିଶା ଅଧିକାର ଓ ପିପିଲି :

୧୭୫୭ ଖ୍ରୀଷ୍ଟାବ୍ଦର ଐତିହାସିକ ପଲାସୀ ଯୁଦ୍ଧ ପରେ ବଙ୍ଗଳାର ନବ ନିଯୁକ୍ତ ଗଭର୍ଣ୍ଣର ରବର୍ଟ କ୍ଲାଇବ୍ ଚିନ୍ତା କରିଥିଲେ ଯେ, ଇଂରେଜମାନଙ୍କପାଇଁ ଓଡ଼ିଶା ଅଧିକାର ଅପରିହାର୍ଯ୍ୟ ଏବଂ ତାହା ମୁଖ୍ୟତଃ ଓଡ଼ିଶାର ଅବସ୍ଥିତି ପାଇଁ। ସେତେବେଳେକୁ ଇଂରେଜମାନେ ଦକ୍ଷିଣରେ ମାଦ୍ରାଜସ୍ଥିତ ସେଣ୍ଟଜର୍ଜଠାରେ ତାଙ୍କର ବାଣିଜ୍ୟ କୋଠି ଓ ପ୍ରଶାସନିକ କେନ୍ଦ୍ର ସ୍ଥାପନ କରିସାରି ଥାଆନ୍ତି। ସେହି ସମୟରେ ମଧ୍ୟ କଲିକତାସ୍ଥିତ ଫୋର୍ଟ ଉଇଲିୟମ୍ ଦୁର୍ଗରେ ସେମାନଙ୍କର ବାଣିଜ୍ୟ କୋଠି ଓ ପ୍ରଶାସନିକ କେନ୍ଦ୍ର ସ୍ଥାପିତ ହୋଇସାରିଥାଏ। ଏପରି ସ୍ଥଳେ କଲିକତାରୁ ମାଦ୍ରାଜକୁ ଯିବାକୁ ହେଲେ ଏକମାତ୍ର ରାସ୍ତା ଓଡ଼ିଶାଦେଇ ଯିବାକୁ ପଡ଼ିବ। ତେଣୁ ରବର୍ଟ କ୍ଲାଇବ୍ ଓଡ଼ିଶା ଅଧିକାର ପାଇଁ ଏକ ପଦକ୍ଷେପ ଗ୍ରହଣ କରିଥିଲେ। ସେତେବେଳେ ଓଡ଼ିଶା ମରହଟ୍ଟାଙ୍କ ଅଧୀନରେ ଥାଏ ଓ କଟକ ଥାଏ ତାଙ୍କର



Digitized by srujanika@gmail.com

ରାଜଧାନୀ । ତେଣୁ ପ୍ରାଥମିକ ପଦକ୍ଷେପ ସ୍ୱରୂପ ମରହଟ୍ଟା ପ୍ରଶାସକଙ୍କୁ ଲାଞ୍ଚଦେଇ ଓଡ଼ିଶାକୁ ନିଜ ଅଧୀନକୁ ନେବା ଆଶାରେ ରବର୍ଟ କ୍ଲାଇବ୍ ଟି. ମଟ୍ଟୋ ନାମକ ଜଣେ ଇଂରେଜ ବ୍ୟବସାୟୀଙ୍କୁ କଟକକୁ ପ୍ରେରଣ କରିଥିଲେ । ମାତ୍ର ମରହଟ୍ଟା ପ୍ରଶାସକ ଅର୍ଥନେଇ କଟକ ଓ ବାଲେଶ୍ୱରର ପ୍ରଶାସନିକ ଅଧିକାର ଇଂରେଜମାନଙ୍କୁ ହସ୍ତାନ୍ତର କରିବାପାଇଁ ରାଜି ହୋଇନଥିଲେ । ତାଙ୍କର ପରବର୍ତ୍ତୀ ଦୁଇଜଣ ଗଭର୍ଣ୍ଣର ଜେନେରାଲ୍ ୱାରେନ୍ ହେଷ୍ଟିଙ୍ଗସ୍ ଓ ଲର୍ଡ଼ କର୍ଣ୍ଣୱାଲିସ୍ ଅନୁରୂପ ଉଦ୍ୟମ କରି ମଧ ବ୍ୟର୍ଥ ହୋଇଥିଲେ । ତାଙ୍କପରେ ଲର୍ଡ଼ ୱେଲ୍‌ସଲି ୧୭୯୮ ଖ୍ରୀଷ୍ଟାବ୍ଦରେ ଗଭର୍ଣ୍ଣର ଜେନେରାଲ୍ ହୋଇ ଆସିଥିଲେ । ସେ ଥିଲେ ଜଣେ ଚରମ ସାମ୍ରାଜ୍ୟବାଦୀ । ଯେ କୌଣସି ଉପାୟରେ ଭାରତରେ ସାମ୍ରାଜ୍ୟ ବିସ୍ତାର ଥିଲା ତାଙ୍କର ଅଭିଳାଷ । ତେଣୁ ସେ ଚାହିଁଥିଲେ, ବିଶେଷ କିଛି ରକ୍ତପାତ ନକରି ଓଡ଼ିଶାକୁ ଅଧିକାର କରିବେ । ଅତୀତରେ ଷଡ଼ଯନ୍ତ୍ର କରି ଓ ବିନା ବ୍ୟୟରେ ଇଂରେଜମାନେ ଭାରତ ବର୍ଷରେ ସାମ୍ରାଜ୍ୟର ମୂଳଦୁଆ ଯେପରି ପ୍ରତିଷ୍ଠା କରାଇଥିଲେ ସେହି ଉପାୟ ଅବଲମ୍ବନ କରି ଓଡ଼ିଶାକୁ ଅଧିକାର କରିବା ନିମନ୍ତେ ୱେଲ୍‌ସଲି ଚିନ୍ତା କରିଥିଲେ । ଏ ଦିଗରେ ମନୋନିବେଶ କରି ସେ ଦୀର୍ଘ ୫ ବର୍ଷଧରି ଏକ ଯୋଜନା ପ୍ରସ୍ତୁତ କରିଥିଲେ । ଅବଶ୍ୟ ଏଥିପାଇଁ ଯେ ମରହଟ୍ଟାମାନଙ୍କ ସହ ଯୁଦ୍ଧ ସଂଘଟିତ ହୋଇ ନଥିଲା, ତା' ନୁହେଁ; ମାତ୍ର ତା' ଥିଲା ଏକ ତଥାକଥିତ ଯୁଦ୍ଧ ଓ ତା'ର ସ୍ୱରୂପ ମଧ୍ୟ ଥିଲା ଅତି ନଗଣ୍ୟ ।

ମରହଟ୍ଟା ଶକ୍ତି ସହିତ ଯୁଦ୍ଧ କରିବା ପାଇଁ ୱେଲ୍‌ସଲି ପ୍ରଥମେ କର୍ଣ୍ଣେଲ୍ କେମ୍‌ବେଲ୍‌କୁ ସେନାଧ୍ୟକ୍ଷ ଭାବେ ନିଯୁକ୍ତ କରିଥିଲେ । ମାତ୍ର ଗୋଟିଏ ଦିନ ଯାଇଛି କି ନାହିଁ, ସେ ପୀଡ଼ିତ ହୋଇ ପଡ଼ିଥିଲେ । ତାଙ୍କ ସ୍ଥାନରେ ମାଡ୍ରାଜ ରେଜିମେଣ୍ଟର କର୍ଣ୍ଣେଲ ହାରକୋର୍ଟଙ୍କୁ ନିଯୁକ୍ତି ଦିଆଯାଇଥିଲା । ସେ ଚିଲିକା ନିକଟବର୍ତ୍ତୀ ମାଣିକପାଟଣାଠାରେ ୧୮୦୩ ମସିହା ସେପ୍ଟେମ୍ବର ୧୪ ତାରିଖ ଦିନ ଦାୟିତ୍ୱ ଗ୍ରହଣ କରି ପୁରୀ ଅଭିମୁଖେ ଯାତ୍ରା କରିଥିଲେ । ସେ ପୁରୀରେ ପହଞ୍ଚିଥିଲେ ସେପ୍ଟେମ୍ବର ୧୮ ତାରିଖ ଦିନ । ସେମାନେ ପହଞ୍ଚିବା ମାତ୍ରେ ମରହଟ୍ଟାମାନେ ଉକ୍ତ ସ୍ଥାନ ପରିତ୍ୟାଗ କରିଥିଲେ । ତାଙ୍କର ପରବର୍ତ୍ତୀ ପଦକ୍ଷେପ ଥିଲା କଟକର ବାରବାଟୀ ଦୁର୍ଗ ଅବରୋଧ । ମାତ୍ର ବର୍ଷା ଋତୁ ପାଇଁ ପୁରୀରେ ସେପ୍ଟେମ୍ବର ୨୪ ତାରିଖ ପର୍ଯ୍ୟନ୍ତ ଅବସ୍ଥାନ କରି ୧୮୦୩ ମସିହା ସେପ୍ଟେମ୍ବର ୨୫ ତାରିଖ ଦିନ ସେ କଟକ ଅଭିମୁଖେ ଯାତ୍ରା କରିଥିଲେ । ସେତେବେଳେ ପୁରୀଠାରୁ କଟକ ପର୍ଯ୍ୟନ୍ତ ପଡ଼ିଥିବା ରାସ୍ତାଟି ଅତ୍ୟନ୍ତ ଦୁର୍ଗମ, ପଙ୍କିଳ ଓ ଜଳମଗ୍ନ ଥିବା

Digitized by srujanika@gmail.com

ବିଷୟ ପ୍ୟାରୀମୋହନ ଆଚାର୍ଯ୍ୟ ୧୮୭୮ରେ ପ୍ରକାଶିତ ତାଙ୍କ ପୁସ୍ତକ 'ଓଡ଼ିଶାର ଇତିହାସ'ରେ ପ୍ରକାଶ କରିଛନ୍ତି।(୧)। ସେହି କାରଣରୁ କଟକରେ ପହଞ୍ଚିବା ପାଇଁ ହାରକୋର୍ଟଙ୍କୁ ୧୫ ଦିନ ଲାଗିଥିଲା। ଯାତ୍ରା ପଥରେ ସେ ନିଜର ସୈନ୍ୟଙ୍କ ସହ ପିପିଲିରେ କିଛିଦିନ ବିତାଇ ଥିଲେ। କାରଣ ସେଠାରେ ମରହଟ୍ଟାମାନଙ୍କର ଏକ ସେନା ଛାଉଣୀ ରହିଥିଲା। ତେଣୁ ମରହଟ୍ଟାମାନେ ସେମାନଙ୍କୁ ପ୍ରତିରୋଧ କରିବେ ବୋଲି ସେ ଆଶଙ୍କା କରିଥିଲେ। ତାହା ମଧ ହୋଇଥିଲା। ମାତ୍ର ଇଂରେଜ ସୈନ୍ୟ ମରହଟ୍ଟାମାନଙ୍କୁ ଅନାୟାସରେ ପରାଜିତ କରିଥିଲେ। ଶେଷରେ କର୍ଣ୍ଣେଲ ହାରକୋର୍ଟ ୧୮୦୩ ମସିହା ଅକ୍ଟୋବର ୧୦ ତାରିଖ ଦିନ କଟକରେ ପହଞ୍ଚି ବିନା ପ୍ରତିରୋଧରେ ବାରବାଟୀ ଦୁର୍ଗ ଅଧିକାର କରିଥିଲେ। ସେହିଦିନ ଇଂରେଜମାନଙ୍କର ବିଜୟ ବୈଜୟନ୍ତୀ ଓଡ଼ିଶାରେ ଉଡ଼ିଥିଲା। ତାପରେ ପୁରୀକୁ ଜଣେ ମାଜିଷ୍ଟ୍ରେଟ୍ ଓ ଜଜ୍‌ଙ୍କ ଅଧୀନରେ ରଖାଯାଇଥିଲା। ତାଙ୍କ ନାମ ଥିଲା ଚାର୍ଲସ ଗ୍ରୋମ୍। ତାପରେ ୧୮୦୫ ଖ୍ରୀଷ୍ଟାବ୍ଦର ୧୩ ଆଇନ୍ ଅନୁଯାୟୀ ଓଡ଼ିଶାରେ ଗୋଟିଏ ଜିଲ୍ଲା ସୃଷ୍ଟି କରାଯାଇ ତାର ନାମ ରଖାଯାଇଥିଲା ଜୁଗୁନାଥ (Jugunath), ପୁରୀ ହୋଇଥିଲା ତାର ପ୍ରଶାସନିକ କେନ୍ଦ୍ର। ସେହି ଚାର୍ଲସ ଗ୍ରୋମ୍ ହେଲେ ଉକ୍ତ ଜିଲ୍ଲାର କଲେକ୍ଟର। ସେହି ମଧ୍ୟ ହେଉଛନ୍ତି ଓଡ଼ିଶାର ପ୍ରଥମ ରାଜସ୍ୱ କଲେକ୍ଟର। ତାଙ୍କରି ଅଧୀନରେ ପିପିଲି ରହିଥିଲା। ଦ୍ୱିତୀୟ କଲେକ୍ଟର ହେଉଛନ୍ତି ଜର୍ଜ ୱେବ୍ (୧୮୦୫-୧୮୦୬)। ୧୮୧୬ ମସିହାରେ ପୁରୀ ପରିବର୍ତ୍ତେ କଟକ ହୋଇଥିଲା କଲେକ୍ଟରଙ୍କର ପ୍ରଶାସନିକ କେନ୍ଦ୍ର। ପରେ ପରେ କଟକ, ପୁରୀ ଓ ବାଲେଶ୍ୱରକୁ ତିନୋଟି ସ୍ୱତନ୍ତ୍ର ଜିଲ୍ଲା କରାଯାଇ ପ୍ରତ୍ୟେକଟିରେ ଜଣେ ଜଣେ ସ୍ୱତନ୍ତ୍ର କଲେକ୍ଟର ନିଯୁକ୍ତି ଦିଆଯାଇଥିଲା। ପୁରୀର କଲେକ୍ଟର ହୋଇଥିଲେ ଉଇଲିକିନ୍‌ସନ୍। ୧୮୧୪ ମସିହା ଫେବୃୟାରୀ ୧୪ ତାରିଖ ଦିନ ଓଡ଼ିଶା ପାଇଁ ଏକ କମିଶନର ପଦ ସୃଷ୍ଟି ହୋଇଥିଲା। ସେହି ତିନୋଟି ଜିଲ୍ଲାକୁ କେତୋଟି ପ୍ରଗଣାରେ ବିଭକ୍ତ କରାଯାଇଥିଲା। କଟକରେ ୭୨, ପୁରୀରେ ୩୬ ଓ ବାଲେଶ୍ୱରରେ ୫୮ଟି ପ୍ରଗଣା ରହିଥିଲା। ସେହିସବୁ ପ୍ରଗଣାର ମୋଟ୍ ଆୟତନ ଥିଲା ୮୦୦୦ ବର୍ଗ ମାଇଲ।(୨)। ଓଡ଼ିଶାର ପ୍ରଥମ କମିଶନର ଥିଲେ ରର୍ବଟ କେର୍ ଓ ତାଙ୍କ ପରେ ଉଇଲିୟମ୍ ବ୍ଲଣ୍ଟ କମିଶନର ହୋଇଥିଲେ।

ଓଡ଼ିଶା ଅଧିକାର କରିବାର କରିବାର ଏକ ବର୍ଷ ଯାଇଛି କି ନାହିଁ

(୧) ପ୍ୟାରୀମୋହନ ଆଚାର୍ଯ୍ୟ : ଓଡ଼ିଶାର ଇତିହାସ, ତୃତୀୟ ସଂସ୍କରଣ - ପୃ.୧୫୧
(୨) ଏଜନ

Digitized by srujanika@gmail.com

ଇଂରେଜମାନଙ୍କର ପ୍ରତାରଣା ନୀତିରେ କ୍ଷୁବ୍ଧ ହୋଇ ଖୋର୍ଦ୍ଧା ରାଜା ଦ୍ୱିତୀୟ ମୁକୁନ୍ଦଦେବ ନିଜର ଦେବାନ ଓ ଅଭିଭାବକ ଜୟୀ ରାଜଗୁରୁ ନାମରେ ପରିଚିତ ଜୟକୃଷ୍ଣ ରାଜଗୁରୁଙ୍କ ପରାମର୍ଶ କ୍ରମେ ୧୮୦୪ ମସିହାରେ ଇଂରେଜମାନଙ୍କ ବିରୁଦ୍ଧରେ ଏକ ବିଦ୍ରୋହ ଘୋଷଣା କରିବାର ନିଷ୍ପତ୍ତି ନେଇଥିଲେ। ରାଜା ପ୍ରାଥମିକ ପଦକ୍ଷେପ ସ୍ୱରୂପ ଅଚ୍ୟୁତ ବାରିକ ନାମରେ ନିଜର ଜଣେ କର୍ମଚାରୀଙ୍କୁ ପିପିଲି ନିକଟବର୍ତ୍ତୀ ବାଟଗାଁ ନାମକ ଏକ ଗ୍ରାମକୁ ରାଜସ୍ୱ ଆଦାୟ ପାଇଁ ୧୮୦୪ ମସିହା ଜୁଲାଇ ମାସରେ ପଠାଇଥିଲେ। କାରଣ ,ସେତେବେଳେ ପିପିଲି ଭୂଖଣ୍ଡ ଥିଲା, ଇଂରେଜମାନଙ୍କ ଅଧିନରେ। ପରେ ପରେ ରାଜା ନିଜର ଦୁଇଟି ପାଇକ ସେନା ପିପିଲି ଭୂଖଣ୍ଡରେ ଅବସ୍ଥାପିତ କରାଇଥିଲେ; ଗୋଟିକୁ, ପିପିଲିଠାରେ ଅନ୍ୟଟିକୁ ଡେଲାଙ୍ଗଠାରେ। ଜୟୀ ରାଜଗୁରୁ ମଧ୍ୟ ୧୮୦୪ ମସିହା ଅକ୍ଟୋବର ମାସରେ ରାଜାଙ୍କର କିଛି ପାଇକଙ୍କୁ ପିପିଲି ସେନା ଛାଉଣୀରୁ ନିକଟବର୍ତ୍ତୀ କେତୋଟି ଗ୍ରାମକୁ ଆକ୍ରମଣ କରିବାପାଇଁ ପ୍ରେରଣ କରିଥିଲେ। ସେମାନେ ଆକ୍ରମଣ କରି ବହୁ ସଂଖ୍ୟକ ଗୃହପାଳିତ ପଶୁ ଓ ଅସ୍ଥାବର ସମ୍ପତ୍ତି ଲୁଟ୍ କରି ନେଇଥିଲେ। ରାଜା ଏହି ସବୁ ବେନିୟମ ଓ ବିରୋଧାତ୍ମକ ପଦକ୍ଷେପ ଗ୍ରହଣ କରିବାରୁ ଇଂରେଜମାନେ ତାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ। ପିପିଲି ଓ ଡେଲାଙ୍ଗ ହୋଇଥିଲା ପ୍ରଧାନ ରଣକ୍ଷେତ୍ର।

ପ୍ରଥମେ ଏକ ସେନାବାହିନୀ କଟକରୁ ପିପିଲି ଆସି ସେଠାରୁ ପାଇକ ସେନାମାନଙ୍କୁ ବିତାଡ଼ିତ କରିଥିଲେ। ସେହିଠାରୁ ପାଇକ ସୈନ୍ୟ ଖୋର୍ଦ୍ଧା ଯାଇଥିଲେ। ଇଂରେଜ ସୈନ୍ୟମାନଙ୍କର ପରବର୍ତ୍ତୀ ପଦକ୍ଷେପ ଥିଲା ରାଜାଙ୍କର ଡେଲାଙ୍ଗ ସେନା ଛାଉଣୀର ଧ୍ୱଂସ ସାଧନ। ତେଣୁ ବଙ୍ଗଳାର ୨୫ତମ ପଦାତିକ ସେନାବାହିନୀର ୧୨୦ ଜଣ ସୈନ୍ୟ କେପ୍‌ଟେନ୍ ଜନ୍ ହିକ୍‌ଲାଣ୍ଡଙ୍କ ଅଧିନାୟକତ୍ୱରେ କଟକରୁ ବାହାରି ୧୮୦୪ ମସିହା ନଭେମ୍ବର ୨୨ ତାରିଖ ସଂଧ୍ୟା ୫ଟା ସମୟରେ ଡେଲାଙ୍ଗରେ ପହଞ୍ଚିଲେ। ସେଠାରେ ରାଜାଙ୍କର ୨୦୦ ଜଣ ପାଇକ ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ମୃତ୍ୟୁ ବରଣ କରିଥିଲେ। ଅପରପକ୍ଷେ ପାଇକମାନେ ଇଂରେଜ ପକ୍ଷର ଜଣେ ଲାସ୍‌କରଙ୍କୁ ମାରି ଦେବା ସଙ୍ଗେ ସଙ୍ଗେ ୬ ଜଣ ସିପାହୀ, ଜଣେ ହାବିଲଦାର ଓ ଜଣେ ବାଦ୍ୟକାରଙ୍କୁ ଗୁରୁତର ଭାବେ କ୍ଷତବିକ୍ଷତ କରି ଦେଇଥିଲେ। କେବଳ ସେତିକି ନୁହେଁ, ଡେଲାଙ୍ଗରୁ ଇଂରେଜ ସେନା ପ୍ରତ୍ୟାବର୍ତ୍ତନ କରୁଥିବା ସମୟରେ ପିପିଲି ନିକଟରେ ଲୁଚି ଛପି ରହିଥିବା ୭୦୦ ଅଶ୍ୱାରୋହୀ ପାଇକ କେପ୍‌ଟେନ୍ ହିକ୍‌ଲାଣ୍ଡଙ୍କୁ ପ୍ରତିରୋଧ କରିଥିଲେ। ଫଳରେ ଇଂରେଜ ଓ

Digitized by srujanika@gmail.com

ରାଜାଙ୍କ ସୈନ୍ୟଙ୍କ ମଧ୍ୟରେ ଏକ ଭୟାବହ ଯୁଦ୍ଧ ସଂଘଟିତ ହୋଇଥିଲା। ନିଜର ମାନ ଦେବା ଅପେକ୍ଷା ଯୁଦ୍ଧ କ୍ଷେତ୍ରରେ ମୃତ୍ୟୁ ଶ୍ରେୟସ୍କର ବୋଲି ଚିନ୍ତାକରି ପାଇକମାନେ ଏପରି ଭୟଙ୍କର ଆକ୍ରମଣ କରିଥିଲେ ଯେ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଇଂରେଜ ସୈନ୍ୟମାନେ ପରାଜୟ ବରଣ କରିବାକୁ ବାଧ୍ୟ ହୋଇଥିଲେ। ସେମାନେ ପାଟପୁର ନାମକ ଏକ ସ୍ଥାନରେ ଲୁଚିରହି ବହୁ ସତର୍କତାର ସହିତ କଟକକୁ ପ୍ରତ୍ୟାବର୍ତ୍ତନ କରିଥିଲେ। ପିପିଲି ନିକଟବର୍ତ୍ତୀ ସେହି ଐତିହାସିକ ରଣକ୍ଷେତ୍ରର ନାମ କେଉଁଠାରେ ଉଲ୍ଲେଖ କରାଯାଇ ନଥିଲେ ମଧ୍ୟ ପାରିପାର୍ଶ୍ୱିକ ଅବସ୍ଥାକୁ ବିଚାରକଲେ ତାହା ଏବର ନିକଟସ୍ଥ କୁରକି ହୋଇଥାଇପାରେ। ଏହା ହେଉଛି ୧୮୦୪-୫ର ଖୋର୍ଦ୍ଧା ବିଦ୍ରୋହରେ ପିପିଲି ଭୂଖଣ୍ଡର ଭୂମିକା। କେବଳ ସେତିକି ନୁହେଁ ୧୮୧୭ର ରୋମାଞ୍ଚକର ପାଇକ ବିଦ୍ରୋହରେ ଏହାର ଭୂମିକା କୌଣସି ଗୁଣରେ ନ୍ୟୂନ ନଥିଲା।

## ପାଇକ ବିଦ୍ରୋହ ଓ ପିପିଲି :

ମୁଖ୍ୟତଃ ଇଂରେଜ ପ୍ରଶାସକଙ୍କ ମନମୁଖୀ ନୀତି, ଅର୍ଥନୈତିକ ଶୋଷଣ ତଥା ରୋଡ଼ଙ୍କର ଜମିଦାର ବକ୍ସି ଜଗବନ୍ଧୁଙ୍କ ପ୍ରତି ଚରମ ଅବିଚାର ପାଇଁ ୧୮୧୭ ମସିହା ମାର୍ଚ୍ଚ ମାସ ଶେଷ ସପ୍ତାହରେ ଇଂରେଜମାନଙ୍କ ବିରୁଦ୍ଧରେ ପାଇକମାନେ ଏକ ବିଦ୍ରୋହ ଘୋଷଣା କରିଥିଲେ। ଏହା ପାଇକ ବିଦ୍ରୋହ ନାମରେ ଖ୍ୟାତ ଓ ଏହାର ନେତୃତ୍ୱ ନେଇଥିଲେ ବକ୍ସି ଜଗବନ୍ଧୁ ନାମରେ ପରିଚିତ ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ମହାପାତ୍ର। ସେତେବେଳକୁ ଖୋର୍ଦ୍ଧାର ରାଜା ଦ୍ୱିତୀୟ ମୁକୁନ୍ଦ ଦେବ ଇଂରେଜମାନଙ୍କ ଆଦେଶକ୍ରମେ ଖୋର୍ଦ୍ଧାର ଛାଡ଼ି ପୁରୀର ବାଲିସାହି ରାଜ-ପ୍ରାସାଦରେ ରହୁଥାନ୍ତି। ଏହା ୧୮୦୭ ମସିହାର କଥା। ସେତେବେଳକୁ ଖୋର୍ଦ୍ଧା ରାଜ୍ୟ ମଧ୍ୟ ଇଂରେଜମାନଙ୍କର ଖାସ୍ ହୋଇ ସାରିଥାଏ। ସେ ଯାହା ହେଉ ବକ୍ସି ଜଗବନ୍ଧୁ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବା ପରେ ସେମାନେ ତା'ର ମୁକାବିଲା କରିବା ପାଇଁ ବେଶ୍ ତତ୍ପର ହୋଇ ପଡ଼ିଥିଲେ। ବିଶେଷତଃ ସମୃଦ୍ଧଶାଳୀ ଲେମ୍ବାଇ ପ୍ରଗଣାକୁ ରକ୍ଷା କରିବା ଥିଲା ସେମାନଙ୍କର ପ୍ରଥମ ପଦକ୍ଷେପ। କଟକରୁ ଏକ ସେନା-ବାହିନୀ ଲେଫ୍ଟନାଣ୍ଟ ଫେରିସ୍‌ଙ୍କ ଅଧିନାୟକତ୍ୱରେ ପିପିଲିକୁ ପ୍ରେରଣ କରାଯାଇଥିଲା। ଏହା ଜାଣିବା ମାତ୍ରେ ସେଠାରେ ୫୦୦୦ ପାଇକ ଉପସ୍ଥିତ ହୋଇଥିଲେ। ସେଦିନ ଥିଲା ୧୮୧୭ ମସିହା ଏପ୍ରିଲ ମାସ ୧ ତାରିଖ। ପିପିଲି ନିକଟବର୍ତ୍ତୀ ଗଙ୍ଗପଡ଼ା ଗ୍ରାମରେ ପାଇକମାନେ ଲେଫ୍ଟନାଣ୍ଟ ଫେରିସ୍ ଓ ତାଙ୍କର ଜଣେ ସୁବେଦାରଙ୍କୁ

Digitized by srujanika@gmail.com

ହତ୍ୟାକରିଥିଲେ। ଏହି ବୀରୋଚିତ କାର୍ଯ୍ୟ ପାଇଁ କେବଳ ମାତ୍ର ପିପିଲି ଯେ ଗର୍ବିତ ହୋଇଥିଲା,- ତାହାନୁହେଁ। ପାଇକମାନେ ଶତ ସିଂହର ବିକ୍ରମନେଇ ପହଞ୍ଚିଥିଲେ ଖୋର୍ଦ୍ଧା ଠାରେ। ସେମାନଙ୍କର ସଂଖ୍ୟାମଧ ୫୦୦୦ରୁ କମ୍‌ନଥିଲା। ଏହା ଦେଖି ସେଠାରେ ଥିବା ଇଂରେଜ ସେନାଧକ୍ଷ ଲେଫ୍ଟନାଣ୍ଟ ପ୍ରାଇଡେକ୍ସ ଆତଙ୍କିତ ହୋଇ ପଡ଼ିଥିଲେ। ଅନ୍ୟ କୌଣସି ଉପାୟ ନଦେଖି ସେ ପ୍ରାଣ ବିକଳରେ ଖୋର୍ଦ୍ଧା ପରିତ୍ୟାଗ କରି କଟକ ଫେରି ଆସିଥିଲେ।

ପିପିଲିଠାରେ ଇଂରେଜ ସେନାଙ୍କର ଘୋର ବିପର୍ଯ୍ୟୟ ଓ ପ୍ରାଇଡେକ୍ସଙ୍କର ପଳାୟନ ସଂବାଦ ପାଇକମାନଙ୍କୁ ଅଧିକ ଉତ୍ସାହିତ କରିଥିଲା। ଫଳରେ କ୍ରମେ କ୍ରମେ ବନାଗ୍ନି ସଦୃଶ ବିଦ୍ରୋହ ଅନ୍ୟ ସ୍ଥାନକୁ ବ୍ୟାପିବାରେ ଲାଗିଥିଲା। ୧୮୧୭ ମସିହା ଏପ୍ରିଲ ୭ ତାରିଖ ଦିନ ବିଦ୍ରୋହୀମାନେ ପିପିଲିରୁ ସବୁ ଇଂରେଜ ସେନାଙ୍କୁ ବିତାଡ଼ିତ କରି ତାଙ୍କର ସେନା ଛାଉଣୀକୁ ନିଜ ଅଧୀନରେ ରଖିଥିଲେ। ପାଇକମାନଙ୍କ ସହିତ ଯୋଗଦେଇଥିଲେ ପଦ୍ମପୁର ଗଡ଼ର ରାଜା ବଳଭଦ୍ର ଛୋଟରାୟ ନିଜର ୩୦୦ ପାଇକଙ୍କୁ ନେଇ। ସେମାନେ ଭଙ୍ଗାରୁଜା ଓ ଲୁଣ୍ଠନ ଆଦି ଘଟାଇ ଇଂରେଜ ପ୍ରଶାସକଙ୍କ ପ୍ରାଣରେ ଆତଙ୍କ ସୃଷ୍ଟି କରି ଚାଲିଲେ। ଏହା ଦେଖି କେପ୍ଟେନ ଓ୍ୟାଲିଂଟନଙ୍କୁ ପୁରୀ ପ୍ରେରଣ କରାଗଲା। ଉଦ୍ଦେଶ୍ୟ ଥିଲା, ସେ ପୁରୀ ସହରକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ସେଠାରେ ବାସ କରୁଥିବା ଖୋର୍ଦ୍ଧାର ବିତାଡ଼ିତ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ ଗତିବିଧି ଲକ୍ଷ୍ୟ କରିବେ। ସେତେବେଳକୁ ବକ୍ସି ଜଗବନ୍ଧୁ ଘୁମୁସରରୁ ଆସିଥିବା କନ୍ଧ ଓ ପାଇକଙ୍କୁ ନେଇ ପୁରୀ ମଧରେ ପ୍ରବେଶ କରିଥାଆନ୍ତି। ସେମାନଙ୍କ ସହିତ ପୁରୀର କେତେକ୍ ଅଧିବାସୀ ମଧ୍ୟ ଯୋଗ ଦେଇଥିଲେ। ସେମାନଙ୍କର ମୋଟ ସଂଖ୍ୟା ୧୦,୦୦୦ ଥିଲା ଓ ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ପିପିଲି ଭୂଖଣ୍ଡର ଦୁର୍ଦ୍ଧର୍ଷ ପାଇକ। ସେମାନଙ୍କର ଉପସ୍ଥିତି ସେଠାରେ ଅବସ୍ଥାପିତ ଇଂରେଜ କର୍ମଚାରୀଙ୍କ ହୃଦୟରେ ଆତଙ୍କ ସୃଷ୍ଟି କରିଥିଲା। ପ୍ରକୃତ ପକ୍ଷେ ଜଣା ପଡୁଥିଲା ସତେ ଯେପରି ସେଠାରେ ପାଇକମାନେ ଏକତ୍ରିତ ହୋଇ ପୁରୀରେ ଇଂରେଜ ଶାସନର ମୂଳୋତ୍ପାଟନ କରି ପରେ ପରେ ସମଗ୍ର ଓଡ଼ିଶାରୁ ଇଂରେଜମାନଙ୍କୁ ବିତାଡ଼ିତ କରିବେ। ସେମାନେ ମଧ୍ୟ ବିନା ପ୍ରତିବନ୍ଧକରେ କଚେରୀ, ସରକାରୀ ଓ ବେସରକାରୀ କୋଠାଗୁଡ଼ିକର ଧ୍ୱଂସ ସାଧନ କରିଥିଲେ। ପରିସ୍ଥିତି ଏପରି ଗୁରୁତର ରୂପ ଧାରଣ କରିଥିଲା ଯେ ସେଠାରେ ଅବସ୍ଥାପିତ ଉଚ୍ଚ କ୍ଷମତାସମ୍ପନ୍ନ ଇଂରେଜ କର୍ମଚାରୀମାନେ ୧୮୧୭ ମସିହା ଏପ୍ରିଲ ୧୨ ତାରିଖ ଦିନ ଉକ୍ତସ୍ଥାନ ପରିତ୍ୟାଗ କରି କଟକକୁ ଚାଲି ଆସିଥିଲେ। ସେମାନଙ୍କ

Digitized by srujanika@gmail.com

ମଧ୍ୟରୁ କେପ୍ଟେନ୍ ଓ୍ୟାଲିଙ୍ଗଟନ୍, ଲବଣ ଏଜେଣ୍ଟ ମେସର୍ସ କିଙ୍ଗ୍ ଓ ବେକର, ତୀର୍ଥକର କଲେକ୍ଟର ବ୍ରୁସବିଙ୍କ ନାମ ଉଲ୍ଲେଖ ଯୋଗ୍ୟ।

ଏହି ଘଟଣାପରେ ଇଂରେଜ ପ୍ରଶାସକମାନେ ବହୁ କଠୋର ପଦକ୍ଷେପ ଗ୍ରହଣ କରିଥିଲେ। ପ୍ରଥମେ ୧୮୧୭ ମସିହା ଏପ୍ରିଲ ୧୪ ତାରିଖ ଦିନ ପୁରୀରେ ସାମରିକ ଆଇନ୍ ଜାରି କରାଯାଇଥିଲା। ତା'ର ଦୁଇଦିନ ପରେ ଖୋର୍ଦ୍ଧାରେ ଅବସ୍ଥାପିତ ସେନାଧ୍ୟକ୍ଷ କେପ୍ଟେନ ଫ୍ରିଭେର ପୁରୀକୁ ଯାଇଥିଲେ। ଏହି ଘଟଣା ପଛରେ ପୁରୀ-ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କ ହାତ ଥାଇପାରେ ବୋଲି ସନ୍ଦେହ କରି ଇଂରେଜ ପ୍ରଶାସକମାନେ ତାଙ୍କୁ ପୁରୀରୁ ସ୍ଥାନାନ୍ତରିତ କରି କଟକ ଆଣିବା ପାଇଁ ନିଷ୍ପତ୍ତି ନେଇଥିଲେ। ଏହି କାର୍ଯ୍ୟ ସମ୍ପାଦନ କରିବା ପାଇଁ ମେଜର ହାମିଲଟନ୍‌ଙ୍କୁ ପୁରୀ ପ୍ରେରଣ କରାଯାଇଥିଲା। ସେ ୧୮୧୭ ମସିହା ଏପ୍ରିଲ ୨୮ ତାରିଖ ଦିନ ଲେଫ୍ଟନାଣ୍ଟ ଲି ଫ୍ରିଭେରଙ୍କ ସହିତ ରାଜାଙ୍କୁ କଟକ ପ୍ରେରଣ କରିଥିଲେ। ମାତ୍ର ତାଙ୍କର ଆଶଙ୍କା ଥିଲା, ପିପିଲିଠାରେ ଦୁର୍ଦ୍ଧର୍ଷ ପାଇକବାହିନୀ କୌଣସି କିଛି ଅଘଟଣ ଘଟାଇ ପାରନ୍ତି। ସେଥିପାଇଁ ସତର୍କତା ମୂଳକ ପଦକ୍ଷେପ ସ୍ୱରୂପ କେପ୍ଟେନ୍ ଆର୍ମଷ୍ଟ୍ରଙ୍ଗଙ୍କୁ ସେଠାକୁ ପ୍ରେରଣ କରାଯାଇଥିଲା। ବାସ୍ତବରେ ସେମାନଙ୍କର ଆଶଙ୍କା ସତ୍ୟରେ ପରିଣତ ହୋଇଥିଲା। ପିପିଲିଠାରେ ପ୍ରାୟ ୨୫୦୦ ପାଇକ ଲେଫ୍ଟନାଣ୍ଟ ଫ୍ରିଭେର ଓ ତାଙ୍କ ସୈନ୍ୟବାହିନୀ ଉପରେ ଆକ୍ରମଣ କରିଥିଲେ ଠାକୁର ରାଜା ରୂପେ ସମ୍ମାନିତ ସେମାନଙ୍କର ପ୍ରିୟ ମଣିମା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ସେମାନଙ୍କ କବଳରୁ ନେଇଯିବା ପାଇଁ। ମାତ୍ର ଏଥର ସେମାନେ କୃତକାର୍ଯ୍ୟ ହୋଇ ପାରିନଥିଲେ। କେପ୍ଟେନ୍ ଆର୍ମଷ୍ଟ୍ରଙ୍ଗ ନିଜର ସୈନ୍ୟଚାଳନା କରି ପାଇକମାନଙ୍କ ଉପରେ ଚତୁର୍ଦ୍ଦିଗରୁ ଆକ୍ରମଣ କରିବା ଫଳରେ ସେମାନେ ଛତ୍ରଭଙ୍ଗ ଦେଇଥିଲେ। ସମ୍ଭବତଃ, କେପ୍ଟେନ୍ ଏହି ଘଟଣା ସଂଘଟିତ ହେବାର କିଛିଦିନ ପୂର୍ବରୁ ପିପିଲି ଆସି ଏକ ବିଧିବଦ୍ଧ ଯୋଜନା ପ୍ରସ୍ତୁତ କରିଥିଲେ। ସେ ଯାହା ହେଉ, ରାଜା ଓ ତାଙ୍କ ପୁତ୍ରଙ୍କ ସହ ଲି ଫ୍ରିଭେର କଟକରେ ପହଞ୍ଚିଥିଲେ। ବାରବାଟୀ ଦୁର୍ଗ ମଧ୍ୟରେ ଏକ ସ୍ୱତନ୍ତ୍ର କୋଠରୀ ନିର୍ମାଣ କରାଯାଇ ତା' ମଧ୍ୟରେ ସେମାନଙ୍କୁ ରଖାଯାଇଥିଲା। ଏହା ହେଉଛି ପାଇକ ବିଦ୍ରୋହରେ ପିପିଲି ଭୂଖଣ୍ଡର ଗୌରବୋଜ୍ଜ୍ୱଳ ଭୂମିକା।

ପାଇକ ବିଦ୍ରୋହ ଓଡ଼ିଶାରେ ଇଂରେଜ ବିରୋଧୀ ଆନ୍ଦୋଳନର ଶେଷ ଅଂକ ନଥିଲା, କି ପିପିଲିର ଭୂମିକାରେ ପରିସମାପ୍ତି ଘଟିନଥିଲା। ୧୮୨୭ ମସିହାରେ ତାପଙ୍ଗର ଦଳ ବେହେରା ମାଧବ ରାଉତରାୟ, ୧୮୩୫ରେ ବାଣପୁରର

Digitized by srujanika@gmail.com

କୃତ୍ତିବାସ ପାଟଶାଣୀ ମଧ୍ୟ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହର ଆହ୍ୱାନ ଦେଇଥିଲେ। ଏଥିରେ ଅତୀତରେ ଦୁଃସାହସିକତାର ସ୍ୱାକ୍ଷର ବହନ କରିଥିବା ପିପିଲି ଭୂଖଣ୍ଡର ପାଇକମାନେ ଯେ ଯୋଗ ଦେଇନଥିବେ ତା'ନୁହେଁ। ମାତ୍ର ସେ ସମ୍ବନ୍ଧରେ ସବିଶେଷ ତଥ୍ୟ ହସ୍ତଗତ ହୋଇନାହିଁ।

ଇଂରେଜ ରାଜତ୍ୱରେ ଓଡ଼ିଶାରେ ଏକ ଅଭିଶପ୍ତ ଅଧ୍ୟାୟ ଉନ୍ମୋଚିତ ହୋଇଥିଲା ୧୮୬୬ ମସିହାରେ। ସେହି ବର୍ଷ ଓଡ଼ିଶା ଏକ ନାହିଁନଥିବା ଦୁର୍ଭିକ୍ଷର ଶିକାର ହୋଇଥିଲା। ତାହା ନଅଙ୍କ ଦୁର୍ଭିକ୍ଷ ନାମରେ ଖ୍ୟାତ। ଏଥିରେ ଆଠଲକ୍ଷ ଲୋକ ମୃତ୍ୟୁ ମୃତ୍ୟୁ ବରଣ କରିଥିବାର ଜଣାଯାଏ।(୩)। ଦୁର୍ଭିକ୍ଷ ସମୟରେ ଓଡ଼ିଶାର କରୁଣ ଦୃଶ୍ୟର ଏକ ବର୍ଣ୍ଣନା ଦେଇ ଐତିହାସିକ ପ୍ୟାରିମୋହନ ଆଚାର୍ଯ୍ୟ ଲେଖିଛନ୍ତି,- ''ସେତେବେଳେ ଲୋକେ ଗେଣ୍ଡା, କାନିସିରି ପତ୍ର, ସାରୁନାଡ଼ ଆଦି ଖାଇ ପ୍ରାଣ ବଞ୍ଚାଉଥିଲେ। ଏକ ସେର ଚାଉଳର ଦାମ୍ ଥିଲା ଏକଟଙ୍କା। ଲୋକମାନେ ରାକ୍ଷସବତ ନିଜ ସନ୍ତାନର ମାଂସ ଭକ୍ଷଣ କରୁଥିବାର ମଧ୍ୟ ଦେଖାଯାଇଥିଲା।(୪)। ଅନ୍ୟାନ୍ୟ ଅଞ୍ଚଳପରି ପିପିଲି ଭୂଖଣ୍ଡ ମଧ୍ୟ ଏହି ଦୁର୍ଭିକ୍ଷର ଶରବ୍ୟ ହୋଇଥିଲା। ଅବଶ୍ୟ ଦୁର୍ଭିକ୍ଷ ପରେ ପରେ ଓଡ଼ିଶାରେ କେତୋଟି ଉନ୍ନତିମୂଳକ କାର୍ଯ୍ୟ ସମ୍ପାଦିତ ହୋଇଥିଲା। ତନ୍ମଧ୍ୟରୁ ପିପିଲି ଦେଇ ଗତି କରିଥିବା କଟକ-ପୁରୀ ରାସ୍ତାକୁ ପକ୍କାରାସ୍ତାରେ ରୂପାନ୍ତରିତ କରିବାଥିଲା ଅନ୍ୟତମ। ଏହା ଥିଲା ସେହି ୧୮୬୬ ମସିହାର କଥା। ମାତ୍ର ଅତ୍ୟନ୍ତ ପରିତାପର ବିଷୟ ଯେ ପ୍ରତିବର୍ଷ ସହସ୍ରାଧିକ ତୀର୍ଥ ଯାତ୍ରୀ ଭାରତର ବିଭିନ୍ନ ପ୍ରାନ୍ତରୁ ଏହି ରାସ୍ତାଦେଇ ପୁରୀକୁ ଯାଉଥିଲେ ମଧ୍ୟ ଇଂରେଜମାନେ ଓଡ଼ିଶା ଅଧିକାର କରିବାର ୬୩ ବର୍ଷପରେ ରାସ୍ତାଟିକୁ ପକ୍କା କରାଇଥିଲେ, ଯଦିଓ ସେମାନେ 'ତୀର୍ଥକର' ଆକାରରେ ତୀର୍ଥଯାତ୍ରୀମାନଙ୍କଠାରୁ ବହୁଅର୍ଥ ସଂଗ୍ରହ କରୁଥିଲେ। ତାହା ମଧ୍ୟ ହୋଇ ଥାଆନ୍ତା କି ନାହିଁ, ଯଦି ତତ୍‌କାଳୀନ କମିଶନର ଟମାସ ଏଡ୍‌ଓ୍ୟାର୍ଡ଼ ରେଭେନ୍‌ସା ଏ ଦିଗରେ ଯତ୍ନବାନ ହୋଇଥାନ୍ତେ।

ଇଂରେଜ ରାଜତ୍ୱରେ ୧୮୦୬ ମସିହାରେ ଇଂରେଜ ପ୍ରଶାସକ ପିପିଲିଠାରେ ଏକ ଥାନା ପ୍ରତିଷ୍ଠା କରିଥିଲେ। ଏହାଥିଲା ପୁରୀ ଜିଲ୍ଲାରେ ପ୍ରତିଷ୍ଠିତ ୬ଟି ଥାନା ମଧ୍ୟରୁ ଅନ୍ୟତମ। ଅନ୍ୟ ପାଞ୍ଚଟି ହେଲା- ପୁରୀସହରରେ ଥିବା ପୁରୀ

---

(୩) ପ୍ୟାରୀମୋହନ ଆଚାର୍ଯ୍ୟ : ଓଡ଼ିଶାର ଇତିହାସ - ପୃ.୧୫୧

(୪) ଏଜନ

Digitized by srujanika@gmail.com

ସହର ଥାନା, ପୁରୀ ସଦର ଥାନା, ଖୋର୍ଦ୍ଧା, ବାଣପୁର ଓ ଗୋପ । ୧୯୦୬ରେ ପିପିଲି ଥାନା, ଅଧୀନରେ ୪ ଗୋଟି ପୋଲିସ ଫାଣ୍ଡି ସ୍ଥାପନ କରାଯାଇଥିଲା । ସେ ଗୁଡ଼ିକ ହେଲା- ବାଲିପାର୍ଟଣା, ବାଲିଅନ୍ତା, ନିମାପଡ଼ା ଓ ଡେଲାଙ୍ଗ । ପ୍ରତ୍ୟେକଟି ଏବେ ଗୋଟିଏ ଗୋଟିଏ ଥାନାରେ ପରିଣତ ହୋଇଛି । ପ୍ରତ୍ୟେକ ଥାନାରେ ଜଣେ ଲେଖାଏଁ ଦାରୋଗା ମୁଖ୍ୟ ଭାବରେ ନିଯୁକ୍ତି ପାଇ ତାଙ୍କ ଅଧୀନରେ ଜଣେ ମୋହରର, ଜଣେ ଜମାଦାର ଓ ୧୦ ଜଣ ଲେଖାଏଁ ବରକନ୍ଦାଜ ନିଯୁକ୍ତ ହୋଇଥିଲେ । ସେମାନଙ୍କ ବ୍ୟତୀତ କେତେଜଣ ଚୌକିଦାର ମଧ୍ୟ ନିଯୁକ୍ତି ପାଇଥିଲେ । ଦାରୋଗା ମାସିକ ୨୫ ଟଙ୍କା ବେତନ ପାଉଥିବା ସ୍ଥଳେ ମୋହରର ଓ ଜମାଦାରଙ୍କୁ ୮ଟଙ୍କା ଓ ବରକନ୍ଦାଜଙ୍କୁ ୪ଟଙ୍କା କରି ବେତନ ଦିଆଯାଉଥିଲା । ଚୌକିଦାରମାନଙ୍କୁ ଜାଗିରି ଜମି ଦିଆଯାଇଥିଲା । ୧୮୯୫ ମସିହାରେ ପିପିଲିରେ ଏକ ସବ୍ ରେଜିଷ୍ଟ୍ରି ଅଫିସ ଉଦ୍‌ଘାଟିତ ହୋଇଥିଲା । ପୁରୀ ଜିଲ୍ଲାରେ ପ୍ରତିଷ୍ଠିତ ୪ ଗୋଟି ସବ୍‌ରେଜିଷ୍ଟ୍ରି ଅଫିସ ମଧ୍ୟରୁ ଏହାଥିଲା ଅନ୍ୟତମ । ଅନ୍ୟ ତିନୋଟି ଅଫିସ ଉନ୍ମୋଚିତ ହୋଇଥିଲା- ପୁରୀ ସହର, ଖୋର୍ଦ୍ଧା ଓ ଗୋପଠାରେ । ସେହିସବୁ ଅଫିସରେ ହାରାହାରି ରେଜିଷ୍ଟ୍ରି ହୋଇଥିବା କବଲା ମଧ୍ୟରୁ ପିପିଲି ଅଫିସରେ ତା'ର ସଂଖ୍ୟା ଥିଲା ସର୍ବାଧିକ । ୧୯୦୬ ମସିହାରେ ଜିଲ୍ଲାର ୪ଟି ଯାକ ରେଜିଷ୍ଟ୍ରି ଅଫିସରେ ମୋଟ ରେଜିଷ୍ଟ୍ରି ହୋଇଥିବା କବଲାର ସଂଖ୍ୟା ଥିଲା ୧୯,୬୧୨ । ତନ୍ମଧ୍ୟରୁ କେବଳ ମାତ୍ର ପିପିଲି ଅଫିସରେ ରେଜିଷ୍ଟ୍ରି ହୋଇଥିଲା ୬୫୬୯ ।(୫)। ସେହିପରି ୧୯୦୬ ମସିହାରେ ପିପିଲିରେ ଏକ ଦାତବ୍ୟ ଚିକିତ୍ସାଳୟ ସ୍ଥାପନ କରାଯାଇଥିଲା । ତା' ପୂର୍ବରୁ ପୁରୀ ଜିଲ୍ଲାରେ ମାତ୍ର ଦୁଇଟି ଦାତବ୍ୟ ଚିକିତ୍ସାଳୟ ରହିଥିଲା । ଗୋଟିଏ ୧୮୩୬ରେ ପୁରୀ ସହରରେ ପ୍ରତିଷ୍ଠିତ ପୁରୀ ତୀର୍ଥ ଯାତ୍ରୀ ଚିକିତ୍ସାଳୟ । ଅନ୍ୟଟି ଥିଲା ୧୮୬୪ରେ ପ୍ରତିଷ୍ଠିତ ଖୋର୍ଦ୍ଧା ଚିକିତ୍ସାଳୟ । ସେହି ୧୯୦୬ ମସିହାରେ ପିପିଲି ବ୍ୟତୀତ ବାଣପୁର, ଭୁବନେଶ୍ୱର, ଗୋପ, ସାତପଡ଼ା ଓ ସତ୍ୟବାଦୀଠାରେ ଚିକିତ୍ସାଳୟମାନ ପ୍ରତିଷ୍ଠା କରାଯାଇଥିଲା । ତନ୍ମଧ୍ୟରୁ ବାଣପୁର, ଗୋପ ଓ ଭୁବନେଶ୍ୱରରେ ୬ଟି ଲେଖାଏଁ ଶଯ୍ୟା, ସାତପଡ଼ା ଓ ସତ୍ୟବାଦୀରେ ୮ଟି କରି ଶଯ୍ୟା ରହିଥିବା ସ୍ଥଳେ ପିପିଲିରେ ୧୪ଟି ଶଯ୍ୟାର ବ୍ୟବସ୍ଥା କରାଯାଇଥିଲା ।(୬)। ଏଥିରୁ ପିପିଲିର ଗୁରୁତ୍ୱପୂର୍ଣ୍ଣ ଅବସ୍ଥିତି ଅନୁମାନ କରାଯାଇପାରେ ।

---

(୫) Puri District Gazetteers, p.225

(୬) ଏକନ

Digitized by srujanika@gmail.com

## ଇଂରେଜ ରାଜତ୍ୱରେ ପିପିଲିର ଜମିଦାର :

ଏହି ପରିପ୍ରେକ୍ଷୀରେ ଇଂରେଜ ରାଜତ୍ୱରେ ପିପିଲିରେ ଥିବା ଜମିଦାରଙ୍କ ଉପରେ କିଛି ଆଲୋକପାତ କରିବା ପ୍ରାସଙ୍ଗିକ ହେବ। ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ପ୍ରତ୍ୟେକ ଜିଲ୍ଲାକୁ କେତୋଟି ପ୍ରଗଣାରେ ବିଭକ୍ତ କରାଇ ସେଥିରୁ ରାଜସ୍ୱ ଆଦାୟ କରୁଥିଲେ। ପୁରୀ ଜିଲ୍ଲାକୁ ବିଭକ୍ତ କରାଯାଇଥିଲା ୪ ଗୋଟି ପ୍ରଗଣାରେ। ତନ୍ମଧ୍ୟରୁ ବର୍ତ୍ତମାନର ପିପିଲି ଭୂଖଣ୍ଡ ତିନିଗୋଟି ପ୍ରଗଣାର ଅନ୍ତର୍ଭୁକ୍ତ ଥିଲା। ସେଗୁଡ଼ିକ ହେଲା- କୋଠଦେଶ, କୋଠ-ରାହାଙ୍ଗ ଓ ଲିମ୍ବାଇ। ପୁନଶ୍ଚ ରାଜସ୍ୱ ଆଦାୟ ନିମନ୍ତେ ପ୍ରତ୍ୟେକ ପ୍ରଗଣାକୁ କେତୋଟି ତଉଜୀରେ ବିଭକ୍ତ କରାଯାଇଥିଲା। ପିପିଲି ଭୂଖଣ୍ଡର ସମସ୍ତ ଜମି ୬୧ ଓ ୬୨ ନମ୍ବର ତଉଜୀରେ ଅନ୍ତର୍ଭୁକ୍ତ ଥିଲା। ଅବଶ୍ୟ ପ୍ରଥମେ ସବୁଜମି ଥିଲା- ୬୧ ନମ୍ବର ତଉଜୀ ଅଧୀନରେ। ଏଥିରେ ମୋଟ ଗ୍ରାମର ସଂଖ୍ୟା ଥିଲା ୫୭। ସେଗୁଡ଼ିକ ଧଉଳି ଠାରୁ ସାକ୍ଷୀଗୋପାଳ ନିକଟସ୍ଥ ବାସୁକେରା ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା।

ସେହି ସମୟରେ ପିପିଲିରେ ୩ଜଣ ବରିଷ୍ଠ ଜମିଦାର ଥିଲେ। ସେମାନେ ହେଲେ ଚୌଧୁରୀ ଜଗନ୍ନାଥ ଦାସ, ସନ୍ତୋଷ କୁମାର ବନ୍ଦୋପାଧ୍ୟାୟ ଓ ପୂର୍ଣ୍ଣଚନ୍ଦ୍ର ଆଢ୍ୟ। ପ୍ରଥମେ ଚୌଧୁରୀ ଜଗନ୍ନାଥ ଦାସ ୬୧ ନମ୍ବର ତଉଜୀ ପାଇଥିଲେ। ମାତ୍ର ଘଟଣାଚକ୍ରରେ ତାଙ୍କ ତଉଜୀଟି ଦୁଇଭାଗରେ ବିଭକ୍ତ ହୋଇଥିଲା। ଘଟଣାଟି ଥିଲା ନିମ୍ନ ପ୍ରକାରର। ସେତେବେଳେ ସୂର୍ଯ୍ୟାସ୍ତ ଆଇନ୍ ବଳରେ କୌଣସି ଜମିଦାର ନିଜର ଧାର୍ଯ୍ୟ ଜମା ଏକ ନିର୍ଦ୍ଦିଷ୍ଟ ଦିନର ସୂର୍ଯ୍ୟାସ୍ତ ପୂର୍ବରୁ ଇଂରେଜ କର୍ତ୍ତୃପକ୍ଷଙ୍କ ନିକଟରେ ଦାଖଲ କରି ନପାରିଲେ ତାଙ୍କ ଜମିଦାରୀ ନିଲାମ ହୋଇଯିବାର ବ୍ୟବସ୍ଥା ରହିଥିଲା। ଜମାର ପରିମାଣ ୫୦୦୦ ଟଙ୍କାରୁ ଊର୍ଦ୍ଧ୍ୱ ହେଲେ ତାହା କଲିକତାଠାରେ ଓ ତା'ଠାରୁ କମ୍ ହୋଇଥିଲେ କଟକସ୍ଥିତ ବୋର୍ଡ଼ ଅଫ୍ ରେଭିନ୍ୟୁ ଅଫିସରେ ଦାଖଲ କରାଯାଉଥିଲା। ଚୌଧୁରୀ ଜଗନ୍ନାଥ ଦାସଙ୍କ ଜମାର ପରିମାଣ ଥିଲା ୫୦୦୦ ଟଙ୍କାରୁ ଊର୍ଦ୍ଧ୍ୱ। ତେଣୁ ତାଙ୍କୁ କଲିକତା ଯିବାକୁ ପଡୁଥିଲା। ସେ ଥିଲେ ଜଣେ ଦୟାର୍ଦ୍ର ଓ ଉଦାର ଚରିତ୍ରର ବ୍ୟକ୍ତି। ମୋକଦ୍ଦମା ବା ଅନ୍ୟ କୌଣସି କଠୋର ପଦକ୍ଷେପ ଗ୍ରହଣ କରି ପ୍ରଜାମାନଙ୍କ ଠାରୁ ରାଜସ୍ୱ ଆଦାୟ କରିବାର ସେ ପକ୍ଷପାତୀ ନଥିଲେ। ବର୍ଷେ ରାଜସ୍ୱ ଅନାଦାୟ ହେତୁ ତାଙ୍କ ଜମିଦାରୀ ନିଲାମ ହୋଇଯିବାର ଆଶଙ୍କା ଥିଲା। ତେଣୁ ସେ ଜମାଦାଖଲ ପାଇଁ ତାଙ୍କ ପ୍ରଜାମାନଙ୍କ ଠାରୁ ସାହାଯ୍ୟ ମାଗି ନିରାଶ ହୋଇଥିଲେ। ନିଲାମ ତାରିଖ ପୂର୍ବରୁ ଦିନେ ସେ ସବାରୀରେ କଲିକତା ଯାଉଥାନ୍ତି। ସାଥୀରେ ଥାଆନ୍ତି

Digitized by srujanika@gmail.com

ପମସରାର ବଡ଼ ପ୍ରଜା ଗୌରାଙ୍ଗ ପ୍ରଧାନ ଓ କୁଳମଣି ପ୍ରଧାନ। ସେ ମାନସିକ ବ୍ୟଥା ଓ ଦୁଃଖରେ ଭାଙ୍ଗି ପଡ଼ିଥା'ନ୍ତି। ଯାତ୍ରା ପଥରେ ଜଗନ୍ନାଥ ସଡ଼କ ପାର୍ଶ୍ୱରେ ଦଇସାହୁପାଟଣା ନିକଟସ୍ଥ ଗୁରୁସାହି ଗ୍ରାମର ଜଗନ୍ନାଥ ଜେନା ନାମକ ଜନୈକ ପ୍ରଜା ତାଙ୍କୁ ୨୭ ଟଙ୍କା ଦେଇଥିଲେ, ନିଲାମ ରକ୍ଷା କରିବା ପାଇଁ। ଜଗନ୍ନାଥ ଜେନା ଜଗନ୍ନାଥ ଗୁରୁ ନାମରେ ପରିଚିତ ଥିଲେ। ଗୁରୁଙ୍କର ଏହି ଅଯାଚିତ ସାହାଯ୍ୟ ଗ୍ରହଣ ନକରି ଚୌଧୁରୀ ନମ୍ରତାର ସହ କହିଲେ- ''ତୁମଠାରୁ ଏ ୨୭ ଟଙ୍କା ନେଇ ମୁଁ କଅଣ ଜମିଦାରୀ ରକ୍ଷା କରି ପାରିବି? ବରଂ ମୋ ଜମିଦାରୀ ସହିତ ତୁମର ଏ ୨୭ ଟଙ୍କା ଚାଲିଯିବ।'' ତା'ର ଉତ୍ତରରେ ଜଗନ୍ନାଥ ଜେନା କହିଲେ, ''ଆପଣଙ୍କର ଏତେବଡ଼ ଜମିଦାରୀ ଚାଲିଯିବ- ଆପଣ ବଞ୍ଚିପାରିବେ। ଆଉ ମୋର ଏ ସତେଇଶ ଟଙ୍କା ଚାଲିଗଲେ କ'ଣ ମୁଁ ବଞ୍ଚିପାରିବି ନାହିଁ?'' ଚୌଧୁରୀଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ। ସେ ଜେନାଙ୍କଠାରୁ ସତେଇଶ ଟଙ୍କା ଗ୍ରହଣ କରି କଲିକତା ଅଭିମୁଖେ ଯାତ୍ରା କରିଥିଲେ।

ଚୌଧୁରୀ କଲିକତାରେ ପହଞ୍ଚି କଲିକତା ଉଚ୍ଚ ନ୍ୟାୟାଳୟର ପ୍ରଖ୍ୟାତ ଓକିଲ ସନ୍ତୋଷ କୁମାର ବନ୍ଦୋପାଧ୍ୟାୟଙ୍କ ସହିତ ଏ ବିଷୟରେ ଆଲୋଚନା କରିବା ପରେ ଏକ ପ୍ରକାର ମୌଖିକ ଚୁକ୍ତି ହୋଇଥିଲା ଯେ, ଯଦି ସେ ଜମିଦାରୀ ନିଲାମରୁ ରକ୍ଷା କରି ପାରନ୍ତି, ତେବେ ସେ ତା'ର ଅର୍ଦ୍ଧେକ ଅଂଶ ନେବେ। ନିଲାମକୁ ଅନ୍ୟାୟ ବୋଲି ଯୁକ୍ତି ଦର୍ଶାଇ ଏଥିରେ ବନ୍ଦୋପାଧ୍ୟାୟ କୃତକାର୍ଯ୍ୟ ହୋଇଥିଲେ। ଜମିଦାରୀ ନିଲାମ ବନ୍ଦ ହୋଇଥିଲା। ତେଣୁ ପୂର୍ବଚୁକ୍ତି ଅନୁଯାୟୀ ଚୌଧୁରୀଙ୍କ ଜମିଦାରୀ ଦୁଇ ଭାଗରେ ବିଭକ୍ତ ହୋଇଥିଲା। ତୌଜୀ ନମ୍ବର ୬୧କୁ ରଖିଲେ ସନ୍ତୋଷ କୁମାର ଓ ୬୨ ନମ୍ବର ତୌଜୀ ନୂତନ ଭାବରେ ସୃଷ୍ଟି କରାଯାଇ ତାକୁ ରଖିଲେ ଚୌଧୁରୀ। କଥାଟି ସେତିକିରେ ସରିନଥିଲା।

ଚୌଧୁରୀ କଲିକତାରୁ ଫେରିବା ବାଟରେ ଦଇସାହୁପାଟଣା ଠାରେ ଅଟକି ସତେଇଶ ଟଙ୍କା ସାହାଯ୍ୟ ଦେଇଥିବା ଜଗନ୍ନାଥ ଜେନାଙ୍କୁ ଡକାଇଥିଲେ। ତାଙ୍କ ସାହାଯ୍ୟର ପ୍ରତିଦାନ ସ୍ୱରୂପ ଚୌଧୁରୀ ୬୨ ନମ୍ବର ତୌଜୀ ଅନ୍ତର୍ଗତ ଓରକଳପଡ଼ା କଦମରସୁଲ ମଧ୍ୟରେ ୫୪ ଏକର ଜମି ତାଙ୍କୁ ଦାନ କରିଥିଲେ। ଜଗନ୍ନାଥ ଜେନାଙ୍କୁ ଗୁରୁବୋଲି ସମସ୍ତେ ଡାକୁଥିବାରୁ ତାଙ୍କ ଗ୍ରାମର ନାମ ରଖାଗଲା ଗୁରୁସାହି। ଏବେ ମଧ୍ୟ ଓରକଳପଡ଼ା ନିକଟବର୍ତ୍ତୀ ଗୁରୁସାହି ଗ୍ରାମଟି ବିଦ୍ୟମାନ। ଜଗନ୍ନାଥ ଗୁରୁଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ରାମଗୁରୁ ସମସ୍ତ ସମ୍ପତ୍ତି ଭୋଗ ଦଖଲ କରିଥିଲେ। ସେହିପରି ଚୌଧୁରୀ ଜଗନ୍ନାଥ ଦାସଙ୍କ ମୃତ୍ୟୁ ଅନ୍ତେ ତାଙ୍କ

Digitized by srujanika@gmail.com

ପୁତ୍ର ଚୌଧୁରୀ ଗୋବିନ୍ଦ ଚନ୍ଦ୍ର ଦାସ ଜମିଦାରୀର ମାଲିକ ହୋଇଥିଲେ। ଜଗନ୍ନାଥ ଦାସଙ୍କ କନିଷ୍ଠ ଭ୍ରାତାଙ୍କ ନାତି ନୀଳକଣ୍ଠ ଦାଶଙ୍କ ପର୍ଯ୍ୟନ୍ତ ଏହି ଜମିଦାରୀ ଚୌଧୁରୀ ପରିବାରର ମାଲିକାନା ସ୍ୱତ୍ୱ ହୋଇ ରହିଥିଲା। ତାଙ୍କପରେ ଜମିଦାରୀ ଭାଗଭାଗ ହୋଇ ବିକ୍ରି ହୋଇ ଗଲା। ତନ୍ମଧ୍ୟରୁ କେତେକ ଭାଗ କ୍ରୟ କରିଥିଲେ ପୁରୀର ହିତେଶ ଚନ୍ଦ୍ର ମିତ୍ର ଓ ଜାଆଁଳା ମୁଣ୍ଡ ମୁହାଣର କୈଳାସ ଚନ୍ଦ୍ର ସାମନ୍ତରାୟ। ହିତେଶ ଚନ୍ଦ୍ରଙ୍କ ପୁତ୍ର କମଳେଶ ଚନ୍ଦ୍ର ମିତ୍ର ପୁରୀରେ ଅବସ୍ଥାନ କରୁଥିବାରୁ ସେ ତାଙ୍କ ଜମିଦାରୀର କିଛି ଅଂଶ ପିପିଲିର ସାବୁଦ୍ଦିନଙ୍କୁ ବିକ୍ରୟ କରିଥିଲେ। ମାତ୍ର ସାବୁଦ୍ଦିନ ସମ୍ପୂର୍ଣ୍ଣ ଟଙ୍କା ଦେଇ ନପାରିବାରୁ କମଳେଶ ମିତ୍ର ଓ ସାବୁଦ୍ଦିନଙ୍କ ପୁତ୍ର ସେକ୍ ମହମ୍ମଦଙ୍କ ମଧ୍ୟରେ ଏକ ମକଦ୍ଦମା ହୋଇଥିଲା। ମକଦ୍ଦମା ଚାଲୁଥିବା ସମୟରେ ସେକ୍ ମହମ୍ମଦଙ୍କର ଅକାଳ ମୃତ୍ୟୁ ଘଟିବାରୁ କମଳେଶ ମିତ୍ର ଓ ସେକ୍ ମହମ୍ମଦଙ୍କ ବଂଶଧର ମଧ୍ୟରେ ଏକ ଆପୋଷ ମିଳାମିଶା ହୋଇ ସମସ୍ତ ସମ୍ପତ୍ତି ପୁନରାୟ କମଳେଶ ଚନ୍ଦ୍ର ମିତ୍ର ଫେରି ପାଇଥିଲେ। ଏ ହେଲା ଜଣେ ଜମିଦାରଙ୍କ କଥା।

ଅନ୍ୟତମ ଜମିଦାର ସନ୍ତୋଷ କୁମାର ବନ୍ଦୋପାଧ୍ୟାୟ ଥିଲେ କଲିକତାର ଜଣେ ଲବ୍ଧ ପ୍ରତିଷ୍ଠ ଓକିଲ। ତାଙ୍କ ମାତାଙ୍କ ନାମ ସତ୍ୟବାଳା ଦେବୀ। ସେ ଘଟଣାଚକ୍ରରେ ୨୯ଟି ଗ୍ରାମ ବିଶିଷ୍ଟ ପିପିଲିର ୬୧ ନମ୍ବର ତୌଜୀର ଜମିଦାରୀ ଲାଭ କରିଥିଲେ। ସନ୍ତୋଷ କୁମାରଙ୍କ ମୃତ୍ୟୁପରେ ତାଙ୍କ ସ୍ତ୍ରୀ ଅନ୍ନପୂର୍ଣ୍ଣା ଦେବୀ ପିପିଲିର ଜମିଦାର ହୋଇଥିଲେ। ତାଙ୍କ ଜମିଦାରୀ ୧୯୫୩ ମସିହା ନଭେମ୍ବର ୨୭ ତାରିଖ ପର୍ଯ୍ୟନ୍ତ ରହିଥିଲା। ପିପିଲିସ୍ଥିତ ତାଙ୍କ କଚେରୀ ଘର ଏବେ ପିପିଲି ତହସିଲଦାରଙ୍କ ବାସଭବନ (କ୍ୱାଟର୍ସ)ରେ ପରିଣତ ହୋଇଛି।

ସେହିପରି ପିପିଲିର ଅନ୍ୟତମ ଜମିଦାର ଥିଲେ ପୂର୍ଣ୍ଣଚନ୍ଦ୍ର ଆଢ୍ୟ। ୩୧୭ ଓ ୩୧୮ ନମ୍ବର ତୌଜୀ ତାଙ୍କ ଜମିଦାରୀରେ ଅନ୍ତର୍ଭୁକ୍ତ ହୋଇଥିଲା। ସବୁ ମୌଜାରେ ତାଙ୍କ ଜମିଦାରୀ ସୂତାଏ ସୂତାଏ (ସାମାନ୍ୟ ଅଂଶ) ଥିବାରୁ ତାଙ୍କ ଜମିଦାରୀର ନାମ ଥିଲା 'ସୂତାନାଗର' ଜମିଦାରୀ। କୋଠଦେଶ ପ୍ରଗଣାର ୧୬ କୋଶ, କୋଠରାହାଙ୍ଗର ୮ କୋଶ ଓ ଲିମ୍ବାଇରେ ୪ କୋଶ ତାଙ୍କ ଜମିଦାରୀରେ ଅନ୍ତର୍ଭୁକ୍ତ ହୋଇଥିଲା। ଜମିଦାର ପୂର୍ଣ୍ଣଚନ୍ଦ୍ର ଆଢ୍ୟଙ୍କ ମୃତ୍ୟୁପରେ ତାଙ୍କ ଦୁଇପୁଅ ବିମଳା ଚରଣ ଆଢ୍ୟ ଓ ଗୋପୀନାଥ ଆଢ୍ୟ ଜମିଦାର ହୋଇଥିଲେ। ଜମିଦାରୀ ଉଚ୍ଛେଦ ପର୍ଯ୍ୟନ୍ତ ସେମାନେ ଜମିଦାର ଭାବେ କାର୍ଯ୍ୟ କରିଥିଲେ। ସେମାନେ ସମସ୍ତେ ଥିଲେ ପ୍ରଜାବତ୍ସଳ। ବର୍ତ୍ତମାନର ପିପିଲି ଜବାହର ବିଦ୍ୟାପୀଠକୁ

Digitized by srujanika@gmail.com

ସେମାନେ ଏ ୬.୫୦ ଡିସ୍‌ମିଲ୍ ଜମି ନାମମାତ୍ର ମୂଲ୍ୟରେ ବିକ୍ରି କରି ଥିବାର ଜଣାଯାଏ ।

## ୧୯୩୬ ପରେ ପିପିଲିର ରାଜନୈତିକ ଚିତ୍ର

୧୯୩୬ ମସିହା ଏପ୍ରିଲ ପହିଲା ଦିନ ବହୁ ଆକାଂକ୍ଷିତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ପରେ ପରେ ଆରମ୍ଭ ହୋଇଥିଲା ରାଜ୍ୟରେ ପ୍ରଥମ ନିର୍ବାଚନ । ଏହା ୧୯୩୭ ମସିହା ଜାନୁୟାରୀ ୧୮ରୁ ଆରମ୍ଭ ହୋଇ ଜାନୁୟାରୀ ୨୩ ତାରିଖ ଦିନ ସମାପ୍ତ ହୋଇଥିଲା । ସେତେବେଳେ ୬ଟି ଜିଲ୍ଲାକୁ ନେଇ ଗଠିତ ଓଡ଼ିଶା ବିଧାନସଭାର ସଭ୍ୟ ସଂଖ୍ୟା ଥିଲା ୬୦ । ତନ୍ମଧ୍ୟରୁ ୫୬ ଜଣ ଥିଲେ ନିର୍ବାଚିତ ସଭ୍ୟ ଓ ଅନ୍ୟ ୪ ଜଣଙ୍କୁ ଛୋଟଲାଟ (ରାଜ୍ୟପାଳ) ସଂଖ୍ୟାଲଘୁ ସମ୍ପ୍ରଦାୟ ମଧ୍ୟରୁ ମନୋନୟନ କରୁଥିଲେ । ସେତେବେଳେ ପୁରୀ ଜିଲ୍ଲା ୫ଟି ନିର୍ବାଚନ ମଣ୍ଡଳୀରେ ବିଭକ୍ତ ହୋଇଥିଲା । ସେଗୁଡ଼ିକ ଥିଲା ପୂର୍ବ ପୁରୀ, ଦକ୍ଷିଣ ପୁରୀ, ଉତ୍ତର ପୁରୀ, ପୂର୍ବ ଖୋର୍ଦ୍ଧା ଓ ପଶ୍ଚିମ ଖୋର୍ଦ୍ଧା । ତନ୍ମଧ୍ୟରୁ ଉତ୍ତର ପୁରୀ ଥିଲା ଯୁଗ୍ମ ସଦସ୍ୟ ନିର୍ବାଚନ ମଣ୍ଡଳୀ । ସେଠାରୁ ତପସିଲ ଜାତିର ଜଣେ ସଦସ୍ୟ ପ୍ରତିନିଧିତ୍ୱ କରୁଥିଲେ । ପିପିଳି ଥାନା ଥିଲା ଏହି ଉତ୍ତର ପୁରୀ ନିର୍ବାଚନ ମଣ୍ଡଳୀର ଅଂଶବିଶେଷ । ଉପରୋକ୍ତ ନିର୍ବାଚନରେ ପୁରୀ ମାର୍କଣ୍ଡେଶ୍ୱର ସାହିର ଜଗନ୍ନାଥ ମିଶ୍ର ପିପିଲି ସମେତ ଉତ୍ତର ପୁରୀ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । ତପସିଲଭୁକ୍ତ ଜାତିରୁ ବିଶିବିଭାର ପ୍ରତିନିଧିତ୍ୱ କରୁଥିଲେ ।

୧୯୪୬ ମସିହା ଏପ୍ରିଲ ୪ ଓ ୫ ତାରିଖ ଦିନ ଓଡ଼ିଶା ବିଧାନସଭା ପାଇଁ ଦ୍ୱିତୀୟ ନିର୍ବାଚନ ହୋଇଥିଲା । ନିର୍ବାଚନ ଦଳଭିତ୍ତିକ ହୋଇଥିଲେ ମଧ୍ୟ ମୋହର ମାରିବା ବା ନିର୍ବାଚନ ସଂକେତର ବ୍ୟବହାର କରାଯାଇନଥିଲା । ସେହି ଯୁଗ୍ମ ସଦସ୍ୟ ବିଶିଷ୍ଟ ଉତ୍ତର ପୁରୀ ନିର୍ବାଚନ ମଣ୍ଡଳୀ ଏଥର ବାଲିଅନ୍ତା, ବାଲିପାଟଣା, ପିପିଲି, ଡେଲାଙ୍ଗ ଓ ସତ୍ୟବାଦୀ ଥାନାକୁ ନେଇ ଗଠିତ ହୋଇଥିଲା । ଏହି ନିର୍ବାଚନରେ ସତ୍ୟବାଦୀ ଥାନା ଅନ୍ତର୍ଗତ ଶ୍ରୀରାମଚନ୍ଦ୍ରପୁର ଗ୍ରାମର ଲିଙ୍ଗରାଜ ମିଶ୍ର ଓ ଚୌଦ୍ୱାରର ହରିଜନ ପ୍ରାର୍ଥୀ ପୂର୍ଣ୍ଣାନନ୍ଦ ସାମଲ ଅପ୍ରତିଦ୍ୱନ୍ଦୀ ଭାବେ ନିର୍ବାଚିତ ହୋଇଥିଲେ । ତନ୍ମଧ୍ୟରୁ ଲିଙ୍ଗରାଜ ମିଶ୍ର ପ୍ରଥମ ଶିକ୍ଷାମନ୍ତ୍ରୀ ହେବାର ଗୌରବ ଅର୍ଜନ କରିପାରିଥିଲେ ।

Digitized by srujanika@gmail.com

# ସ୍ୱାଧୀନତା ସଂଗ୍ରାମର ଇତିହାସରେ ପିପିଲି

ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ପରି ପିପିଲି ଭୂଖଣ୍ଡ ଐତିହାସିକ ସ୍ୱାଧୀନତା ସଂଗ୍ରାମରେ ଏକ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା। ଅବଶ୍ୟ କେତୋଟି ପର୍ଯ୍ୟାୟରେ ଏହାର ଅବଦାନ ଥିଲା ଖୁବ୍ ନଗଣ୍ୟ। ତଥାପି ମୋଟା ମୋଟି ଭାବେ ଦେଖିବାକୁ ଗଲେ ପିପିଲିର ଅବଦାନ ସେପରି କିଛି ନ୍ୟୁନ ନଥିଲା। ବିଶେଷତଃ ଗାନ୍ଧିଜୀଙ୍କ ପଦଯାତ୍ରାରେ ପିପିଲିର ଭୂମିକା ଥିଲା ଉଲ୍ଲେଖଯୋଗ୍ୟ। ସେ ସବୁର ଏକ ସଂକ୍ଷିପ୍ତ ସୂଚନା ନିମ୍ନରେ ପ୍ରଦାନ କରାଯାଇଛି।

୧୮୫୭ ମସିହାରେ ସଂଘଟିତ ଭାରତର ମହାନ୍ ବିଦ୍ରୋହଠାରୁ ଭାରତରେ ସ୍ୱାଧୀନତା ସଂଗ୍ରାମର ଇତିହାସ ଆରମ୍ଭ ବୋଲି କୁହାଯାଇପାରେ। ଅବଶ୍ୟ ଇଂରେଜ ଐତିହାସିକଗଣ ଏହି ବିଦ୍ରୋହରେ କେବଳ ମାତ୍ର ସିପାହୀମାନେ ଅଂଶ ଗ୍ରହଣ କରିଥିବାର ଦର୍ଶାଇ ଏହାକୁ ସିପାହୀ ବିଦ୍ରୋହର ଆଖ୍ୟା ଦେଇଥିଲେ। ଏହା ପ୍ରକୃତ ପକ୍ଷେ ଥିଲା ଏକ ମହାନ ବିଦ୍ରୋହ ଓ ସ୍ୱାଧୀନତା ସଂଗ୍ରାମ ନାଟକର ପ୍ରଥମ ଅଙ୍କ। ଘଟଣାଟିର ନ୍ୟୁନତା ପ୍ରତିପାଦନ କରିବା ପାଇଁ ଇଂରେଜ ଐତିହାସିକ ଏପରି ଏକ ନାମକରଣ କରିଛନ୍ତି। ଏହି ବିଦ୍ରୋହରେ ଭାରତବର୍ଷର ଅନ୍ୟାନ୍ୟ ଅଂଚଳପରି ଓଡ଼ିଶା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା। ଏଠାରେ ମଧ୍ୟ ବହୁ ବ୍ୟକ୍ତି ବିଦ୍ରୋହର ନେତୃତ୍ୱ ନେଇଥିଲେ। ତନ୍ମଧ୍ୟରୁ ପୁରୀର ଚାଖି ଖୁଣ୍ଟିଆଙ୍କ ନାମ ଉଲ୍ଲେଖ ଯୋଗ୍ୟ। ସେ ମଧ୍ୟ ଚନ୍ଦନ ହଜୁରୀ ନାମରେ ଖ୍ୟାତ। ସେ ଥିଲେ ଜଣେ ପଣ୍ଡା। ପ୍ରତି ବର୍ଷ ଉତ୍ତର ଭାରତ ଯାଇ ଜଗନ୍ନାଥ ଦର୍ଶନ କରିବା ନିମନ୍ତେ ସେ ସିପାହୀମାନଙ୍କୁ ପ୍ରୋତ୍ସାହିତ କରୁଥିଲେ। ତେଣୁ ସେ ଅଂଚଳରେ ସେ ସିପାହୀପଣ୍ଡା ନାମରେ ପରିଚିତ ଥିଲେ। ବିଶେଷତଃ ଲକ୍ଷ୍ନୌସ୍ଥିତ ତ୍ରୟୋଦଶ ବାଟାଲିୟନ୍‌ର ସିପାହୀମାନଙ୍କ ସହ ତାଙ୍କର ଯୋଗସୂତ୍ର ରହିଥିଲା। ସେତେବେଳେ ଓଡ଼ିଶାରେ ରେଳପଥ ନିର୍ମିତ ହୋଇ ନଥିଲା। ଏହାର ନିର୍ମାଣ କାର୍ଯ୍ୟ ୧୮୯୫ରେ ଆରମ୍ଭ କରାଯାଇ ୧୮୯୯ରେ ସମାପ୍ତ ହୋଇଥିଲା। ତେଣୁ ଚନ୍ଦନ ହଜୁରୀ ପୁରୀରୁ ପିପିଲି ଦେଇ ବାହାରକୁ ଯାତାୟାତ କରୁଥିଲେ। ତାଙ୍କ ଯାତାୟାତ ସମୟରେ ପିପିଲି ଭୂଖଣ୍ଡର କିଛି ଲୋକ ନିଶ୍ଚିତ ପକ୍ଷେ ଉଦ୍‌ବୁଦ୍ଧ ହୋଇଥିବେ। ଇଂରେଜ ସରକାରଙ୍କ ଦ୍ୱାରା ବହିଷ୍କୃତ ସିପାହୀଙ୍କ ମଧ୍ୟରୁ ୫୦ ଜଣ ପିପିଲି ଦେଇ ପୁରୀକୁ ଆସିଥିବାର ଜଣାଯାଏ।

Digitized by srujanika@gmail.com

୧୮୮୫ ଖ୍ରୀଷ୍ଟାବ୍ଦରେ ଭାରତୀୟ ଜାତୀୟ କଂଗ୍ରେସ ଜନ୍ମଗ୍ରହଣ କରେ। ସେହିଠାରୁ ଭାରତୀୟ ଜାତୀୟ କଂଗ୍ରେସର ଇତିହାସ ହୋଇଥିଲା ଭାରତରେ ସ୍ୱାଧୀନତା ସଂଗ୍ରାମର ଇତିହାସ। ମାତ୍ର ୧୮୮୫ରୁ ୧୯୦୫ ପର୍ଯ୍ୟନ୍ତ ଅତିବାହିତ ହୋଇଥିବା ସମୟ ମଧ୍ୟରେ ପୁରୀ ଜିଲ୍ଲାରେ ସ୍ୱାଧୀନତା ସଂଗ୍ରାମର ଇତିହାସ ସେପରି କିଛି ଗୌରବ ଗରିମାମୟ ନଥିଲା। ୧୯୦୫ ମସିହାରେ ବଙ୍ଗ-ବିଭାଜନର ପ୍ରତିକ୍ରିୟା ସ୍ୱରୂପ ଆରମ୍ଭ ହୋଇଥିଲା ସ୍ୱଦେଶୀ ଓ ବନ୍ଦେ ମାତରମ୍ ଆନ୍ଦୋଳନ। ଏଥିରେ ପୁରୀ ଜିଲ୍ଲାର ଭୂମିକା ଥିଲା ବେଶ୍ କିଛି ଆକର୍ଷଣୀୟ। ୧୯୦୫ ମସିହା ଅଗଷ୍ଟ ମାସରେ ପୁରୀସ୍ଥିତ ଜଗନ୍ନାଥ ବଲ୍ଲଭ ମଠରେ ଆୟୋଜିତ ଏକ ସଭାରେ ପୌରୋହିତ୍ୟ କରିଥିବା ମଧୁସୂଦନ ଦାସ ଇଂଲଣ୍ଡରେ ପ୍ରସ୍ତୁତ ଦ୍ରବ୍ୟ ବ୍ୟବହାର ନକରି ନିଜ ଦେଶରେ ପ୍ରସ୍ତୁତ ଦ୍ରବ୍ୟର ବ୍ୟବହାର କରିବା ପାଇଁ ଆହ୍ୱାନ ଦେଇଥିଲେ। ବିଶେଷତଃ ମାଞ୍ଚେଷ୍ଟରରୁ ଆସୁଥିବା ବସ୍ତ୍ର ଓ ଲିଭରପୁଲରୁ ଆସୁଥିବା ଲବଣ ବ୍ୟବହାର ନକରିବା ପାଇଁ ସେ ଉପସ୍ଥିତ ଲୋକମାନଙ୍କୁ ଅନୁରୋଧ କରିଥିଲେ। ଉକ୍ତ ସଭାରେ ପିପିଲି ଭୂଖଣ୍ଡରୁ କିଛି ବ୍ୟକ୍ତି ନିଶ୍ଚିତ ପକ୍ଷେ ଯୋଗ ଦେଇଥିଲେ। ସେହି ସମୟରେ କଲିକତା ଓ ମିଦିନାପୁରରୁ କିଛି କର୍ମୀ ସ୍ୱଦେଶୀ ଆନ୍ଦୋଳନର ପ୍ରଚାର ଓ ପ୍ରସାର ପାଇଁ ପୁରୀ ଆସିଥିଲେ। ଯାତ୍ରା ପଥରେ ପିପିଲିର ଗୁରୁତ୍ୱ ଉପଲବ୍ଧି କରି ହୁଏତ ସେମାନେ ପିପିଲିଠାରେ ଏକ ସଭା କରିଥିବେ । ମାତ୍ର ବଙ୍ଗ ବିଭାଜନ କାର୍ଯ୍ୟକାରୀ ଦିବସ ୧୯୦୫ ମସିହା ।କ୍ଟୋବର ୧୬ ତାରିଖ ଦିନ କଟକ, ବାଲେଶ୍ୱର, ବ୍ୟତୀତ ପୁରୀରେ ସଭାକରାଯାଇ ତା'ର ନିନ୍ଦା କରାଯିବା ସଂଗେ ସଂଗେ ରାସ୍ତାରେ ଛାତ୍ରମାନେ 'ବନ୍ଦେ ମାତରମ୍' ଧ୍ୱନି ଦେଇ ଶୋଭାଯାତ୍ରାରେ ଯାଇଥିଲେ ଓ ଏହାର ନେତୃତ୍ୱ ନେଇଥିଲେ ଗୋପବଂଧୁ ଦାସ, ରାମଚନ୍ଦ୍ର ଦାସ ଓ ହରିଶ୍ଚନ୍ଦ୍ର ଘୋଷ। ଏହି ଶୋଭାଯାତ୍ରାରେ ପିପିଲି ଭୂଖଣ୍ଡରୁ ମଧ୍ୟ କେତେକ ଛାତ୍ର ଯୋଗ ଦେଇଥିଲେ। ଉକ୍ତ ଆନ୍ଦୋଳନ ଦମନପାଇଁ ଇଂରେଜ କର୍ତ୍ତୃପକ୍ଷ କେତେକ ପଦକ୍ଷେପ ନେଇଥିଲେ। ତନ୍ମଧ୍ୟରୁ ଆନ୍ଦୋଳନରେ ଯୋଗ ଦେଇଥିବା ଛାତ୍ରଙ୍କୁ ଶିକ୍ଷାନୁଷ୍ଠାନରୁ ବହିଷ୍କାର ଥିଲା ଅନ୍ୟତମ। ତେଣୁ ସେହି ବହିଷ୍କୃତ ଛାତ୍ରମାନଙ୍କୁ ଶିକ୍ଷା ଦେବା ନିମନ୍ତେ ଜାତୀୟ ବିଦ୍ୟାଳୟମାନ ପ୍ରତିଷ୍ଠା କରାଯାଇଥିଲା। ଗୋପବନ୍ଧୁ ଦାସ ସେହିପରି ଏକ ବିଦ୍ୟାଳୟ ପିପିଲି ଭୂଖଣ୍ଡର ଅନତି ଦୂରରେ ଅବସ୍ଥିତ ସାକ୍ଷୀଗୋପାଳ ଠାରେ ୧୯୦୯ ମସିହା ଅଗଷ୍ଟ ମାସରେ ସ୍ଥାପନ କରିଥିଲେ। ଏହା 'ସତ୍ୟବାଦୀ ବନ ବିଦ୍ୟାଳୟ' ନାମରେ କଥିତ ହୋଇଥିଲା। ଏଥିରେ ପିପିଲି ଭୂଖଣ୍ଡର କେତେକ ଛାତ୍ର ଶିକ୍ଷା ଗ୍ରହଣ କରିଥିଲେ। ଏ ଦିଗରେ ଗୋପବନ୍ଧୁ ଦାସଙ୍କର ଏକ ମହାର୍ଘ ଅବଦାନ ଥିଲା

Digitized by srujanika@gmail.com

'ସମାଜ' ନାମରେ ଏକ ସାପ୍ତାହିକ ସମ୍ବାଦପତ୍ରର ପ୍ରକାଶନ। ଏହା ପ୍ରଥମେ ସେହି ସତ୍ୟବାଦୀରେ ପ୍ରକାଶ ପାଇଥିଲା। ଏହାର ପ୍ରଥମ ସଂଖ୍ୟା ୧୯୧୯ ମସିହା ଅକ୍ଟୋବର ୪ ତାରିଖ ଦଶହରା ଦିନ ପ୍ରକାଶିତ ହୋଇଥିଲା।

ଜାତୀୟ ରାଜନୀତିରେ ୧୯୧୯ ମସିହାରେ ମହାତ୍ମାଗାନ୍ଧିଙ୍କର ଆବିର୍ଭାବ ଫଳରେ ଭାରତୀୟ ଜାତୀୟ ଆନ୍ଦୋଳନର ଗତିଶୀଳ ସ୍ରୋତ ଏକ ନୂତନ ମୋଡ଼ ନେଇଥିଲା। ଏହି ନୂତନ ମୋଡ଼ ନେବା ମୂଳରେ ଥିଲା ଗାନ୍ଧିଜୀଙ୍କ ଦ୍ୱାରା ପ୍ରବର୍ତ୍ତିତ ସତ୍ୟ, ଅହିଂସା, ତ୍ୟାଗ ଆଦି ମହାନ ନୀତି ଉପରେ ଆଧାରିତ ଏକ ଆନ୍ଦୋଳନ। ତାହା ଥିଲା ତାଙ୍କର ଅସହଯୋଗ ଆନ୍ଦୋଳନ। ସମଗ୍ର ମାନବ ଜାତିର ଇତିକଥାରେ ଏପରି ଏକ ଆନ୍ଦୋଳନର ଦୃଷ୍ଟାନ୍ତ ବିରଳ। ଏହାମଧ୍ୟ ଅତି ଆଶ୍ଚର୍ଯ୍ୟର କଥା ଯେ, ଏହି ଆନ୍ଦୋଳନ ମାଧ୍ୟମରେ ହିଁ ମହାତ୍ମାଗାନ୍ଧି ପରିଶେଷରେ ନିଜର ଲକ୍ଷ୍ୟ ହାସଲ କରିପାରିଥିଲେ। ତାହା ଥିଲା ଭାରତର ସ୍ୱାଧୀନତା ଲାଭ। ଏହି ଆନ୍ଦୋଳନର କାର୍ଯ୍ୟକ୍ରମ ୧୯୨୦ ମସିହା ଡିସେମ୍ବର ମାସରେ ନାଗପୁର ଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ଐତିହାସିକ ଅଧିବେଶନରେ ଗ୍ରହଣ କରାଯାଇଥିଲା। ଅସହଯୋଗର ଅର୍ଥ ହେଉଛି ଇଂରେଜ ସରକାରଙ୍କ ଠାରୁ ସବୁକ୍ଷେତ୍ରରେ ସହଯୋଗ ପ୍ରତ୍ୟାହାର କରିନେବା। ଏହି କାର୍ଯ୍ୟକ୍ରମକୁ ଗାନ୍ଧିଜୀ ଏକ ଆନ୍ଦୋଳନର ରୂପ ଦେଇଥିଲେ। ଗୋପବନ୍ଧୁ ଦାସ ଭଗୀରଥଙ୍କ ଭୂମିକା ନେଇ ଅସହଯୋଗ ଆନ୍ଦୋଳନର ଗଙ୍ଗାକୁ ଓଡ଼ିଶାକୁ ଆଣିଥିଲେ। ସେ ପ୍ରଥମେ ଆଇନ୍ ବ୍ୟବସାୟ ପରିତ୍ୟାଗ କରିଥିଲେ। ସେପରି ସ୍ଥଳେ ତାଙ୍କର କର୍ମପୀଠ ସତ୍ୟବାଦୀ ଓ ପିପିଲି ସମେତ ତା'ର ପାର୍ଶ୍ୱବର୍ତ୍ତୀ ଅଂଚଳ ବିଶେଷ ଭାବେ ପ୍ରଭାବିତ ହୋଇଥିଲା। ଅସହଯୋଗ ଆନ୍ଦୋଳନର କାର୍ଯ୍ୟକାରିତା ବିଷୟରେ ଶିକ୍ଷାଦେବା ପାଇଁ ଓଡ଼ିଶାରେ ସାତଗୋଟି କେନ୍ଦ୍ର ସ୍ଥାପିତ ହୋଇଥିଲା ଓ ତନ୍ମଧ୍ୟରୁ ସାକ୍ଷୀଗୋପାଳ କେନ୍ଦ୍ର ଥିଲା ଅନ୍ୟତମ। ସାକ୍ଷୀଗୋପାଳର ଚତୁର୍ଦ୍ଦିଗରେ ଥିବା ପିପିଲି, ଦାଣ୍ଡମୁକୁନ୍ଦପୁର ସମେତ ଅନ୍ୟାନ୍ୟ ଗ୍ରାମମାନଙ୍କରୁ ଛାତ୍ର ଓ ଯୁବକମାନେ ଉକ୍ତ କେନ୍ଦ୍ରରେ ଯୋଗ ଦେଇଥିଲେ। ଗୋପବନ୍ଧୁ ପୁରୀ ଜିଲ୍ଲାରେ କେତୋଟି ସୂତାକଟା କେନ୍ଦ୍ର ମଧ୍ୟ ସ୍ଥାପନ କରିଥିଲେ। ତନ୍ମଧ୍ୟରୁ ପିପିଲି ସୂତାକଟା କେନ୍ଦ୍ରଥିଲା ଅନ୍ୟତମ। ଏବେ ପିପିଲିର ୯୩ ବର୍ଷ ବୟସ୍କ ହରିଚରଣ ଗିରି ଗାନ୍ଧିଜୀଙ୍କ ଆହ୍ୱାନ କ୍ରମେ ୧୯୨୧ ମସିହା ଫେବୃୟାରୀ ୧୭ ତାରିଖ ଦିନ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିବା ବିଷୟ ସେ ଏକ ସାକ୍ଷାତକାରରେ ପ୍ରକାଶ କରିଥିଲେ। ପରେ ପରେ ସେ କଟକସ୍ଥିତ ସ୍ୱରାଜ ଆଶ୍ରମରେ ଜଣେ ସୂତାକଟା

Digitized by srujanika@gmail.com

ଶିକ୍ଷକ (Spinning Master) ଭାବେ ଯୋଗ ଦେଇଥିଲେ। ଅବଶ୍ୟ ପ୍ରଥମରୁ ସେ ପିପିଲିର ଅଧିବାସୀ ନଥିଲେ। ତାଙ୍କ ଘରଥିଲା ରାଜ୍ଜକନିକା ନିକଟବର୍ତ୍ତୀ ଆୟତନ ଗ୍ରାମରେ। ପିପିଲିକୁ ଆସିଥିଲେ ସେ ୧୯୩୩ ମସିହା ଡିସେମ୍ବର ୨୬ ତାରିଖ ଦିନ। ଦାଣ୍ଡମୁକୁନ୍ଦପୁର ପଞ୍ଚାୟତ ଅନ୍ତର୍ଗତ କୋଠବାଡ଼ ଗ୍ରାମର ସାଧୁଚରଣ ମହାନ୍ତି ମଧ୍ୟ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ କାରାବରଣ କରିଥିଲେ। ତାଙ୍କୁ ପାଟଣା ଜେଲ୍‌ରେ ରଖାଯାଇଥିଲା।

## ଗାନ୍ଧିଜୀଙ୍କ ପଦଯାତ୍ରା ଓ ପିପିଲି

ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ ସମୟରେ ପିପିଲି ଭୂଖଣ୍ଡର ରାଜନୈତିକ ତତ୍ପରତା ବୃଦ୍ଧି ପ୍ରାପ୍ତ ହୋଇଥିଲା। ବିଶେଷତଃ ୧୯୩୪ ମସିହା ଓ ୧୯୩୮ ମସିହାରେ ତାଙ୍କର ୪ର୍ଥ ଓ ୫ମ ଥର ଆଗମନ ଥିଲା ପିପିଲି ପାଇଁ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ। ଗାନ୍ଧିଜୀ ପ୍ରଥମେ ୧୯୨୧ ମସିହା, ଦ୍ୱିତୀୟରେ ୧୯୨୫ ମସିହା ଓ ତୃତୀୟରେ ୧୯୨୭ରେ ଓଡ଼ିଶା ଆଗମନ କରିଥିଲେ। ୧୯୨୭ ମସିହା ଡିସେମ୍ବର ୧୨ ତାରିଖ ଦିନ ସେ ଖୋର୍ଦ୍ଧା ଓ ଜଟଣୀରେ ସଭାକାର୍ଯ୍ୟ ଶେଷକରି ୧୩ ତାରିଖ ଦିନ ସତ୍ୟବାଦୀ ବନ-ବିଦ୍ୟାଳୟ ପରିଦର୍ଶନ ପୂର୍ବକ ପୁରୀ ଯାଇଥିଲେ। ଏଥର ପିପିଲି ବା ତା'ର ପାର୍ଶ୍ୱବର୍ତ୍ତୀ ଅଂଚଳରେ ଗାନ୍ଧିଜୀଙ୍କ ପାଇଁ କୌଣସି ସଭା-ସମିତିର ଆୟୋଜନ କରାଯାଇ ନଥିଲେ ମଧ୍ୟ ଖୋର୍ଦ୍ଧା, ଜଟଣୀ ଓ ସାକ୍ଷୀଗୋପାଳ ଠାରେ ଅନୁଷ୍ଠିତ ସଭାଗୁଡ଼ିକରେ ପିପିଲି ଅଂଚଳରୁ ବହୁଲୋକ ଯୋଗ ଦେଇଥିଲେ।

ମାତ୍ର ୧୯୩୪ ମସିହାରେ ଗାନ୍ଧିଜୀଙ୍କ ଚତୁର୍ଥ ଆଗମନ ସମୟରେ ପୁରୀରୁ ବାହାରିଥିବା ପଦଯାତ୍ରା ପିପିଲିର ଇତିହାସକୁ ରୁଦ୍ଧିମନ୍ତ କରିଥିଲା। ୧୯୩୪ ମସିହା ମେ ମାସ ୯ ତାରିଖ ଦିନ ସକାଳେ ଜଗନ୍ନାଥ ମନ୍ଦିରର ସିଂହଦ୍ୱାରଠାରୁ ଗାନ୍ଧିଜୀ ତାଙ୍କର ଐତିହାସିକ ପଦଯାତ୍ରାରେ ବାହାରି ପ୍ରଥମେ ହରେକୃଷ୍ଣପୁର, ତା'ପରେ ଚନ୍ଦନପୁର, ବୀର ଗୋବିନ୍ଦପୁର ଓ ସାକ୍ଷୀଗୋପାଳଠାରେ ସଭାକାର୍ଯ୍ୟ ଶେଷକରି କାଦୁଆଘାଟ ଗୋପବନ୍ଧୁ ସେବା ସଦନରେ ୧୦ ତାରିଖ ଦିନ ରାତ୍ରିଯାପନ କରିଥିଲେ।

ମେ ମାସ ୧୨ ତାରିଖ ଦିନ ଗାନ୍ଧିଜୀ ପୁନରାୟ ପଦଯାତ୍ରା ଆରମ୍ଭ କରି ପିପିଲି ଭୂଖଣ୍ଡର ଉପକଣ୍ଠରେ ପ୍ରଥମେ ସାତଶଙ୍ଖ ନିକଟସ୍ଥ ବୀରପୁରୁଷୋତ୍ତମପୁର ଶାସନର ଗାଁ ମୁଣ୍ଡ ପୋଖରୀ ନିକଟରେ ଆୟୋଜିତ ସଭାରେ ଉଦ୍‌ବୋଧନ

Digitized by srujanika@gmail.com

ଦେଇଥିଲେ। ଉକ୍ତ ସଭାର ଉଦ୍ୟୋକ୍ତା ଥିଲେ ବୀରପୁରୁଷୋତ୍ତମପୁର ଶାସନର ଗଣେଶ୍ୱର ମିଶ୍ର, ବାଉରିବନ୍ଧୁ ମିଶ୍ର ଓ ଜନାର୍ଦ୍ଦନ ମିଶ୍ର। ବୀରପୁରୁଷୋତ୍ତମପୁର ସଭା ପରେ ଗାନ୍ଧିଜୀ ସେହି ଦିନ ଅପରାହ୍ଣରେ ଦାଣ୍ଡମୁକୁନ୍ଦପୁର ଠାରେ ପହଞ୍ଚି ସେଠାକାର ବିଦ୍ୟାଳୟ ହତାରେ ଆୟୋଜିତ ଏକ ବିରାଟ ଜନସଭାରେ ଭାଷଣ ଦେଇଥିଲେ। ଏହି ସଭାର ମୁଖ୍ୟ ଆୟୋଜକ ଥିଲେ ରୂପଦେଇପୁର ଗ୍ରାମର ଭଗବାନ ମିଶ୍ର। ତାଙ୍କୁ ସହାୟତା ଦେଇଥିଲେ ଦାଣ୍ଡମୁକୁନ୍ଦପୁର ଗ୍ରାମର ଯୁବକ ପୀତବାସ ପଣ୍ଡା, ମାଗୁଣି ଦାସ, ଚୌଧୁରୀ ନରହରି ସାହୁ, ଭୂଇଁଗୁଣ ଗ୍ରାମର କୃପାସିନ୍ଧୁ ମିଶ୍ର, ବନ୍ତଳସିଂ ଗ୍ରାମର ଯଦୁମଣି ମିଶ୍ର, ପୋଡାଗୁଣ ଗ୍ରାମର ବାବନ ସେନାପତି ଓ କୋଠବାଡ଼ ଗ୍ରାମର ସାଧୁଚରଣ ମହାନ୍ତି। ଏମାନେ ସମସ୍ତେ ପଦଯାତ୍ରାରେ ମଧ୍ୟ ଯୋଗ ଦେଇଥିଲେ। ଏଠାରେ ଆୟୋଜିତ ସଭା ଓ ପୂର୍ବ ସଭାମାନଙ୍କରେ ସେ ମୁଖ୍ୟତଃ କହୁଥିଲେ- ''ଓଡ଼ିଆମାନେ ଆଳସ୍ୟ ତ୍ୟାଗକରି ଅରଟ ଚଳାଇବା ଉଚିତ। ଅରଟ ହିଁ କେବଳ କୋଟି କୋଟି ଜନତା ସହଜରେ ଚଳାଇ ପାରିବେ ଓ ସେଥିରେ ତୁରନ୍ତ ଲାଭ ପାଇ ପାରିବେ।'' ସେହିଦିନ ସନ୍ଧ୍ୟାରେ ଦାଣ୍ଡମୁକୁନ୍ଦପୁର କରଣ ସାହି ନିକଟସ୍ଥ ରାମସାହୁ ମଠରେ ଗାନ୍ଧିଜୀଙ୍କ ପ୍ରାର୍ଥନା ସଭା ଅନୁଷ୍ଠିତ ହୋଇଥିଲା। ସେହି ମଠରେ ମଧ୍ୟ ସେ ରାତ୍ରି ଯାପନ କରିଥିଲେ। ୧୨ ତାରିଖ ସକାଳେ ଗାନ୍ଧିଜୀ ଦାଣ୍ଡମୁକୁନ୍ଦପୁର ପରିତ୍ୟାଗ କରି ପିପିଲି ଅଭିମୁଖେ ଯାତ୍ରା କରିଥିଲେ। ଗାନ୍ଧିଜୀ ଏକ ନିୟମ କରିଥିଲେ ଯେ ପଦଯାତ୍ରା ସମୟରେ ଯେଉଁ ସ୍ଥାନରେ ଯାହା ମିଳିବ ତାହା ସେ ଆହାର କରିବେ। ତାଙ୍କର ଆହାର ଥିଲା ଛେଳିଦୁଧ, ରୋଟି ଓ ଫଳ। ମାତ୍ର ସେଠାରେ ସେ ଦିନ କେବଳ ଖଟା ଆମ୍ବ ବ୍ୟତୀତ ଅନ୍ୟ କିଛି ମିଳିନଥିଲା। ଗାନ୍ଧିଜୀ ସେହି ଖଟାଆମ୍ବ ରସକୁ ନିର୍ବିକାର ଚିତ୍ତରେ ପାନ କରିଥିଲେ। ତାଙ୍କ ସହିତ ଥିଲେ ପ୍ରବୀଣ ବୈଜ୍ଞାନିକ ସତୀଶ ଦାସଗୁପ୍ତା। ତାଙ୍କ ଆଡ଼କୁ ଚାହିଁ ଗାନ୍ଧିଜୀ କହିଥିଲେ- ''ସତୀଶବାବୁ, ଏଥିରୁ ଖଟା ଗୁଣକୁ ହଟାଇବା ପାଇଁ ଯଦି କିଛି କରିପାରନ୍ତି, ତେବେ ଗାଁରେ ଲୋକ ସେଥିରୁ ଉପକୃତ ହୋଇ ପାରନ୍ତେ।'' ସତୀଶବାବୁ ସେ ଭାର ନେଇ ଅଳ୍ପଦିନ ପରେ ତା'ର ପ୍ରତିକାର କରି ପାରିଥିଲେ।(୭)। ସେ ଯାହା ହେଉ ସେଦିନ ସକାଳ ୧୦ଟା ସମୟରେ ପିପିଲିର ଜଟଣୀ ଛକ ନିକଟରେ ଗାନ୍ଧିଜୀଙ୍କୁ ଏକ ଉଲ୍ଲସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା। ସେହି ଛକଠାରୁ ଅନତିଦୂରରେ ଥିବା ସଦାବର୍ତ୍ତ ମଠ ନିକଟସ୍ଥ ଏକ ବିରାଟ ଆମ୍ରବୃକ୍ଷ ତଳେ ସେ ମଧ୍ୟ ଏକ ଜନସଭାରେ ଭାଷଣ ଦେଇଥିଲେ। ସେହି ଜନସଭା

---

(୭) ହରେକୃଷ୍ଣ ମହତାବ : ଗାନ୍ଧିଜୀ ଓ ଓଡ଼ିଶା

Digitized by srujanika@gmail.com

ସମେତ ସମ୍ବର୍ଦ୍ଧନାର ଆୟୋଜନ କରିଥିଲେ ଭବାନୀପୁରର ଓ୍ୱାହେଦ୍ ଅଲ୍ଲି ଶାହା, ସିରିଆପୁର ଗ୍ରାମର ବାବାଜି ମହାପାତ୍ର, ପିପିଲି ଶାସନ ଗ୍ରାମର ହାଲୁ ପ୍ରଧାନ ଓ ଶୁଆ ବରେଇ ଗ୍ରାମର ଯଦୁମଣି କୋଦମାସିଂ। ପୁରୀ ମାର୍କଣ୍ଡେଶ୍ୱର ସାହିର ଜଗନ୍ନାଥ ମିଶ୍ର ମଧ୍ୟ ସେମାନଙ୍କୁ ସହାୟତ ଦେଇଥିଲେ। ସେହି ସମୟରେ ପିପିଲି ଥାନାର ପୁବା ଓ ନାଲିହଣା ଗ୍ରାମରେ ଜଗନ୍ନାଥ ବାବୁଙ୍କର କିଛି ଜମିଦାରୀ ଥିଲା।

ଏହି ସଭାରେ ପିପିଲି ଅଞ୍ଚଳର ଭଗବାନ ମିଶ୍ର, ପୀତବାସ ପଣ୍ଡା, ରାମକୃଷ୍ଣ ସାହୁ, ଯଦୁମଣି ମିଶ୍ର, ଚୌଧୁରୀ ନରହରି ସାହୁ, ଗଣେଶ୍ୱର ମିଶ୍ର, ଓ୍ୟାହେଦ୍ ଅଲ୍ଲିସା, ବାବାଜି ମହାପାତ୍ର ଓ ଯଦୁମଣି କୋଦମାସିଂଙ୍କ ସମେତ ବହୁ ବ୍ୟକ୍ତି ଗାନ୍ଧିଜୀଙ୍କ ସହ ଆସି ଗୁଡ଼ିଆ ପୋଖରୀ ଠାରେ ଏକ ପଥପ୍ରାନ୍ତ ସଭାରେ ଯୋଗଦେଇଥିଲେ। ଏହି ପଦଯାତ୍ରାରେ ବର୍ତ୍ତମାନର ୭୪ ବର୍ଷ ବୟସ୍କ ଗୋବିନ୍ଦପୁର ଗ୍ରାମର କାଶୀନାଥ ନାୟକ ଯୋଗଦେଇ ଥିଲେ ବୋଲି ସେ ଏକ ସାକ୍ଷାତକାରରେ କହିଛନ୍ତି। ଏକ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଦେଇ ସେ କହିଥିଲେ ଯେ ଉକ୍ତ ସଭାରେ ୩୦୦ରୁ ଊର୍ଦ୍ଧ୍ୱ ବ୍ୟକ୍ତି ଯୋଗ ଦେଇଥିଲେ। ସେମାନଙ୍କ ମଧ୍ୟରୁ କେତେଜଣ ଥିଲେ ମହିଳା। ସେଠାରେ ପ୍ରଥମେ ରଘୁପତି ରାଘବ ରାଜାରାମ ବୋଲା ଯାଇଥିଲା। ଶକ୍ତି ଅନୁସାରେ କିଛି ଦାନ କରିବା ପାଇଁ ସଭା ସ୍ଥଳରେ ଏକ ବାକ୍ସ ରଖାଯାଇଥିଲା। ସଭା ପରେ ଗାନ୍ଧିଜୀ ଏକ ଚାଳଘରେ କିଛି ସମୟ ବିଶ୍ରାମ କରିଥିଲେ। ସେଥିପାଇଁ ଗୁଡ଼ିଆ ପୋଖରୀର ବଜାରକୁ ଗାନ୍ଧିବଜାର ନାମ ଦିଆଯାଇଥିଲା। ତା'ପରେ ଗାନ୍ଧିଜୀ ବାଳକାଟି, ବାଲିଅନ୍ତା, ତେଲେଙ୍ଗା ପେଣ୍ଠ ଓ କାଜିପାଟଣାରେ ସଭାକାର୍ଯ୍ୟ ଶେଷକରି ମେ ୧୬ ତାରିଖ ସନ୍ଧ୍ୟାରେ କଟକର କାଠଯୋଡ଼ି ବାଲିରେ ଉଦ୍‌ବୋଧନ ଦେଇଥିଲେ।

୧୯୩୮ ମସିହାରେ ଗାନ୍ଧିଜୀଙ୍କର ଓଡ଼ିଶାକୁ ଶେଷଯାତ୍ରା ମଧ୍ୟ ପୂର୍ବପରି ପିପିଲି ଓ ଡେଲାଙ୍ଗ ପାଇଁ ଏକ ଐତିହାସିକ ଓ ମହତ୍ତ୍ୱପୂର୍ଣ୍ଣ ଘଟଣା। ଏଥର ସେ ଆସିଥିଲେ ଡେଲାଙ୍ଗର ବେରବୋଇ ଆଶ୍ରମରେ ଆୟୋଜିତ ଗାନ୍ଧିସେବା ସଂଘର ବାର୍ଷିକ ଅଧିବେଶନରେ ଯୋଗ ଦେବା ପାଇଁ। ଏଠାରେ ସେହି ଗାନ୍ଧି ସେବା ସଂଘ ବିଷୟରେ କିଞ୍ଚିତ ସୂଚନା ଦେବା ପ୍ରାସଙ୍ଗିକ ହେବ। ୧୯୨୪ ମସିହାରେ ଚିତ୍ତ-ରଂଜନ ଦାସ ଓ ମୋତିଲାଲ ନେହେରୁଙ୍କ ନେତୃତ୍ୱରେ ଏକ 'ସ୍ୱରାଜ ଦଳ' ଗଠିତ ହୋଇଥିଲା। ସେମାନେ ଗାନ୍ଧିଜୀଙ୍କର କେତୋଟି କାର୍ଯ୍ୟକ୍ରମକୁ ପ୍ରତିରୋଧ କରୁଥିଲେ। ସେଥି ମଧ୍ୟରୁ ବ୍ୟବସ୍ଥାପକ ସଭାର ବର୍ଜନ କାର୍ଯ୍ୟକ୍ରମ

Digitized by srujanika@gmail.com

ଥିଲା ଅନ୍ୟତମ। ଏପରି ସ୍ଥଳେ ଭାରତୀୟ ଜାତୀୟ କଂଗ୍ରେସରେ ଦୁଇଟି ଗୋଷ୍ଠୀର ଉଦ୍ଭବ ହୋଇଥିଲା। ସେଗୁଡ଼ିକ ଥିଲା ପରିବର୍ତ୍ତନପନ୍ଥୀ (Pro-changers) ଓ ଅପରିବର୍ତ୍ତନୀୟ ପନ୍ଥୀ (No-Changers)‹ ଯେଉଁମାନେ ଗାନ୍ଧିଜୀଙ୍କ ନୀତିକୁ ଅକ୍ଷୁଣ୍ଣ ରଖିବା ପାଇଁ ଚାହିଁଲେ, ତାଙ୍କୁ କୁହାଗଲା ଅପରିବର୍ତ୍ତନୀୟ ପନ୍ଥୀ। ଏଥି ନିମନ୍ତେ ସେମାନେ ଗାନ୍ଧି ସେବାସଂଘ ଗଠନ କରିଥିଲେ। ଓଡ଼ିଶାରେ ତା'ର ନେତୃତ୍ୱ ନେଇଥିଲେ ଆଚାର୍ଯ୍ୟ ହରିହର ଦାସ ଓ ଗୋପବନ୍ଧୁ ଚୌଧୁରୀ।

ଏହି ଗାନ୍ଧି ସେବାସଂଘର ୪ର୍ଥ ବାର୍ଷିକ ଅଧିବେଶନରେ ଯୋଗଦେବା ପାଇଁ ଗାନ୍ଧିଜୀ ୧୯୩୮ ମସିହା ମାର୍ଚ୍ଚ ୨୫ ତାରିଖ ଦିନ ଡେଲାଙ୍ଗ ଷ୍ଟେସନ ନିକଟବର୍ତ୍ତୀ ବେରବୋଇ ଗ୍ରାମଠାରେ ପହଞ୍ଚି ୩୧ ତାରିଖ ପର୍ଯ୍ୟନ୍ତ ଅବସ୍ଥାନ କରିଥିଲେ। ସେଠାରେ ପଣ୍ଡିତ କୃପାସିନ୍ଧୁ ହୋତାଙ୍କର ଏକ ଆଶ୍ରମ ମଧ୍ୟ ଥିଲା। ଏହି ଅଧିବେଶନର ମୁଖ୍ୟ ସଞ୍ଚାଳକ ଓ ଅଭ୍ୟର୍ଥନା ସମିତିର ସଭାପତି ଥିଲେ ଗୋପବନ୍ଧୁ ଚୌଧୁରୀ ଓ ତାଙ୍କୁ ସହାୟତା ଦେଇଥିଲେ ପଣ୍ଡିତ କୃପାସିନ୍ଧୁ ହୋତା। ନବକୃଷ୍ଣ ଚୌଧୁରୀ, ଆଚାର୍ଯ୍ୟ ହରିହର, ମାଳତୀ ଚୌଧୁରୀ, ରମାଦେବୀ, ସୁନାମଣି ଦେବୀ ଓ କିରଣ ଲେଖା ମହାନ୍ତି ପ୍ରମୁଖ ଓଡ଼ିଶାର ବହୁତୁଙ୍ଗ ନେତା ଏଥିରେ ଯୋଗଦେଇ ସକ୍ରିୟ ଅଂଶ ଗ୍ରହଣ କରିଥିଲେ। ଏହି ଅଧିବେଶନର ସଫଳତା ପାଇଁ ଡେଲାଙ୍ଗ ଅଂଚଳର ବ୍ରହ୍ମେଶ୍ୱରପୁରର ଜୟକୃଷ୍ଣ ନାୟକ, ନୀଳମଣି ପୁଷ୍ପାଳକ, ବିଶ୍ୱନାଥ ପ୍ରଧାନ ଏବଂ ରେଣ୍ଟ ଗ୍ରାମର କ୍ଷେତ୍ରମୋହନ ନାୟକ ଓ ରଘୁନାଥ ବାରିକ ସହଯୋଗ କରିଥିଲେ। ସେମାନଙ୍କ ବ୍ୟତୀତ ଏହି ଅଧିବେଶନରେ ପିପିଲି-ଡେଲାଙ୍ଗ ଅଂଚଳର ଭଗବାନ ମିଶ୍ର, ୱାହେଦ୍ ଅଲ୍ଲିସା, କୃପାସିନ୍ଧୁ ମିଶ୍ର, ଯଦୁମଣି ମିଶ୍ର, ମାଗୁଣି ଦାସ, ପୀତବାସ ପଣ୍ଡା, ବାବନ ସେନାପତି ଓ ସାଧୁଚରଣ ମହାନ୍ତି ପ୍ରମୁଖ ବହୁବ୍ୟକ୍ତି ଯୋଗଦେଇ ପିପିଲି ଭୂଖଣ୍ଡରେ ସ୍ୱାଧୀନତା ପାଇଁ ଜନଚେତନା ସୃଷ୍ଟି କରିଥିଲେ। ଓଡ଼ିଶା ବାହାରୁ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଖାଁ ଅବଦୁଲ ଗଫୁର ଖାଁ, ମୌଲାନା ଆବୁଲ କାଲାମ ଆଜାଦ, ଗୋବିନ୍ଦ ବଲ୍ଲଭ ପନ୍ଥ, ଯମୁନାଲାଲ ବାଜାଜ୍, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ଡକ୍ଟର ପ୍ରଫୁଲ୍ଲ ଘୋଷ ପ୍ରମୁଖ ଭୁଙ୍ଗନେତା ଏହି ଅଧିବେଶନରେ ଯୋଗଦେଇ ପିପିଲି-ଡେଲାଙ୍ଗ ଭୂମିକୁ ମହିମାନ୍ୱିତ କରିଥିଲେ। ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ବିଶ୍ୱନାଥ ଦାସ। ସେଠାରେ ଏକ ପ୍ରଦର୍ଶନୀ ଉଦ୍‌ଘାଟନ କରି ମହାତ୍ମାଗାନ୍ଧି କହିଥିଲେ- ''ଭାରତରେ ଓଡ଼ିଶା ହେଉଛି ମୋର ପ୍ରେମର ଭୂମି''। ପୁନଶ୍ଚ ସେ କହିଥିଲେ- ''ଓଡ଼ିଶାର ଲୋକେ ଅଫିମ ଖୋର ବୋଲି ଏକ କୁଖ୍ୟାତି ଅଛି .... ଅଫିମ-ସେବନ,

Digitized by srujanika@gmail.com

ଆଳସ୍ୟ ଓ କର୍ମଠତାର ଅଭାବ ହେତୁ ଓଡ଼ିଶା ଏକ ଦରିଦ୍ରତାର ଭୂମି''।(୮)। ଏହି ଅଧିବେଶନ ସମୟରେ ଗୋଟିଏ ଘଟଣା ଗାନ୍ଧିଜୀଙ୍କୁ ମର୍ମାହତ କରିଥିଲା। ମାର୍ଚ୍ଚ ୨୮ ତାରିଖ ସଂଧ୍ୟାରେ କସ୍ତୁରବା ଓ ମହାଦେବ ଦେଶାଇଙ୍କ ପତ୍ନୀ ଦୁର୍ଗାବେନ୍ ଦେଶାଇ ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରିଥିଲେ। ଏହା ଶୁଣି ମହାତ୍ମା ଗାନ୍ଧି ସେମାନଙ୍କୁ କୈଫିୟତ ମାଗିଥିଲେ। ''ଯେଉଁ ମନ୍ଦିର ମଧ୍ୟକୁ ହରିଜନମାନଙ୍କର ପ୍ରବେଶ ମନା, ସେହି ମନ୍ଦିରକୁ ତୁମେ କାହିଁକି ଯାଇଥିଲ ?''(୯)। ଶେଷରେ କସ୍ତୁରବା ଦୋଷ ସ୍ୱୀକାର ପୂର୍ବକ କ୍ଷମା ପ୍ରାର୍ଥନା କରିଥିଲେ।

## ଭାରତଛାଡ଼ ଆନ୍ଦୋଳନ ଓ ପିପିଲି

ଏହାପରେ ୧୯୪୨ ମସିହାରେ ଭାରତୀୟ ଜାତୀୟ ଆନ୍ଦୋଳନର ଐତିହାସିକ ନାଟକରେ ଏକ ରୋମାଞ୍ଚକର ଦୃଶ୍ୟ ଉନ୍ମୋଚିତ ହୋଇଥିଲା ଓ ମହାତ୍ମା ଗାନ୍ଧି ଥିଲେ ଏହାର ମୁଖ୍ୟ ନିର୍ଦ୍ଦେଶକ। ଏକ ଉତ୍ତେଜନା ପୂର୍ଣ୍ଣ ଘଟଣା ଥିଲା ଏହି ଦୃଶ୍ୟର ମୁଖ୍ୟ କଥାବସ୍ତୁ। ଏହା ଥିଲା- 'ଭାରତ ଛାଡ଼' ଆନ୍ଦୋଳନ। ଭାରତରେ ଇଂରେଜ ଶାସନର ପରିସମାପ୍ତି ଆଣିବା ଥିଲା ଆନ୍ଦୋଳନର ଆଭିମୁଖ୍ୟ। ଏହା ପୂର୍ବରୁ ଅନ୍ୟ କୌଣସି ଘଟଣା ଭାରତର ରାଜନୈତିକ ଦିଗ୍‌ବଳୟରେ ଏପରି ଏକ ଅଶାନ୍ତ ଝଡ଼ ସୃଷ୍ଟି କରି ନଥିଲା। ଏହି ଗୁରୁତ୍ୱପୂର୍ଣ୍ଣ ଆନ୍ଦୋଳନରେ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳପରି ପିପିଲି- ଡେଲାଙ୍ଗ ମଧ୍ୟ ଅଂଶ ଗ୍ରହଣ କରିଥିଲା। ୧୯୪୨ ମସିହା ଅଗଷ୍ଟ ୯ ତାରିଖ ଦିନ ଇଂରେଜ ସରକାର ବେଆଇନ୍ ଘୋଷଣା କରିଥିବା ଅନୁଷ୍ଠାନ ମଧ୍ୟରୁ ଜଟଣୀ ପ୍ରାଇମେରୀ କଂଗ୍ରେସ କମିଟି, କାଦୁଆ ଗୋପବନ୍ଧୁ ସେବା ସଦନ ବେରବୋଇ ଗାନ୍ଧି ସେବା ସଂଘର ନାମ ଉଲ୍ଲେଖ ଯୋଗ୍ୟ। ସେଗୁଡ଼ିକର କାଗଜପତ୍ର ଆଦି ଜବତ୍ କରି ନିଆଯାଇଥିଲା।

ଏହି ଅଂଚଳରେ ବହୁ ସଭା ସମିତି କରାଯାଇ କଂଗ୍ରେସର କାର୍ଯ୍ୟକ୍ରମ ଘୋଷଣା କରାଯିବା ସଙ୍ଗେ ସଙ୍ଗେ ଏଗୁଡ଼ିକୁ କାର୍ଯ୍ୟକାରୀ କରିବା ଦିଗରେ ପନ୍ଥା ସ୍ଥିର କରାଯାଇଥିଲା। ୧୯୪୨ ମସିହା ଅଗଷ୍ଟ ୨୦ ତାରିଖ ଦିନ ଡେଲାଙ୍ଗ ନିକଟବର୍ତ୍ତୀ ଘୋରଡ଼ିଆ ହାଟଠାରେ ଏକ ସଭାର ଆୟୋଜନ କରାଯାଇ ସୁନାମଣି ଦେବୀ, ଉଷାମଣି ଦେବୀ ଓ ବାସୁଦେବ ଗଜେନ୍ଦ୍ର ପ୍ରମୁଖ ଜ୍ୱାଳାମୟୀ ଏବଂ ଉଦ୍ଦୀପନାମୂଳକ ଭାଷଣମାନ ଦେଇଥିଲେ। ଇଂରେଜ ସରକାର ଗାଁ ଗାଁରେ ନାଗରା

(୮) ହରେକୃଷ୍ଣ ମହତାବ : ଗାନ୍ଧିଜୀ ଓ ଓଡ଼ିଶା - ପୃ.୧୫୧
(୯) ତେଣ୍ଡୁଲକର : ମହାତ୍ମା ଗାନ୍ଧୀ, ୪ର୍ଥ ଖଣ୍ଡ - ପୃ.୨୩୫

Digitized by srujanika@gmail.com

ପିଟି ଏହି ସଭାକୁ ବେଆଇନ୍ ଘୋଷଣା କରିଥିଲେ ମଧ୍ୟ ହଜାର ହଜାର ସଂଖ୍ୟାରେ ଲୋକ ସେହି ସଭାରେ ଯୋଗ ଦେଇଥିଲେ। ସେମାନଙ୍କୁ ମଧ୍ୟ କାରାବରଣ କରିବାକୁ ପଡ଼ିଥିଲା। ତେଲାଙ୍ଗ ପିପିଲି ଅଂଚଳର ଅନ୍ୟଯେଉଁ କେତେଜଣ କର୍ମୀ ଆନ୍ଦୋଳନର ଅଗ୍ରଭାଗରେ ରହି କାରାବରଣ କରିଥିଲେ- ସେମାନଙ୍କ ମଧ୍ୟରୁ ବିଶ୍ୱନାଥ ପ୍ରଧାନ, ଜୟକୃଷ୍ଣ ମହାନ୍ତି, ନୀଳମଣି ପୁଷ୍ପାଳକ, ଦାତୀ ସିଂ ଓ ରଘୁନାଥ ବାରିକଙ୍କ ନାମ ଉଲ୍ଲେଖଯୋଗ୍ୟ।

ପରିଶେଷରେ ବହୁ ଦୁଃଖ, ଯନ୍ତ୍ରଣା, ଅଭାବ ଅତ୍ୟାଚାର ଓ ନିର୍ଯାତନା ପରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖର ପ୍ରଭାତ ହୋଇଥିଲା। ସେହିଦିନ ଭାରତ ଦର୍ଶନ କରିଥିଲା ନୂତନ ସୂର୍ଯାଲୋକ। ଶତାବ୍ଦୀ ଶତାବ୍ଦୀ ଧରି ରହିଥିବା ଦାସତ୍ୱର ନିର୍ମମ ଶୃଙ୍ଖଳ ଛିନ୍ନ ହେବାର ଦେଖି ଭାରତୀୟମାନେ ଅପାର ଗୌରବର ତେଜୋଦୀପ୍ତ ଆଲୋକରେ ନିଜେ ଉଦ୍‌ଭାସିତ ହେବା ସଙ୍ଗେ ସଙ୍ଗେ ବିଶ୍ୱ ବାସୀଙ୍କୁ ଉଦ୍‌ଭାସିତ କରିପାରିଥିଲେ। ଏକ ନୂତନ ଜାଗରଣର ଅଫୁରନ୍ତ ଆନନ୍ଦରେ ଭାରତୀୟମାନେ ଉନ୍ମାଦିତ ହୋଇ ଉଠିଥିଲେ। ଅନ୍ୟମାନଙ୍କ ପରି ପିପିଲି ଭୂଖଣ୍ଡର ଅଧିବାସୀମାନେ ମଧ୍ୟ ଏହି ଆନନ୍ଦ ଉପଭୋଗ କରିଥିବାର ଦେଖାଯାଇଥିଲା।

□ □ □

Digitized by srujanika@gmail.com

# ପଞ୍ଚମ ଅଧ୍ୟାୟ

## ସ୍ୱାଧୀନତାପ୍ରାପ୍ତି ପରେ ପିପିଲିର ରାଜନୈତିକ ଇତିହାସ

ପ୍ରାଚୀନଯୁଗରୁ ଆରମ୍ଭ କରି ଇଂରେଜ ରାଜତ୍ୱର ଯବନିକା ପଡ଼ିବା ପର୍ଯ୍ୟନ୍ତ ପିପିଲିର ଐତିହ୍ୟ ଉପରେ ଆଲୋଚନା କରିବା ପରେ ସ୍ୱାଧୀନତାପ୍ରାପ୍ତିଠାରୁ ଅଦ୍ୟାବଧି ତା'ର ଅବସ୍ଥା ବିଷୟରେ ଏକ ବର୍ଣ୍ଣନାଦେବା ନିମନ୍ତେ ଏହି ଅଧ୍ୟାୟର ଅବତାରଣା। ତାହା ନହେଲେ ପିପିଲିର ଇତିହାସ ପ୍ରଣୟନ ଅସମ୍ପୂର୍ଣ୍ଣ ହେବ। ଅବଶ୍ୟ ୧୯୪୭ ଠାରୁ ୧୯୯୨ ମସିହା ମଧ୍ୟରେ ପିପିଲି ବହୁ ଘଟଣାର ନୀରବ ସାକ୍ଷୀ ହୋଇ ରହିଛି। ମାତ୍ର ସେ ସବୁକୁ ଇତିହାସ ପୃଷ୍ଠାରେ ସ୍ଥାନ ଦେବା ଯେପରି ଅସମ୍ଭବ ସେହିପରି ନିୟମ ବହିର୍ଭୂତ ମଧ୍ୟ। କାରଣ ସବୁ ଘଟଣା ଇତିହାସ ପୃଷ୍ଠାରେ ସ୍ଥାନ ପାଇ ନଥାଏ। କେଉଁ ଘଟଣା ସ୍ଥାନ ପାଇବାର ଯୋଗ୍ୟ ତାହା ନିର୍ଭର କରେ ତା'ର ଗୁରୁତ୍ୱ ଉପରେ। ସେଥିପାଇଁ ଲବ୍ଧ ପ୍ରତିଷ୍ଠ ଐତିହାସିକ ଇ.ଏଚ୍.କାର କହିଛନ୍ତି, ''ଐତିହାସିକ ଜଣେ କୁଶଳୀ ପାଚକ ହେବା ବିଧେୟ, କାରଣ ସ୍ୱାଦଯୁକ୍ତ ତରକାରୀ ପାଇଁ କି କି ପରିବା ଆବଶ୍ୟକ ତା'ର ନିର୍ବାଚନ ତା'ର ଦକ୍ଷତା ଉପରେ ନିର୍ଭର କରେ।'' ତାହାହିଁ ମଧ୍ୟ ଇତିହାସ ପ୍ରଣୟନ କ୍ଷେତ୍ରରେ ପ୍ରଯୁଜ୍ୟ। ଏ ବିଷୟରେ ଗୋଟିଏ ଦୁଇଟି ଉଦାହରଣ ଦିଆଯାଇପାରେ। ଅତୀତରେ ରୋମ୍‌ର ଜୁଲିୟସ ସିଜର ନାମରେ ଜଣେ ମୁକୁଟ ବିହୀନ ସମ୍ରାଟ ଥିଲେ। ସେ ଟାଇବର ନଦୀ ଅତିକ୍ରମ କରିଥିବା ବିଷୟ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଭାବେ ସ୍ଥାନ ପାଇଛି। ମାତ୍ର, ତାଙ୍କ ପୂର୍ବରୁ ଓ



Digitized by srujanika@gmail.com

ତାଙ୍କ ପରେ ଅନେକ ବ୍ୟକ୍ତି ଯେ ଉକ୍ତ ନଦୀ ଅତିକ୍ରମ କରିଛନ୍ତି, ଏଥିରେ ସନ୍ଦେହ ନାହିଁ। ମାତ୍ର, ତାହା ଇତିହାସରେ ସ୍ଥାନ ପାଇନାହିଁ କି ପାଇବା ପାଇଁ ମଧ୍ୟ ନିୟମ ନୁହେଁ। ସେହିପରି ଦୟାନଦୀ କୂଳରେ ସଂଘଟିତ କଳିଙ୍ଗବାସୀ ଓ ଅଶୋକଙ୍କ ମଧ୍ୟରେ ସଂଘର୍ଷ ଇତିହାସରେ ସ୍ଥାନ ପାଇଛି। ସେହି ଦୟାନଦୀର କୂଳେ କୂଳେ ଥିବା ଗ୍ରାମ ମଧ୍ୟରେ କେତେ ତ ସଂଘର୍ଷ ହୋଇଥିବ। ତା'କୁ ଇତିହାସ ପୃଷ୍ଠାରେ ସ୍ଥାନ ଦେଇ ହେବ କି? ଏବେ ଦେଖାଯାଉ ପିପିଲିର ଏକ ଘଟଣା। ମୋଗଲ ରାଜତ୍ୱ ସମୟରେ ଦାଣ୍ଡମୁକୁନ୍ଦପୁରସ୍ଥିତ ବଡ଼ପୋଖରୀ ତଟରୁ ଲାଲବେଗ ଏକ ବିଧବା ବ୍ରାହ୍ମଣୀକୁ ଅପହରଣ କରି ନେଇଥିବା ଘଟଣା ଇତିହାସରେ ସ୍ଥାନ ପାଇଛି। ସେହି ପ୍ରକାର ଅସାମାଜିକ ଘଟଣା ଯେ ପିପିଲି ଅଞ୍ଚଳରେ ହୋଇ ନଥିବ ତାହା ନୁହେଁ। ସେହି ସବୁ ଘଟଣାକୁ ଇତିହାସରେ ସ୍ଥାନ ଦେଇ ହେବ ନାହିଁ। ଯେଉଁସବୁ ଘଟଣା ରାଜନୈତିକ, ସାଂସ୍କୃତିକ ଓ ଅର୍ଥନୈତିକ ଦୃଷ୍ଟିରୁ ପ୍ରେରଣାଦାୟକ ଓ ଗୁରୁତ୍ୱପୂର୍ଣ୍ଣ, ସାଧାରଣତଃ ତାହାହିଁ ଇତିହାସ ପୃଷ୍ଠାରେ ସ୍ଥାନ ପାଇଥାଏ। ତେଣୁ ଏହି ଅଧ୍ୟାୟରେ କେବଳ ମାତ୍ର ଗୁରୁତ୍ୱପୂର୍ଣ୍ଣ ଘଟଣାଗୁଡ଼ିକ ସ୍ଥାନ ପାଇଛି। ଏ ବିଷୟରେ ତଥ୍ୟ ସଂଗ୍ରହ କରି ମୋତେ ଦେଇଛନ୍ତି ସହଯୋଗୀ ରମେଶ ଚନ୍ଦ୍ର ମହାପାତ୍ର। ତାଙ୍କର ତଥ୍ୟକୁ ଆଧାର କରି ଏହି ଅଧ୍ୟାୟଟି ଲିଖିତ।

## ସ୍ୱାଧୀନତା ପରେ ପିପିଲିର ରାଜନୈତିକ ଘଟଣାବଳୀ

୧୯୫୦ ମସିହାରେ ଭାରତର ସମ୍ବିଧାନ ଗୃହୀତ ହେବାପରେ ଲୋକସଭା ଓ ବିଧାନସଭାର ନିର୍ବାଚନ ପାଇଁ ଆବଶ୍ୟକତା ପଡ଼ିଥିଲା। ଏ ଦିଗରେ ପ୍ରଥମ ପଦକ୍ଷେପ ଥିଲା ଉଭୟ ପାଇଁ ନିର୍ବାଚନ ମଣ୍ଡଳୀର ସୀମା ନିର୍ଦ୍ଧାରଣ। ତଦନୁସାରେ ଗୋଡ଼ିପୁଟ ମାଟିଆପଡ଼ା ପଞ୍ଚାୟତ ବ୍ୟତୀତ ସମଗ୍ର ଡେଲାଙ୍ଗ ଓ ପିପିଲି ଥାନାକୁ ନେଇ ପିପିଲି ବିଧାନସଭା ମଣ୍ଡଳୀ ସୃଷ୍ଟି ହୋଇଥିଲା।(୧)। ସେହିପରି ପିପିଲି, ସତ୍ୟବାଦୀ, ପୁରୀ, ବ୍ରହ୍ମଗିରି, ନିମାପଡା ଓ କାକଟପୁର ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀ ଗଠିତ ହୋଇଥିଲା। ତା'ପରେ ଆରମ୍ଭ ହୋଇଥିଲା ନିର୍ବାଚନ ଓ ସ୍ୱାଧୀନ ଭାରତର ଏହା ଥିଲା ପ୍ରଥମ ନିର୍ବାଚନ। ଏହା ୧୯୫୧ ମସିହା ଡିସେମ୍ବର ୨୦ ତାରିଖଠାରୁ ଆରମ୍ଭ ହୋଇ ୧୯୫୨ ମସିହା ଜାନୁୟାରୀ ୧୫ ତାରିଖ ଦିନ ସମାପ୍ତ ହୋଇଥିଲା। ତଦନୁଯାୟୀ ପିପିଲି ନିର୍ବାଚନ ମଣ୍ଡଳୀରୁ ୬ ଜଣ ପ୍ରାର୍ଥୀ ବିଧାୟକ ପାଇଁ ପ୍ରତିଯୋଗିତାରେ

(୧) ବଳରାମ ମହାନ୍ତି : ଓଡ଼ିଶାରେ ନିର୍ବାଚନ

Digitized by srujanika@gmail.com

ଅବତୀର୍ଣ୍ଣ ହୋଇଥିଲେ। ତନ୍ମଧ୍ୟରୁ ବଳଙ୍ଗା ନିକଟସ୍ଥ ଗଡ଼ତୋରିହଁ ଗ୍ରାମର ଜୟକୃଷ୍ଣ ମହାନ୍ତି କଂଗ୍ରେସ ଟିକଟରେ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ ଗୁଆଳୀପଡ଼ା ଗ୍ରାମର ରଘୁନାଥ ପ୍ରଧାନଙ୍କଠାରୁ ୬ ହଜାରରୁ ଅଧିକ ଭୋଟ ପାଇ ନିର୍ବାଚିତ ହୋଇଥିଲେ। ସେ ହେଉଛନ୍ତି ପିପିଲି ନିର୍ବାଚନ ମଣ୍ଡଳୀର ପ୍ରଥମ ବିଧାୟକ। ସେହିପରି ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ଲୋକନାଥ ମିଶ୍ର ନିର୍ବାଚିତ ହୋଇଥିଲେ। ପ୍ରଥମ ନିର୍ବାଚନର ୫ ବର୍ଷ ପରେ ଆସିଥିଲା ଦ୍ୱିତୀୟ ସାଧାରଣ ନିର୍ବାଚନ। ଏହା ୧୯୫୭ ମସିହା ଫେବୃୟାରୀ ୨୪ ତାରିଖରୁ ଆରମ୍ଭ ହୋଇ ମାର୍ଚ୍ଚ ୧୨ ତାରିଖ ଦିନ ଶେଷ ହୋଇଥିଲା। ଏଥର ପିପିଲି ନିର୍ବାଚନ ମଣ୍ଡଳୀରୁ ସ୍ୱାଧୀନ ପ୍ରାର୍ଥୀ ରାମଚନ୍ଦ୍ର ପଟ୍ଟନାୟକ ତାଙ୍କର ନିକଟତମ କଂଗ୍ରେସ ପ୍ରାର୍ଥୀ ଜୟକୃଷ୍ଣ ମହାନ୍ତିଙ୍କ ଠାରୁ ମାତ୍ର ୫୨୪ ଖଣ୍ଡ ଭୋଟ ଅଧିକ ପାଇ ଜୟଯୁକ୍ତ ହୋଇଥିଲେ। ସେହିପରି ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀରୁ କମ୍ୟୁନିଷ୍ଟ ପ୍ରାର୍ଥୀ ଚିନ୍ତାମଣି ପାଣିଗ୍ରାହୀ ପୂର୍ବତନ ଲୋକସଭା ସଦସ୍ୟ ତଥା କଂଗ୍ରେସ ଦଳର ପ୍ରାର୍ଥୀ ଲୋକନାଥ ମିଶ୍ରଙ୍କୁ ୧୦ ହଜାରରୁ ଅଧିକ ଭୋଟରେ ପରାଜିତ କରି ନିର୍ବାଚିତ ହୋଇଥିଲେ। ଦ୍ୱିତୀୟ ନିର୍ବାଚନର ପ୍ରାୟ ୪ ବର୍ଷ ପରେ ଓଡ଼ିଶାରେ ତୃତୀୟ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇଥିଲା। ଏହାଥିଲା ଏକ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ। ଏହା ୧୯୬୧ ମସିହା ଜୁନ୍ ୨ ତାରିଖରୁ ୮ ତାରିଖ ପର୍ଯ୍ୟନ୍ତ ଚାଲିଥିଲା। ଏଥର ପିପିଲି ନିର୍ବାଚନ ମଣ୍ଡଳୀରୁ ଦ୍ୱିତୀୟଥର ପାଇଁ ରାମଚନ୍ଦ୍ର ପଟ୍ଟନାୟକ ନିର୍ବାଚିତ ହେବାର ଗୌରବ ଅର୍ଜନ କରିପାରି ଥିଲେ। ଏଥର ସେ ଲଢ଼ିଥିଲେ କଂଗ୍ରେସ ପ୍ରାର୍ଥୀ ଭାବେ। ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ବିବୁଧେନ୍ଦ୍ର ମିଶ୍ର କମ୍ୟୁନିଷ୍ଟ ଦଳର ପ୍ରାର୍ଥୀ ଚିନ୍ତାମଣି ପାଣିଗ୍ରାହୀଙ୍କୁ ପରାଜିତ କରି ନିର୍ବାଚିତ ହେବା ସଙ୍ଗେ ସଙ୍ଗେ କେନ୍ଦ୍ରରେ ଜଣେକ ମନ୍ତ୍ରୀ ହେବାର ଗୌରବ ଅର୍ଜନ କରିଥିଲେ।

ତା'ପରେ ଓଡ଼ିଶାରେ ଆରମ୍ଭ ହୋଇଥିଲା ଉଭୟ ବିଧାନସଭା ଓ ଲୋକସଭା ପାଇଁ ଚତୁର୍ଥ ସାଧାରଣ ନିର୍ବାଚନ। ଏହା ୧୯୬୭ ମସିହା ଫେବୃୟାରୀ ୨୦ ତାରିଖ ଦିନ ଅନୁଷ୍ଠିତ ହୋଇଥିଲା। ସେତେବେଳକୁ ଡ଼କ୍ଟର ହରେକୃଷ୍ଣ ମହତାବ, ପବିତ୍ର ମୋହନ ପ୍ରଧାନ ଓ ବନମାଳୀ ପଟ୍ଟନାୟକ ପ୍ରମୁଖ ନେତାମାନେ ଓଡ଼ିଶାରେ ଜନକଂଗ୍ରେସ ନାମରେ ଏକ ଆଞ୍ଚଳିକ ଦଳ ଗଠନ କରିସାରି ଥାଆନ୍ତି। ପିପିଲି ନିର୍ବାଚନ ମଣ୍ଡଳୀରୁ ଉକ୍ତ ଦଳର ପ୍ରାର୍ଥୀ ବନମାଳୀ ପଟ୍ଟନାୟକ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ କଂଗ୍ରେସ ପ୍ରାର୍ଥୀ ରାମଚନ୍ଦ୍ର ପଟ୍ଟନାୟକଙ୍କୁ ପ୍ରାୟ ୧୦ ହଜାରରୁ

Digitized by srujanika@gmail.com

ଅଧିକ ଭୋଟରେ ପରାଜିତ କରି ନିର୍ବାଚିତ ହୋଇଥିଲେ। ସେ ମଧ୍ୟ ଓଡ଼ିଶାର ଶିକ୍ଷାମନ୍ତ୍ରୀ ପଦରେ ଅଧିଷ୍ଠିତ ହେବାର ଗୌରବ ଅର୍ଜନ କରିଥିଲେ। ଏହି ନିର୍ବାଚନରେ ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀରୁ ପ୍ରଜା ସୋସାଲିଷ୍ଟ ପାର୍ଟିର ପ୍ରାର୍ଥୀ ରବି ରାୟ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ କଂଗ୍ରେସ ପ୍ରାର୍ଥୀ ବିବୁଧେନ୍ଦ୍ର ମିଶ୍ରଙ୍କୁ ପ୍ରାୟ ୬୦ ହଜାରରୁ ଅଧିକ ଭୋଟରେ ପରାଜିତ କରି ନିର୍ବାଚିତ ହୋଇଥିଲେ।

୧୯୭୧ ମସିହା ମାର୍ଚ୍ଚ ୫ ତାରିଖ ଦିନ ଓଡ଼ିଶାରେ ପଞ୍ଚମ ସାଧାରଣ ନିର୍ବାଚନ ହୋଇଥିଲା। ଏହାଥିଲା ଏକ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ। ଏଥିରେ ପିପିଲି ବିଧାନସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ଅଭିମନ୍ୟୁ ରଣସିଂ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ ଜୟକୃଷ୍ଣ ମହାନ୍ତିଙ୍କୁ ୫ ହଜାରରୁ ଅଧିକ ଭୋଟରେ ପରାଜିତ କରି ନିର୍ବାଚିତ ହୋଇଥିଲେ। ସେହିପରି ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀରୁ ଜନକଂଗ୍ରେସ ପ୍ରାର୍ଥୀ ବନମାଳୀ ପଟ୍ଟନାୟକ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ ପଦ୍ମଚରଣ ସାମନ୍ତ ସିଂହାରଙ୍କୁ ୩୬ ହଜାରରୁ ଅଧିକ ଭୋଟରେ ପରାସ୍ତ କରି ନିର୍ବାଚିତ ହୋଇଥିଲେ।

ତା'ପରେ ଆସିଥିଲା ଷଷ୍ଠ ସାଧାରଣ ନିର୍ବାଚନ। ଏହା ଥିଲା ରାଜ୍ୟ ବିଧାନସଭା ପାଇଁ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ। ଏହା ୧୯୭୪ ମସିହା ଫେବୃୟାରୀ ମାସ ୨୨, ୨୪ ଓ ୨୬ ତାରିଖ ଦିନ ଅନୁଷ୍ଠିତ ହୋଇଥିଲା। ଏଥର ପିପିଲି ବିଧାନସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ବିପିନ ବିହାରୀ ଦାସ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ ଜୟକୃଷ୍ଣ ମହାନ୍ତିଙ୍କୁ ପ୍ରାୟ ୬ ହଜାରରୁ ଊର୍ଦ୍ଧ୍ୱ ଭୋଟରେ ପରାସ୍ତ କରି ନିର୍ବାଚିତ ହୋଇଥିଲେ। ଲୋକସଭା ପାଇଁ ଷଷ୍ଠ ସାଧାରଣ ନିର୍ବାଚନ ହୋଇଥିଲା ୧୯୭୭ ମସିହା ମାର୍ଚ୍ଚ ୧୬ ତାରିଖ ଦିନ। ଏଥିରେ ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀରୁ ଜନତାଦଳ ପ୍ରାର୍ଥୀ ପଦ୍ମଚରଣ ସାମନ୍ତ ସିଂହାର ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ ବନମାଳୀ ପଟ୍ଟନାୟକଙ୍କୁ ପ୍ରାୟ ୭୦ ହଜାରରୁ ଊର୍ଦ୍ଧ୍ୱ ଭୋଟରେ ପରାସ୍ତ କରି ଜୟଯୁକ୍ତ ହୋଇଥିଲେ।

୧୯୭୭ ମସିହା ଜୁନ୍ ୧୦ ତାରିଖ ଦିନ ଓଡ଼ିଶା ବିଧାନସଭା ପାଇଁ ସପ୍ତମ ସାଧାରଣ ନିର୍ବାଚନ ହୋଇଥିଲା। ଏହି ନିର୍ବାଚନରେ ପିପିଲି ବିଧାନସଭା ନିର୍ବାଚନ ମଣ୍ଡଳୀରୁ ପୂର୍ବତନ ବିଧାୟକ ଜୟକୃଷ୍ଣ ମହାନ୍ତିଙ୍କର ପତ୍ନୀ ଶ୍ରୀମତୀ କିରଣଲେଖା ମହାନ୍ତି ଜନତାଦଳ ଟିକେଟରେ ନିର୍ବାଚିତ ହୋଇଥିଲେ। ସେ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ କଂଗ୍ରେସ ପ୍ରାର୍ଥୀ ବିପିନ ବିହାରୀ ଦାଶଙ୍କୁ ୭ ହଜାରରୁ ଊର୍ଦ୍ଧ୍ୱ ଭୋଟରେ ପରାଜିତ କରିଥିଲେ।

Digitized by srujanika@gmail.com

୧୯୮୦ ମସିହା ଜାନୁୟାରୀ ୩ ତାରିଖ ଦିନ ଓଡ଼ିଶାରେ ସପ୍ତମ ଲୋକ ସଭା ପାଇଁ ନିର୍ବାଚନ ହୋଇଥିଲା। ପୁରୀ ଲୋକସଭା ଆସନରୁ କଂଗ୍ରେସ ପ୍ରାର୍ଥୀ ବ୍ରଜମୋହନ ମହାନ୍ତି ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ ପଦ୍ମଚରଣ ସାମନ୍ତ ସିଂହାରଙ୍କୁ ୧ ଲକ୍ଷ ୨୦ ହଜାରରୁ ଊର୍ଦ୍ଧ୍ୱ ଭୋଟରେ ପରାସ୍ତ କରି ଜୟଯୁକ୍ତ ହେବା ସଂଗେ ସଂଗେ କେନ୍ଦ୍ରରେ ଉପମନ୍ତ୍ରୀ ହେବାର ଗୌରବ ଅର୍ଜନ କରିପାରିଥିଲେ।

ସପ୍ତମ ଲୋକସଭା ନିର୍ବାଚନର ମାତ୍ର ୪ ମାସ ପରେ ଓଡ଼ିଶା ବିଧାନସଭା ପାଇଁ ଅଷ୍ଟମ ସାଧାରଣ ନିର୍ବାଚନ ହୋଇଥିଲା। ଏହି ନିର୍ବାଚନରେ ପିପିଲିର ପୂର୍ବତନ ବିଧାୟକ କଂଗ୍ରେସ ପ୍ରାର୍ଥୀ ବିପିନି ବିହାରୀ ଦାଶ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ ଜନତାଦଳ ପ୍ରାର୍ଥୀ ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ଠାରୁ ୭ ହଜାର ଅଧିକ ଭୋଟ ପାଇ ନିର୍ବାଚିତ ହୋଇଥିଲେ। ସେ ମଧ୍ୟ କଂଗ୍ରେସ ଦଳର ମୁଖ୍ୟ ସଚେତକ ହେବାର ସୁଯୋଗ ଲାଭ କରିଥିଲେ। ୧୯୮୪ ମସିହା ଡିସେମ୍ବର ୨୪ ତାରିଖ ଦିନ ଓଡ଼ିଶାର ଅଷ୍ଟମ ଲୋକସଭା ପାଇଁ ନିର୍ବାଚନ ହୋଇଥିଲା। ଏହି ନିର୍ବାଚନରେ ପୁରୀ ଲୋକସଭା ଆସନରୁ କଂଗ୍ରେସ ପ୍ରାର୍ଥୀ ବ୍ରଜମୋହନ ମହାନ୍ତି ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ ଜନତାଦଳ ପ୍ରାର୍ଥୀ ବାରିଷ୍ଟର ରଣଜିତ୍ ମହାନ୍ତିଙ୍କୁ ପ୍ରାୟ ୧ ଲକ୍ଷ ୫ ହଜାରରୁ ଅଧିକ ଭୋଟରେ ପରାସ୍ତ କରି ଦ୍ୱିତୀୟ ଥର ପାଇଁ ନିର୍ବାଚିତ ହୋଇଥିଲେ।

୧୯୮୫ ମସିହା ମାର୍ଚ୍ଚ ୫ ତାରିଖ ଦିନ ଓଡ଼ିଶା ବିଧାନସଭା ପାଇଁ ନବମ ନିର୍ବାଚନ ହୋଇଥିଲା। ଏହି ନିର୍ବାଚନରେ ପିପିଲି ବିଧାନସଭା ନିର୍ବାଚନ ମଣ୍ଡଳୀରୁ ଜନତାଦଳ ପ୍ରାର୍ଥୀ ପ୍ରଦୀପ କୁମାର ମହାରଥୀ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ କଂଗ୍ରେସ ଦଳର ବିପିନ ବିହାରୀ ଦାଶଙ୍କୁ ମାତ୍ର ୩୩୯ ଅଧିକ ଭୋଟରେ ପରାଜିତ କରି ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ତାର ୪ ବର୍ଷ ପରେ ୧୯୮୯ ମସିହା ନଭେମ୍ବର ମାସ ୨୪ ତାରିଖ ଦିନ ଓଡ଼ିଶାର ନବମ ଲୋକସଭା ନିର୍ବାଚନ ଅନୁଷ୍ଠିତ ହୋଇଥିଲା। ଏହି ନିର୍ବାଚନରେ ପୁରୀ ଲୋକସଭା ଆସନରୁ ଜନତାଦଳ ପ୍ରାର୍ଥୀ ତଥା ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ କଂଗ୍ରେସ ତଥା ପୂର୍ବତନ ଉପମନ୍ତ୍ରୀ ବ୍ରଜମୋହନ ମହାନ୍ତିଙ୍କୁ ପ୍ରାୟ ୧ ଲକ୍ଷ ୪୦ ହଜାରରୁ ଅଧିକ ଭୋଟରେ ପରାସ୍ତ କରି ନିର୍ବାଚିତ ହେବା ସଂଗେ ସଂଗେ କେନ୍ଦ୍ରରେ ଜଣେ କ୍ୟାବିନେଟ ପାହ୍ୟା ମନ୍ତ୍ରୀ ହେବାର ସୁଯୋଗ ଲାଭ କରିଥିଲେ।

Digitized by srujanika@gmail.com

୧୯୯୦ ମସିହା ଫେବୃୟାରୀ ମାସ ୨୪ ତାରିଖ ଦିନ ଓଡ଼ିଶା ବିଧାନସଭା ପାଇଁ ଦଶମ ନିର୍ବାଚନ ହୋଇଥିଲା। ଏହି ନିର୍ବାଚନରେ ପିପିଲି ବିଧାନସଭା ନିର୍ବାଚନ ମଣ୍ଡଳୀରୁ ଜନତାଦଳ ପ୍ରାର୍ଥୀ ପ୍ରଦୀପ କୁମାର ମହାରଥୀ ଦ୍ୱିତୀୟଥର ପାଇଁ ନିର୍ବାଚିତ ହୋଇଥିଲେ। ସେ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ କଂଗ୍ରେସ ପ୍ରାର୍ଥୀ ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କୁ ୩୦ ହଜାରରୁ ଅଧିକ ଭୋଟରେ ପରାଜିତ କରି ନିର୍ବାଚିତ ହେବା ସଂଗେ ସଂଗେ ଜନତାଦଳର ଉପମୁଖ୍ୟ ସଚେତକ ହେବାର ସୁଯୋଗ ଲାଭ କରିଥିଲେ। ଏବେ ମଧ୍ୟ ସେ ଉକ୍ତ ଦାୟିତ୍ୱରେ ରହିଛନ୍ତି।

୧୯୯୧ ମସିହା ଜୁନ ମାସ ୧୫ ତାରିଖ ଦଶମ ଲୋକସଭା ପାଇଁ ନିର୍ବାଚନ ହୋଇଥିଲା। ଏଥିରେ ପୁରୀ ଲୋକସଭା ଆସନରୁ ଜନତାଦଳ ପ୍ରାର୍ଥୀ ବ୍ରଜକିଶୋର ତ୍ରିପାଠୀ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ କଂଗ୍ରେସ (ଇ) ପ୍ରାର୍ଥୀ ଗଙ୍ଗାଧର ମହାପାତ୍ରଙ୍କୁ ପ୍ରାୟ ୫୦ ହଜାରରୁ ଅଧିକ ଭୋଟରେ ପରାସ୍ତ କରି ନିର୍ବାଚିତ ହୋଇଥିଲେ। ଏବେ ମଧ ସେ ଉକ୍ତ ନିର୍ବାଚନ ମଣ୍ଡଳୀର ଲୋକସଭା ସଦସ୍ୟ ଅଛନ୍ତି।

ଏହି ପରିପ୍ରେକ୍ଷୀରେ ସ୍ୱାୟତ୍ତ ଶାସନ ସଂସ୍ଥାର ଚିତ୍ର ଉପରେ ସମ୍ୟକ୍ ଆଲୋକପାତ କରିବା ଆବଶ୍ୟକ।

## ସ୍ୱାୟତ୍ତ ଶାସନ ସଂସ୍ଥାର ଇତିକଥା

ପିପିଲି ପଞ୍ଚାୟତ ସମିତି ଗଠିତ ହେବା ପରେ ତା'ର ଚେୟାରମ୍ୟାନ୍ ପଦ ପାଇଁ ନିର୍ବାଚନ ହୋଇଥିଲା। ନୂଆଶାସନ ଗ୍ରାମର ଜଗବନ୍ଧୁ ଦାସ ନିର୍ବାଚିତ ହୋଇ ପ୍ରଥମ ଚେୟାରମ୍ୟାନ୍ ହେବାର ଗୌରବ ଅର୍ଜନ କରିପାରିଥିଲେ। ତାଙ୍କ ପରେ ଦ୍ୱିତୀୟ ଚେୟାରମ୍ୟାନ୍ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ, ଦାଣ୍ଡମୁକୁନ୍ଦପୁର ଗ୍ରାମର ପୂର୍ଣ୍ଣଚନ୍ଦ୍ର ମିଶ୍ର। ତୃତୀୟ ଚେୟାରମ୍ୟାନ୍ ପଦକୁ ଅଳଂକୃତ କରିଥିଲେ ଯୁଧିଷ୍ଠିର ସାମନ୍ତରାୟ। ବର୍ତ୍ତମାନ ପଞ୍ଚାୟତ ସମିତିର ୪ର୍ଥ ଚେୟାରମ୍ୟାନ୍ ଭାବେ ଗଦାଧର ଦାସ ଅଧିଷ୍ଠିତ।

୧୯୬୦ ମସିହା ଅକ୍ଟୋବର ମାସ ପହିଲା ତାରିଖରେ ଡେଲାଙ୍ଗ ବ୍ଲକ୍ ଗଠିତ ହୋଇଥିଲା। ୧୯୬୧ ମସିହା ମାର୍ଚ୍ଚ ମାସ ୧୯ ତାରିଖରେ ଗୋପବନ୍ଧୁ ଜେନା ଏହି ବ୍ଲକ୍‌ର ପ୍ରଥମ ନିର୍ବାଚିତ ଅଧକ୍ଷ ହେବାର ଗୌରବ ଅର୍ଜନ କରିଥିଲେ। ପରେ ପରେ କ୍ରମାନ୍ୱୟରେ ଗୋଲଖ ବିହାରୀ ଛୋଟରାୟ, ହରିହର ଜେନା, ବାନାମ୍ବର ନାୟକ ଓ ସତ୍ୟବାଦୀ ସ୍ୱାଇଁ ଏହାର ଅଧକ୍ଷ ପଦ

Digitized by srujanika@gmail.com

ଅଳଙ୍କୃତ କରିଥିଲେ। ବର୍ତ୍ତମାନ ବୈରାଗୀ ଜେନା ଏହି ବ୍ଲକର ଅଧ୍ୟକ୍ଷ ଭାବେ ଅଧିଷ୍ଠିତ।

ତା'ପରେ ଦେଖାଯାଉ ପିପିଲି ବିଜ୍ଞାପିତ ଅଞ୍ଚଳ ପରିଷଦର କଥା। ୧୯୭୨ ମସିହା ଏପ୍ରିଲ ମାସରେ ୧୨ ଟି ଓ୍ୱାର୍ଡ଼କୁ ନେଇ ପିପିଲି ବିଜ୍ଞାପିତ ଅଞ୍ଚଳ ପରିଷଦ ଗଠିତ ହୁଏ। ସେତେବେଳେ ପୁରୀର ଏସ୍.ଡ଼ି.ଓ ତା'ର ଚେୟାରମେନ୍ ଥିଲେ ଓ ଦିବାକର ଶତପଥୀ ଭାଇସ୍ ଚେୟାରମ୍ୟାନ୍ ଭାବେ ନିର୍ବାଚିତ ହୋଇଥିଲେ। ୧୯୭୫ରେ ହୋଇଥିବା ନିର୍ବାଚନରେ ଶ୍ରୀ ଗୋକୁଳାନନ୍ଦ ମହାନ୍ତି ତାଙ୍କର ପ୍ରତିଦ୍ୱନ୍ଦୀ ମହମ୍ମଦ ଅବ୍‌ଦୁଲ ଲତିଫ୍‌ଙ୍କୁ ପରାଜିତ କରି ଏନ୍.ଏ.ସିର ଚେୟାରମେନ୍ ହୋଇଥିଲେ। ୧୯୮୪ରେ ହୋଇଥିବା ନିର୍ବାଚନରେ ପୁନର୍ବାର ଗୋକୁଳାନନ୍ଦ ମହାନ୍ତି ତାଙ୍କର ପ୍ରତିଦ୍ୱନ୍ଦୀ ସେକ୍ ଫକୀରଙ୍କୁ ପରାଜିତ କରି ୨ୟ ଥର ପାଇଁ ଚେୟାରମେନ୍ ହୋଇଥିଲେ। ୧୯୯୨ ମସିହା ଫେବୃୟାରୀ ୨୮ ତାରିଖରେ ଅନୁଷ୍ଠିତ ନିର୍ବାଚନରେ ଗୋକୁଳାନନ୍ଦବାବୁ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦୀ ସୁରେଶ୍ୱର ପ୍ରସାଦ ଗିରିଙ୍କୁ ୭୫୦ ଅଧିକ ଭୋଟରେ ପରାଜିତ କରି ତୃତୀୟ ଥର ପାଇଁ ଚେୟାରମେନ୍ ଭାବେ ନିର୍ବାଚିତ ହୋଇଛନ୍ତି।

ଏହା ହେଉଛି ସ୍ୱାଧୀନତା ପରଠାରୁ ଆଜି ପର୍ଯ୍ୟନ୍ତ ପିପିଲି ଅଞ୍ଚଳର ରାଜନୈତିକ ଚିତ୍ର। ଏହାକୁ ବିଶେଷ ଭାବେ ଅନୁଧ୍ୟାନ କଲେ ଜଣାଯିବ ଯେ, ୧୯୭୪ ମସିହା ଠାରୁ ପିପିଲିର ରାଜନୈତିକ ରଙ୍ଗମଞ୍ଚରେ କେତେ ଜଣ ଯୁବ ପ୍ରତିଭାଙ୍କର ଆବିର୍ଭାବ ହୋଇଛି। ସେମାନେ ନିର୍ବାଚନ ରଣାଙ୍ଗନରେ ଅବତୀର୍ଣ୍ଣ ହୋଇ ଦୁଇ ଦୁଇଥର ବରିଷ୍ଠ ଓ ପୁରୁଖା ନେତାଙ୍କୁ ପରାଜିତ କରି ବିଜୟ ଲାଭ କରିଛନ୍ତି। ତାହା ସେମାନଙ୍କର ଜନପ୍ରିୟତା ଓ କାର୍ଯ୍ୟ ଦକ୍ଷତାର ପରିଚୟ ଦେଇଥାଏ। ସେମାନେ ହେଲେ ବିପିନ ବିହାରୀ ଦାଶ, ପ୍ରଦୀପ କୁମାର ମହାରଥୀ, ଗୋକୁଳାନନ୍ଦ ମହାନ୍ତି, ଯୁଧିଷ୍ଠିର ସାମନ୍ତରାୟ, ଗଦାଧର ଦାଶ ଓ ବୈରାଗୀ ଜେନା।

□ □ □

Digitized by srujanika@gmail.com

# ଷଷ୍ଠ ଅଧ୍ୟାୟ

## ପିପିଲିର ଅର୍ଥନୈତିକ ଐତିହ୍ୟ

ପିପିଲିର ରାଜନୈତିକ ଇତିହାସର ଏକ ବର୍ଣ୍ଣନା ଦେବା ପରେ ଏହାର ଅର୍ଥନୈତିକ ଐତିହ୍ୟ ଆଲୋଚନା ପରିସରଭୁକ୍ତ ହେବା ବାଞ୍ଛନୀୟ। କାରଣ, ଏହା ହେଉଛି ପ୍ରକୃତ ପକ୍ଷେ ସେଠାକାର ଅଧିବାସୀଙ୍କ ଜୀବନ-ଯାପନ ପ୍ରଣାଳୀର ଏକ ଆଂଶିକ ଚିତ୍ର। କୌଣସି ଏକ ଅଞ୍ଚଳର ଇତିହାସ ପ୍ରଣୟନ କରିବାକୁ ହେଲେ ସେ ଅଞ୍ଚଳର ସାଧାରଣ ଲୋକଙ୍କର ଜୀବନ-ଜୀବିକାକୁ ଆଲୋଚନା ପରିସରକୁ ନ ଆଣିଲେ ତାହା ପୂର୍ଣ୍ଣାଙ୍ଗ ହୋଇପାରେ ନାହିଁ। ସେହି ଦୃଷ୍ଟିରୁ ଏହି ପୁସ୍ତକରେ ଉକ୍ତ ଅଧ୍ୟାୟର ଅବତାରଣା।

କୌଣସି ଏକ ସ୍ଥାନର ଅର୍ଥନୀତି କହିଲେ ମୁଖ୍ୟତଃ ତା'ର ଶିଳ୍ପ, କୃଷି, ଜୀବିକା ବ୍ୟବସାୟ ଓ ବାଣିଜ୍ୟ ଆଦିକୁ ବୁଝାଇ ଥାଏ। ତେଣୁ ଏ ଦିଗରେ ପ୍ରୟାସୀ ହୋଇ ପିପିଲିର ସେହିସବୁ ବିଷୟ ଉପରେ ଏକ ଧାରାବାହିକ ବର୍ଣ୍ଣନା ନିମ୍ନରେ ପ୍ରଦତ୍ତ ହୋଇଛି।

### ଶିଳ୍ପ

ପିପିଲି ଅଞ୍ଚଳରେ ସେପରି କିଛି ବୃହତ ଶିଳ୍ପ ଗଢ଼ି ଉଠିନାହିଁ। ସମ୍ଭବତଃ, ଏଠାରେ ସେହି ପ୍ରକାରର ଏକ ଶିଳ୍ପ ପ୍ରତିଷ୍ଠା ପାଇଁ ଆବଶ୍ୟକୀୟ କଞ୍ଚାମାଲ ନାହିଁ କି ଏହି ଅଞ୍ଚଳର ନେତୃବର୍ଗ ଓ କର୍ତ୍ତୃପକ୍ଷ ଏ ଦିଗରେ ସଚେଷ୍ଟ ହୋଇ ନାହାନ୍ତି। ସେମାନେ ଅଧିକ ଦୃଷ୍ଟି ଦେଇଛନ୍ତି କୃଷିର ଉନ୍ନତି ପାଇଁ। କାରଣ



Digitized by srujanika@gmail.com

ତଦ୍ୱାରା ଅଧିକ ସଂଖ୍ୟକ ଲୋକ ଉପକୃତ ହୋଇ ପାରିବେ ଓ ହେଉଛନ୍ତି ମଧ୍ୟ। ଯେଉଁମାନେ କୃଷି ପ୍ରତି ଆଗ୍ରହୀ ହୋଇ ନାହାନ୍ତି, ସେମାନେ ପିପିଲିଠାରୁ ଅନତିଦୂରରେ ଅବସ୍ଥିତ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ଚାକିରି କରିଛନ୍ତି। କେତେକ ମଧ୍ୟ କାର୍ଯ୍ୟ କରୁଛନ୍ତି, ଜିଲାର ସଦର ସହକୁମା ପୁରୀରେ। ଆଉ କେତେକ ନିଯୁକ୍ତ ହୋଇଛନ୍ତି ଭୁବନେଶ୍ୱରର ଶିଳ୍ପାଞ୍ଚଳରେ। ଦୂରତ୍ୱର ସ୍ୱଳ୍ପତା ଓ ଗମନାଗମନର ସୁବିଧା ଦୃଷ୍ଟିରୁ ସେମାନେ ପ୍ରତ୍ୟହ ନିଜ ଘରୁ ମଧ୍ୟ ଯାତାୟାତ କରିପାରୁଛନ୍ତି। ମାତ୍ର କୁଟୀର ଶିଳ୍ପରେ ପିପିଲି ନିଜକୁ ପ୍ରତିଷ୍ଠିତ କରାଇ ପାରିଛି ସର୍ବଭାରତୀୟ ସ୍ତରରେ କାହିଁକି ସମଗ୍ର ବିଶ୍ୱ ଦରବାରରେ। ତାହା ହେଉଛି ତା'ର ଚାନ୍ଦୁଆ, ସାମିଆନା, ଛତି ଡ୍ରାସ ଆଦିର ପ୍ରସ୍ତୁତି ପାଇଁ। ହସ୍ତତନ୍ତରେ ବସ୍ତ୍ର ବୟନ ଓ ବାଣ ତିଆରିରେ ମଧ୍ୟ ପିପିଲି ପ୍ରସିଦ୍ଧି ଲାଭ କରିଛି। ସେ ସବୁର ବର୍ଣ୍ଣନା ଏଠାରେ ଦିଆ ଯାଇଛି।

## ପିପିଲିର ଚାନ୍ଦୁଆ ଶିଳ୍ପ

ଭୁବନେଶ୍ୱରଠାରୁ ପୁରୀ ଆଡ଼କୁ ଗଲେ, ପିପିଲି ବଜାର ମଧ୍ୟରେ ଗତି କରିଥିବା ୮ ନମ୍ବର ରାଜପଥର ଉଭୟ ପାର୍ଶ୍ୱରେ ନାନାରଙ୍ଗର ସୂଚୀ କାମଥାଇ କନାରେ ତିଆରି ଭିନ୍ନ ଭିନ୍ନ ପ୍ରକାରର ଜିନିଷ ଝୁଲା ଯାଇଥିବାର ଦେଖିବାକୁ ମିଳେ। ସେଗୁଡ଼ିକ ଦେଖି ଯାତ୍ରୀମାନେ କହନ୍ତି ପିପିଲି ଆସିଗଲା। କାରଣ ତାହା ପିପିଲି ବଜାରର ପ୍ରଧାନ ସଙ୍କେତ। ଜିନିଷଗୁଡ଼ିକ ଏତେ ମନୋମୁଗ୍ଧକର ଓ ଆକର୍ଷଣୀୟ ଯେ ଦର୍ଶକର ଚକ୍ଷୁ ତାରି ଉପରେ ନିବଦ୍ଧ ହୋଇଥିବାର ଦେଖାଯାଏ। ସେଠାରେ ପହଞ୍ଚିଗଲେ ମନେହୁଏ ସତେ ଯେପରି ପିପିଲି ସେହି ବର୍ଣ୍ଣାଢ୍ୟ ସାମଗ୍ରୀ ଧରି ଏକ ମନୋଜ୍ଞ ପରିବେଶ ମଧ୍ୟରେ ଯାତ୍ରୀମାନଙ୍କୁ ସ୍ୱାଗତ ଜଣାଉଛି। ସେହି ଚାନ୍ଦୁଆ ଶିଳ୍ପର ଏକ ପାରମ୍ପରିକ ଇତିହାସ ଏଠାରେ ଦିଆଯାଇଛି।

ପିପିଲିରେ ଚାନ୍ଦୁଆ ଆଦିର ତିଆରି କେବେ ଓ କିପରି ଆରମ୍ଭ ହୋଇଛି ତାହା ସଠିକ ଭାବେ କହି ନହେଲେ ମଧ୍ୟ ଏହା ୮୫୦ ବର୍ଷ ପୂର୍ବର ଏକ ପୁରାତନ ହସ୍ତଶିଳ୍ପ ବୋଲି କୁହାଯାଇ ପାରେ। ପୁରୀ ଜଗନ୍ନାଥ ମନ୍ଦିରର ନିର୍ମାଣ କାର୍ଯ୍ୟ ପ୍ରଥିତ ଯଶା ଗଙ୍ଗ-ସମ୍ରାଟ ଚୋଡ଼ଗଙ୍ଗଦେବଙ୍କ ଦ୍ୱାରା ୧୧୩୪-୩୫ ଖ୍ରୀଷ୍ଟାବ୍ଦରେ ଆରମ୍ଭ କରାଯାଇ ତାଙ୍କର ପରବର୍ତ୍ତୀ ଶାସକ ଅନଙ୍ଗଭୀମ ଦେବଙ୍କ ରାଜତ୍ୱରେ ସମାପ୍ତ ହୋଇଥିଲା। ମନ୍ଦିର ମଧ୍ୟରେ ବିଗ୍ରହ ପ୍ରତିଷ୍ଠା ପରେ ସମ୍ଭବତଃ ପ୍ରଥମେ ଆବଶ୍ୟକ ହୋଇଥିଲା ମନ୍ଦିରର ଅଗ୍ରଭାଗରେ ଉଡ଼ାଇବା ପାଇଁ ଏକ

Digitized by srujanika@gmail.com

ପତାକା । ପତାକା ହିନ୍ଦୁ ମନ୍ଦିରର ଏକ ପ୍ରଧାନ ପ୍ରତୀକ ବୋଲି ବିବେଚିତ ହୁଏ । ଏହାକୁ କପିକେତନ ବାନା ବୋଲି କୁହାଯାଉଥିଲା । ଏବେ ଏହା ପତିତପାବନ ବାନା ନାମରେ ପ୍ରସିଦ୍ଧ । ଏହି ବାନା ବ୍ୟତୀତ ବିଗ୍ରହମାନଙ୍କ ଆସ୍ଥାନ ଉପରେ ଟଙ୍ଗାଇବା ପାଇଁ ଏକ ଚାନ୍ଦୁଆ ମଧ୍ୟ ଆବଶ୍ୟକ ହୋଇଥିବ । ଏହା କେଉଁଠୁ ମିଳିବ, ଏହାର ଖବର ଗଙ୍ଗରାଜା ରଖିଥିବେ । ସେହି ସମୟକୁ ଅନ୍ୟ କୌଣସି ସ୍ଥାନରୁ ପିପିଲିକୁ ଗୋଟିଏ ଦୁଇଟି ପରିବାର ଆସି ଜୀବିକା-ନିର୍ବାହ ପାଇଁ କନାରେ ବିଭିନ୍ନ ସିଲାଇ କାମ କରିବା ଆରମ୍ଭ କରିଦେଇ ଥାଆନ୍ତି । ସେମାନେ ଦରଜୀ ନାମରେ କଥିତ ହୋଇଥିଲେ । ଅଭିଧାନରେ ଦରଜୀ ଶବ୍ଦର ଅର୍ଥ- କନା ସିଲେଇ କରୁଥିବା କାରିଗର ବୋଲି ଉଲ୍ଲେଖ ଅଛି । ସେମାନେ ଖଣ୍ଡପଡ଼ା ଓ ନୟାଗଡ଼ରୁ ପିପିଲି ଆସିଥିବାର ଜଣାଯାଏ । ଦରଜୀମାନେ ଅନ୍ୟସ୍ଥାନରୁ ଆସି ପିପିଲିରେ ବାସ କରୁଥିବା ତଥ୍ୟ ଅସଙ୍ଗତ ମନେହୁଏ ନାହିଁ । କାରଣ ପିପିଲି ବଜାର ନିକଟରେ ଯେଉଁ ସବୁ ଜନ-ବସତି ଗଢ଼ି ଉଠିଛି ସେ ସବୁ ଉକ୍ତ ସ୍ଥାନର ନିଜସ୍ୱ ଲୋକମାନଙ୍କ ଦ୍ୱାରା ନୁହେଁ । ସେମାନେ ସମସ୍ତେ ଆସିଛନ୍ତି ବାହାରୁ ମୁଖ୍ୟତଃ ପିପିଲିର ଭୌଗୋଳିକ ଅବସ୍ଥିତି ପାଇଁ । ଠିକ୍ ପିପିଲି ବଜାରକୁ ଲାଗି ଜଗନ୍ନାଥ ସଡ଼କର ବାମପଟରେ ଅବସ୍ଥିତ ଦରଜୀ ସାହି ଏହି ତଥ୍ୟର ସତ୍ୟତା ପ୍ରତିପାଦନ କରିଥାଏ । ସେ ଯାହାହେଉ ଦ୍ୱାଦଶ ଶତାବ୍ଦୀରେ ପିପିଲିରେ ବସବାସ କରୁଥିବା କନାସିଲେଇ କାରିଗରଙ୍କୁ ରାଜା ଦ୍ୱିତୀୟ ଅନଙ୍ଗଭୀମଦେବ ଖବର ପ୍ରେରଣ କରିଥିବେ, ଶ୍ରୀମନ୍ଦିର ପାଇଁ କପିକେତନ ବାନା ଓ ଚାନ୍ଦୁଆ ଯୋଗାଇବା ପାଇଁ । ଦରଜୀମାନେ ସ୍ୱତଃ ପ୍ରବୃତ୍ତ ହୋଇ ମଧ୍ୟ ଜଗନ୍ନାଥ ମନ୍ଦିରକୁ ତାହା ଦାନ କରି ପାରିଥା'ନ୍ତି । ପରେ ପରେ ଆବଶ୍ୟକ ପଡ଼ିପାରିଥାଏ ରଥ-ଯାତ୍ରା ପାଇଁ ଛତି, ତ୍ରାସ, ଆଲଟ ଓ ଆଢ଼େଣୀ । ତାହା ଦରଜୀମାନେ ପ୍ରସ୍ତୁତ କରି ରଥଯାତ୍ରା ଓ ଅନ୍ୟଯାତ୍ରା ସମୟରେ ଯୋଗାଇ ଜଗନ୍ନାଥଙ୍କୁ ପ୍ରୀତ କରାଇବାର ଅଭିଳାଷ ପୂର୍ଣ୍ଣକରିବା ସଙ୍ଗେ ସଙ୍ଗେ ତା'ର ପ୍ରସାର ପାଇଁ ଉଦ୍ୟମ କରିଥିବାର ଅନୁମାନ କରାଯାଏ ।

ଅବଶ୍ୟ ଏହି ଛତି, ତ୍ରାସ, ଆଲଟ ଓ ଆଢ଼େଣୀ ଆଦି ଜିନିଷ ଜଗନ୍ନାଥ ମନ୍ଦିର ବା ତା' ବେଢ଼ା ମଧ୍ୟରେ ବ୍ୟବହାର କରିବା ମନା । ସେଗୁଡ଼ିକ ମନ୍ଦିର ବାହାରେ କେତେକ ଯାତ୍ରା ଓ ଉତ୍ସବରେ ବ୍ୟବହାର କରାଯାଇଥାଏ । ଏଥିପାଇଁ ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଖଣ୍ଡପଡ଼ା ଓ ପୁରୀ ରାଜାଙ୍କ ମଧ୍ୟରେ ଘୋର ବିବାଦ ଉପୁଜି ଶେଷରେ ଇଂରେଜ ପ୍ରଶାସକ ତା'ର ସମାଧାନ କରିଥିଲେ ।

Digitized by srujanika@gmail.com

କଳହ ଉପୁଜି ଥିଲା, ଯେତେବେଳେ ଖଣ୍ଡପଡ଼ା ରାଜା ନିଜର ଛତି, ଡ୍ରାସ ଓ ଆଲଟ ଆଦିଧରି ମନ୍ଦିର ମଧ୍ୟକୁ ପ୍ରବେଶ କରିବାର ଉଦ୍ୟମ କଲେ। ଏ ବିଷୟରେ ମୁଁ ପୁରୀ ଗଜପତି ରାଜାଙ୍କର "ସ୍ୱତନ୍ତ୍ର କ୍ଷମତା" ଶିରୋନାମାରେ ଏକ ପ୍ରବନ୍ଧ ପ୍ରକାଶ କରିଥିଲି। ସେ ଯାହା ହେଉ, ଏ ସବୁ ତଥ୍ୟ ବିଚାରକୁ ନେଲେ ପିପିଲିର ବିଶ୍ୱ-ପ୍ରସିଦ୍ଧ ସୂଚୀକଳା ଯେ ବହୁ ପୁରାତନ, ଏଥିରେ ସନ୍ଦେହ ନାହିଁ। ଏହାର ଆରମ୍ଭ ଖ୍ରୀଷ୍ଟିୟ ଦ୍ୱାଦଶ ଶତାବ୍ଦୀରେ ବୋଲି କୁହାଯାଇପାରେ।

ପରେ ପରେ ପିପିଲିରେ ଦରଜୀଙ୍କ ପରିବାର ବୃଦ୍ଧି ପ୍ରାପ୍ତ ହୋଇଥିଲା। ସେମାନେ ମହାପାତ୍ର, ମହାରଣା ଆଦି ସଂଜ୍ଞା ଗ୍ରହଣ କରିଥିଲେ। ଏମାନେ ଗାଁ ଗାଁରେ ବୁଲି ଛତା ଓ ଲୁଗା ସିଲାଇ କରିବା ସଙ୍ଗେ ସଙ୍ଗେ ଅବସର ସମୟକୁ ନିୟୋଜିତ କରିଥିଲେ ଛତି, ଡ୍ରାସ ଓ ଆଲଟ ତିଆରି କରିବାରେ। ଏତଦ୍ ବ୍ୟତୀତ ସେମାନେ ଚିନ୍ତାକରି ଜାଣି ପାରିଥିଲେ ଯେ, ସେତେବେଳେ ମଣିଷର ସବୁଠାରୁ ଅଧିକ ଆବଶ୍ୟକ ପଡୁଥିଲା ପାନ ସରଞ୍ଜାମ, ପଇସା ଓ ଛୋଟ ଛୋଟ ଜିନିଷ ରଖିବା ପାଇଁ ଥଳିଟିଏ। କାରଣ ସେତେବେଳେ ପଇସା, ମୁଦ୍ରା ବା ନୋଟ୍ ଟଙ୍କାର ପ୍ରଚଳନ ନଥିଲା। ସେମାନେ ମୁଦ୍ରା ଆକାରରେ ବ୍ୟବହାର କରୁଥିଲେ କଉଡ଼ି। କଉଡ଼ି ବି ଗୋଟେ ଦୁଇଟା ନେଲେ କାମ ଚଳୁ ନଥିଲା। କୌଣସି ଜିନିଷ କିଣିବାକୁ ହେଲେ ପଣପଣ କଉଡ଼ି ନେବାର ଆବଶ୍ୟକତା ପଡୁଥିଲା। ୮୦ଟି କଉଡ଼ିରେ ଗୋଟିଏ ପଣ ହୋଇଥାଏ। ସୁତରାଂ, ଏତେ ସଂଖ୍ୟକ କଉଡ଼ି ପୁଣି ତା ସହିତ ସେତେବେଳର ଓଡ଼ିଆଙ୍କର ଏକମାତ୍ର ବିଳାସ ବ୍ୟସନର ଆଧାର ପାନ ଓ ତା'ର ସରଞ୍ଜାମ ନେବାକୁ ହେଲେ ଆବଶ୍ୟକତାନୁଯାୟୀ ଖୋଲିବା ଓ ବନ୍ଦ କରିବାର ସୁବଧା ଥାଇ ଥଳିଟିଏ ଦରକାର। ପୁଣି ତା'କୁ ଯେପରି ହାତରେ ନେଇହେବ, ଦରକାର ପଡ଼ିଲେ କମର ଦେହରେ ବାନ୍ଧିହେବ କିମ୍ବା କାନ୍ଧରେ ଝୁଲାଇ ରଖିହେବ। ଏସବୁର ବ୍ୟବସ୍ଥା ଥାଇ ପିପିଲିର ଦରଜୀ କନାର ଥଳିଟିଏ ସିଲାଇ କଲା। ତା'ର ନାମ ରଖିଲା 'ବଟୁଆ'। ପିପିଲି ତିଆରି ବଟୁଆ ସେତେବେଳେ ଏପରି ଜନପ୍ରିୟ ହୋଇପାରିଥିଲା ଯେ ଓଡ଼ିଶା, ଆସାମ ଓ ବଙ୍ଗଳାରେ ଏହାର ବହୁଳ ପ୍ରଚଳନ ଦେଖାଯାଇଥିଲା। ପିପିଲିର ଦରଜୀମାନେ ସିଲାଇ କରିଥିବାର ପ୍ରଥମ ବଟୁଆ ଗଜପତି ମହାରାଜାଙ୍କ ପାନ ରଖିବା ପାଇଁ ଉପହାର ଦେଇଥିବାର ଜଣାଯାଏ। ସୁତରାଂ, ଏହି ବହୁ ଚର୍ଚ୍ଚିତ ବଟୁଆର ଜନ୍ମଦାତ୍ରୀ ହେଉଛି ପିପିଲି। ଅବଶ୍ୟ ଏବେ ବଟୁଆର ବ୍ୟବହାର ହ୍ରାସ ପାଇଛି, ତା'ର ସ୍ଥାନ ଗ୍ରହଣ କରିଛି ପର୍ସ, ପ୍ଲାଷ୍ଟିକ ତିଆରି ବିଭିନ୍ନ କିସମର

Digitized by srujanika@gmail.com

ବ୍ୟାର୍। ଏହା ସତ୍ତ୍ୱେ ଯୁଗେ ଯୁଗେ ଓଡ଼ିଆର ସାମାଜିକ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ବଟୁଆର କାରିଗର ପିପିଲିର ଦରଜୀମାନେ ଚିର-ନମସ୍ୟ।

ବଟୁଆ ତିଆରି ପରେ ଦରଜୀ ଚିନ୍ତା କରିଥିଲା ଗାଁ ଗହଳରେ ରହୁଥିବା ଲୋକମାନଙ୍କର ଚିତ୍ତ-ବିନୋଦନ ନିମନ୍ତେ କନାର କୌଣସି ଏକ ଆଧାର। ସେହି ଚିନ୍ତାରୁ ସୃଷ୍ଟି ହୋଇଥିଲା ପଶା-ପାଲିର ପ୍ରସ୍ତୁତି କରଣ। ଏହି ପଶାପାଲି ପିପିଲିରୁ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳକୁ ପ୍ରସାରିତ ହୋଇଥିଲା। ତା' ପରେ ଦରଜୀମାନେ ସମ୍ଭବତଃ, ଆବଶ୍ୟକତା ଉପଲବ୍ଧି କରିଥିଲେ ମଣିଷର ଅନ୍ୟ ଏକ ନିତ୍ୟ ବ୍ୟବହାର୍ଯ୍ୟ ଆଧାରଟିଏ। ସେତେବେଳେ ଯାନବାହାନର ସୁବିଧା ନଥିବାରୁ କୌଣସି ଏକ ବ୍ୟକ୍ତି ଘରଛାଡ଼ି ବନ୍ଧୁ ବାନ୍ଧବ ଘର, ଯାତ୍ରା ପର୍ବ ପର୍ବାଣୀ ସ୍ଥଳ ବା କୌଣସି ସାମାଜିକ କାର୍ଯ୍ୟରେ ଯୋଗ ଦେବାକୁ ହେଲେ, ଏପରିକି ମାଲି ମୋକଦ୍ଦମା ପାଇଁ ସହରକୁ ଗଲେ ଘରୁ ତିନି ଚାରି ଦିନ ଅନୁପସ୍ଥିତ ରହିବାକୁ ପଡୁଥିଲା। ମାତ୍ର ପୂଜା ନ କଲେ ସେମାନେ ଅନ୍ନ ସ୍ପର୍ଶ କରୁ ନଥିଲେ। ସେଥିପାଇଁ ବାହାରକୁ ଗଲେ ସାଥୀରେ ଉପାସ୍ୟ ଦେବାଦେବୀଙ୍କ ମୂର୍ତ୍ତି, ଫଟୋ ତା' ସହିତ ତିଳକ, ତିଳକରେ ଚିତା ଲଗାଇବା ପାଇଁ କାଠି ନିର୍ମାଲ୍ୟ ଓ ସିନ୍ଦୂର ନେବାକୁ ପଡୁଥିଲା। ଏଥିପାଇଁ ଆବଶ୍ୟକ ହେଉଥିଲା ଗୋଟିଏ ଛୋଟ ଥଳୀର। ଏହାକୁ ଆଖି ଆଗରେ ରଖି ଦରଜୀ ତିଆରି କଲା 'କୋଥଳୀ'। ଅନ୍ୟ ସାମଗ୍ରୀ ପରି ଗାଁ ଗହଳରେ ଏହା ମଧ୍ୟ ବେଶ୍ ଆଦୃତ ହେଲା। ଏହିପରି ଭାବେ ପିପିଲିର ଦରଜୀମାନେ କନାରେ ତିଆରି କରି ଚାଲିଲେ ଗୋଟିଏ ପରେ ଗୋଟିଏ ଜିନିଷ। ସେଗୁଡ଼ିକୁ ଆକର୍ଷଣୀୟ କରିବା ପାଇଁ ସେମାନେ ସେଥିରେ ବିଭିନ୍ନ ରଙ୍ଗର କନାମାନ ସଂଯୋଗ କଲେ। ଛୋଟ ଛୋଟ ଟୁକରା କନା ମଧ୍ୟ ନଷ୍ଟ ନକରି ସେଗୁଡ଼ିକୁ ବିଭିନ୍ନ ଭାବରେ ବ୍ୟବହାର କରିବା ଶିଖିଲେ।

ପରେ ପରେ ପିପିଲିର ଦରଜୀମାନଙ୍କର କଳା ନୈପୁଣ୍ୟକୁ ପ୍ରୋତ୍ସାହିତ କରିଥିଲେ ପୁରୀ ଓ ଖୋର୍ଦ୍ଧାରେ ରାଜାମାନେ। ସେମାନେ ପୁରୀ ମନ୍ଦିରର ସେବାୟତମାନଙ୍କ ମଧ୍ୟରେ ଦରଜୀଙ୍କୁ ସେବାୟତ ଭାବରେ ସ୍ୱୀକୃତି ଦେଲେ। ବଂଶ ପରମ୍ପରା କ୍ରମେ ସେମାନଙ୍କୁ ସେବା କାର୍ଯ୍ୟରେ ନିଯୁକ୍ତ କରାଗଲା। ଏହା ଶ୍ରୀମନ୍ଦିରର ରେକର୍ଡ଼ ଅଫ୍ ରାଇଟରେ ସୂଚିତ ଥିବାର ଜଣାଯାଏ। ତନ୍ମଧ୍ୟରୁ କେତେ ଜଣ ଦରଜୀ ସେବାୟତଙ୍କ ନାମ ଉଦ୍ଧାର କରାଯାଇ ପାରେ। ଖୋର୍ଦ୍ଧାର ଗଜପତି ରାଜା ବୀରକିଶୋରଦେବ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ଜଗନ୍ନାଥ ମହାପାତ୍ର, ବନମାଳୀ ମହାପାତ୍ର ଓ ରାମ ମହାରଣାଙ୍କୁ ସେବା କାର୍ଯ୍ୟରେ ନିଯୋଜିତ

Digitized by srujanika@gmail.com

କରିଥିବା ବିଷୟ ପିପିଲି ନିକଟ ଆରୁହା ପାଟଣାଣୀପୁର ନିବାସୀ ରମେଶ ଚନ୍ଦ୍ର ମହାପାତ୍ର ସଂଗ୍ରହ କରିଥିବା ତଥ୍ୟରୁ ଜଣାଯାଏ । ପରେ ପୁରୀ ରାଜା ଦିବ୍ୟସିଂହଦେବଙ୍କ ସମୟରେ ରାଜ ମାତା ସୂର୍ଯ୍ୟମଣୀ ପାଟମହାଦେଈ ନାରାୟଣ ମହାପାତ୍ର ନାମକ ଜଣେ ଦରଜୀଙ୍କୁ ସେବାୟତ ଭାବେ ନିଯୁକ୍ତ କରିଥିଲେ । ସେହିପରି ପୁରୀ ରାଜା ମୁକୁନ୍ଦଦେବ ୧୨୮୦ ସାଲ ଅର୍ଥାତ୍ ୧୮୭୨ ଖ୍ରୀଷ୍ଟାବ୍ଦରେ ଗଣେଶ ମହାପାତ୍ରଙ୍କୁ ଉକ୍ତ ସେବା କାର୍ଯ୍ୟରେ ନିଯୁକ୍ତ କରିଥିବାର ପ୍ରମାଣ ରହିଛି ।

ଜଗନ୍ନାଥଙ୍କର ବିଭିନ୍ନ ଯାତ୍ରାରେ କି ପ୍ରକାରର ଚାନ୍ଦୁଆ ଓ ଦ୍ରାସ ବ୍ୟବହାର କରାଯିବ ତାହାର ନିର୍ଦ୍ଦିଷ୍ଟ ନିୟମ ଅଛି । ରଥଯାତ୍ରା ସମୟରେ ରାହୁ ଓ କଳସ ଥିବା ଚାନ୍ଦୁଆ ବ୍ୟବହାର କରାଯାଉଥିବା ସ୍ଥଳେ ସ୍ନାନ ଯାତ୍ରା ସମୟରେ ତ୍ରିମୁଣ୍ଡିଆ ଚାନ୍ଦୁଆ ବ୍ୟବହୃତ ହୋଇଥାଏ । ସେହିପରି ସ୍ନାନ ଯାତ୍ରା ସମୟରେ ଜଗନ୍ନାଥଙ୍କ ବେଶରେ ମତ୍ସ୍ୟ ଓ ମଣ୍ଡୁକ ସୂଚିତ ଚାନ୍ଦୁଆ ବ୍ୟବହାର କରାଯାଏ । ଜଗନ୍ନାଥଙ୍କ ପାଇଁ ବ୍ୟବହୃତ ଦ୍ରାସ ମଧ୍ୟ ଦୁଇ ପ୍ରକାରର । ତନ୍ମଧ୍ୟରୁ ଗୋଟିଏ ହେଲା ଗରୁଡ଼ ଦ୍ରାସ ଓ ଅନ୍ୟଟି ହେଲା ଗୋବିନ୍ଦ ଦ୍ରାସ । ହଳଦିଆ କନାରେ ତିଆରି ଦ୍ରାସକୁ ଗରୁଡ଼ ଦ୍ରାସ ଓ କଳା କନାରେ ତିଆରି ଦ୍ରାସକୁ ଗୋବିନ୍ଦ ଦ୍ରାସ କୁହାଯାଏ । ସେହି ଅନୁସାରେ ଦରଜୀମାନେ ସେଗୁଡ଼ିକୁ ତିଆରି କରି ଜଗନ୍ନାଥଙ୍କ ସେବା ପୂଜା କାର୍ଯ୍ୟ ନିମନ୍ତେ ଯୋଗାଇଥା'ନ୍ତି । ଏତଦ୍ ବ୍ୟତୀତ ସେମାନେ ଛତି, ଦ୍ରାସ, ଆଲଟ, ଆଡ଼ାଣୀ, ବାନା, ଚଉଦୋଳ ମଣ୍ଡଣୀ ଓ ଘୋଡ଼ା କନା ତିଆରି କରିଥା'ନ୍ତି । ସୂଚୀ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ପୁରୀର ଜନୈକ ରାଜା ପିପିଲିର ଦରଜୀମାନଙ୍କୁ ଖଣ୍ଡିଏ ଜଗନ୍ନାଥ ଦାରୁ ଓ ଗୋଟିଏ ପତିତପାବନ ମୂର୍ତ୍ତି ଉପହାର ଦେଇଥିଲେ । ଅଦ୍ୟାବଧି ଦରଜୀମାନେ ତା'ଙ୍କୁ ନିଜ ସାହିର ଏକ ମନ୍ଦିର ମଧ୍ୟରେ ସ୍ଥାପନ କରି ପୂଜା କରୁଛନ୍ତି । ପିପିଲି ଦରଜୀମାନଙ୍କର ଏହି ଅନୁପମ ସୂଚୀକାର୍ଯ୍ୟ ଉଭୟ ମୋଗଲବନ୍ଦୀ ଓ ଗଡ଼ଜାତ ଅଞ୍ଚଳର ପୁରପଲ୍ଲୀରେ ବେଶ୍ ଜନପ୍ରିୟତା ଲାଭ କରି ପାରିଥିଲା । ବିଶେଷତଃ ଗ୍ରାମବାସୀଙ୍କ ମଧ୍ୟରେ ଖୁବ୍ ପ୍ରିୟ ହୋଇଥିଲା - ବଟୁଆ ଓ ପଣାପାଲି । ସେ ଅଞ୍ଚଳର ଦେବାଳୟରେ ପୂଜିତ ବିଗ୍ରହମାନଙ୍କ ଆସ୍ଥାନ ଉପରେ ଚାନ୍ଦୁଆ ବ୍ୟବହାର କରାଯାଉଥିଲା । କେତେକ ଗଡ଼ଜାତ ରାଜା, ନିଜ ନିଜର ଦରବାର ଓ ବୈଠକଖାନାମାନଙ୍କରେ ଚାନ୍ଦୁଆ, ଛତି, ଦ୍ରାସ ଆଦି ରଖି ସେଗୁଡ଼ିକୁ ସୁସଜ୍ଜିତ କରାଉଥିଲେ । ବୟୋବୃଦ୍ଧ କାରିଗରମାନଙ୍କ ନିକଟରୁ ଜଣାଯାଏ, ଅତୀତରେ ସେମାନେ କେତେ ଜଣ ଗଡ଼ଜାତ ରାଜା ଓ ବିତ୍ତଶାଳୀ ଲୋକଙ୍କର ବରାଦ କ୍ରମେ ୧୨୦ ଫୁଟ ଲମ୍ବ ଓ ୮୦ ଫୁଟ

Digitized by srujanika@gmail.com

ଓସାରର ଚାନ୍ଦୁଆ ତିଆରି କରି ଯୋଗାଉଛନ୍ତି ।

କେବଳ ସେତିକି ନୁହେଁ - ମୋଗଲ ସମ୍ରାଟ ଜାହାଙ୍ଗୀରଙ୍କ ରାଜତ୍ୱରେ ରାଜପୁତ୍ର ଖୁରମ (ପରେ ଶାହାଜାହାନ୍) ୧୬୨୩ ଖ୍ରୀଷ୍ଟାବ୍ଦରେ କଟକ ଆସି ପରେ ପରେ ସେଠାରୁ ପିପିଲିକୁ ଆସିଥିଲେ । ପିପିଲିରେ ମୋଗଲମାନଙ୍କର ଏକ ସେନାଛାଉଣୀ ଥିବା କଥା ପୂର୍ବରୁ ସୂଚାଇ ଦିଆଯାଇଛି । ଖୁରମ୍ ପିପିଲିର ଚାନ୍ଦୁଆ ଓ ବିଭିନ୍ନ ସୂଚୀକାର୍ଯ୍ୟ ଦେଖି ବିମୋହିତ ହେବା ସଙ୍ଗେ ସଙ୍ଗେ କେତେକ ଜିନିଷ ଦିଲ୍ଲୀକୁ ନେଇଯାଇଥିବାର ଜଣାଯାଏ । ଏପରିକି ତାଙ୍କ ପୂର୍ବରୁ ମୋଗଲ ସମ୍ରାଟ ଆକବରଙ୍କ ଶାସନ କାଳରେ ଉପହାର ସ୍ୱରୂପ କିଛି ପିପିଲି ତିଆରି ଜିନିଷ ତାଙ୍କ ଦରବାରକୁ ପ୍ରେରଣ କରାଯାଇଥିବା ତଥ୍ୟ ମୋ ସହିତ ଏକ ସାକ୍ଷାତ କାରରେ ନରସିଂହ ପୁର ନିବାସୀ ମୋବାରକ ଖାଁ ଓ ମୁକ୍ତାର ମହମ୍ମଦ ପ୍ରକାଶ କରିଛନ୍ତି । ସମୟର ଗତି ସଙ୍ଗେ ସଙ୍ଗେ ଏହି ତଥ୍ୟ ସେମାନେ ତାଙ୍କ ପୂର୍ବ ପୁରୁଷଙ୍କ ଠାରୁ ଶୁଣିଛନ୍ତି ବୋଲି କହିଥିଲେ । ସେହିପରି ଭବାନୀପୁରର ଜଣେ ବୟୋବୃଦ୍ଧ ବ୍ୟକ୍ତି ଏହି ବିଷୟ ଗୋବିନ୍ଦପୁର ଗ୍ରାମର କାଶୀନାଥ ନାୟକଙ୍କୁ କହିଥିବାର ଜଣାଯାଏ । ଏଥିରେ ମଧ ସତ୍ୟତା ଥିବାର ଅନୁମିତ ହୁଏ । ଆକବରଙ୍କ ଦ୍ୱାରା ପ୍ରେରିତ ହୋଇ ରାଜା ମାନସିଂହ କଟକ ଆସିଥିଲେ । ସେଠାରୁ ସେ ଯାତ୍ରା କରିଥିଲେ ପୁରୀ । ପୁରୀ ଯିବା ବାଟରେ ପିପିଳିର ଆକର୍ଷଣୀୟ ସୂଚୀକାର୍ଯ୍ୟ ତାଙ୍କୁ ଆକର୍ଷିତ କରିଥିବ । ଏହାର କିଛି ନମୁନା ନେଇ ସେ ସମ୍ରାଟ ଆକବରଙ୍କୁ ଦିଲ୍ଲୀରେ ଉପହାର ଦେଇଥିବେ ।

ଏବେ ପୁରୀରେ ଗୋଟିଏ ଦରଜୀ ପରିବାର ଏହି କାର୍ଯ୍ୟ କରୁଛନ୍ତି । ସେମାନେ ମଧ ଜଗନ୍ନାଥ ମନ୍ଦିର ସହିତ ସଂପୃକ୍ତ । ଜଗନ୍ନାଥ ମନ୍ଦିର ଚୂଡ଼ାରେ ଉଡୁଥିବା ପତିତ ପାବନ ବାନା ମାନସିକ କରିଥିବା ଭକ୍ତମାନଙ୍କର ବରାଦ କ୍ରମେ ସେହିମାନେ ତିଆରି କରି ଯୋଗାଇଥା'ନ୍ତି । ଏହି ବାନାରେ ସେମାନେ ଦୁଇଟି ରଙ୍ଗର କନା ବ୍ୟବହାର କରିଥିବାର ଦେଖାଯାଏ । ଗୋଟିଏ ନାଲି ରଙ୍ଗର ଓ ଅନ୍ୟଟି ହଳଦିଆ ରଙ୍ଗର । ମାତ୍ର ପୁରୀ ଓ ପିପିଲିରେ ତିଆରି ହେଉଥିବା ଚାନ୍ଦୁଆ କାର୍ଯ୍ୟ ମଧ୍ୟରେ ପ୍ରଭେଦ ରହିଥିବା ବିଷୟ ବି.ଜେ.ବି କଲେଜ (ଭୁବନେଶ୍ୱର) ନୃତତ୍ତ୍ୱ ବିଭାଗର ମୁଖ୍ୟ ଡକ୍ଟର ଶ୍ରୀଶ ପଟେଲ ଗବେଷଣା କରି ଲେଖିଛନ୍ତି - ପୁରୀରେ ପ୍ରସ୍ତୁତ ଚାନ୍ଦୁଆରେ ସୂର୍ଯ୍ୟମୁଖୀ ଫୁଲ ସମେତ ବିଭିନ୍ନ ପ୍ରକାରର ଫୁଲ ଗାଢ଼ରଙ୍ଗରେ ଦିଆଯାଇଥିବା ସ୍ଥଳେ, ପିପିଲି ଚାନ୍ଦୁଆରେ ଗୋଟିଏ ଦୁଇଟି ଫୁଲ ଓ ଅପେକ୍ଷାକୃତ କମ ଗାଢ଼ ରଙ୍ଗ ଦିଆ ଯାଇଥାଏ । ପିପିଲିରେ ପ୍ରସ୍ତୁତ

Digitized by srujanika@gmail.com

ସୂଚୀକାର୍ଯ୍ୟ ଗୁଡ଼ିକ ଅପେକ୍ଷାକୃତ ସରଳ। ସାଧାରଣତଃ, ଏଥିରେ ତିଆରି କରାଯାଉଥିବା ଚାନ୍ଦୁଆରେ ମାତ୍ର ଦୁଇଟି ଫୁଲର ଚିତ୍ର ଦିଆଯାଇଥାଏ। ଗୋଟିଏ ସୂର୍ଯ୍ୟମୁଖୀ ଓ ଅନ୍ୟଟି ମଲ୍ଲୀ। ସୂର୍ଯ୍ୟମୁଖୀ ବଡ଼ ଚାନ୍ଦୁଆରେ ବ୍ୟବହୃତ ହେଉଥିବା ସ୍ଥଳେ ମଲ୍ଲୀଫୁଲର ଚିତ୍ର ଛୋଟ ଚାନ୍ଦୁଆ, ଛତି ଓ ଡ୍ରାପରେ ବ୍ୟବହୃତ ହେଉଥିବାର ଦେଖାଯାଏ। ଏଥିରେ ମଧ୍ୟ ସେମାନେ ଶୁଆ, ମୟୂର, ବତକ, ହାତୀ ଓ ରାହୁ ମୁଣ୍ଡର ଚିତ୍ର ଆଙ୍କୁଛନ୍ତି।

ଏବେ ପିପିଲି ବଜାର ନିକଟବର୍ତ୍ତୀ ଦରଜୀ ସାହିରେ ବାସ କରୁଥିବା ପରିବାରଙ୍କ ସଂଖ୍ୟା କାଳକ୍ରମେ ବୃଦ୍ଧିପ୍ରାପ୍ତ ହୋଇ ୬୦ ଓ ଦରଜୀଙ୍କ ସଂଖ୍ୟା ୨୫୦ରେ ପହଞ୍ଚିଲାଣି। ଚାନ୍ଦୁଆ ଓ ଅନ୍ୟାନ୍ୟ ସୂଚୀକାର୍ଯ୍ୟ ବର୍ତ୍ତମାନ କେବଳ ଦରଜୀ ସାହିର ଦରଜୀମାନଙ୍କ ମଧ୍ୟରେ ସୀମିତ ହୋଇ ରହିନାହିଁ। ମୁସଲମାନମାନେ ମଧ୍ୟ ଏହି ବ୍ୟବସାୟ କରି ବେଶ୍ ପ୍ରତିଷ୍ଠିତ ହୋଇ ଗଲେଣି। ଚାନ୍ଦୁଆ ଆଦି ବ୍ୟବସାୟରେ ମୁସଲମାନମାନେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି। ସେମାନଙ୍କ ମଧ୍ୟରେ ଯବାର ଖାଁ ଓ ମୋବାରକ ଖାଁଙ୍କ ନାମ ଉଲ୍ଲେଖ ଯୋଗ୍ୟ। ପିପିଲି ଠାରୁ ୨୦ କି.ମି. ପରିସର ମଧ୍ୟରେ ପ୍ରାୟ ୫ ହଜାରରୁ ଉର୍ଦ୍ଧ୍ୱ ହିନ୍ଦୁ ଓ ମୁସଲମାନ ବ୍ୟକ୍ତି ଚାନ୍ଦୁଆ ଶିଳ୍ପକୁ ଜୀବିକାରୂପେ ଗ୍ରହଣ କରି ସାରିଲେଣି। ପୂର୍ବରୁ ଦରଜୀମାନେ ଗାଁ ଗାଁ ବୁଲି ସିଲାଇ କାମ କରି ଚାନ୍ଦୁଆ ଆଦି କାର୍ଯ୍ୟ ଦୋଳଯାତ୍ରା ପୂର୍ବରୁ କରୁଥିବା ସ୍ଥଳେ ଏବେ ସେମାନେ କେଉଁଠାକୁ ନଯାଇ ବର୍ଷସାରା ଏହି କାର୍ଯ୍ୟ କରୁଛନ୍ତି।

ବିଗତ ୧୦ ବର୍ଷ ମଧ୍ୟରେ ଚାନ୍ଦୁଆ ଶିଳ୍ପର ବିରାଟ ପରିବର୍ତ୍ତନ ଦେଖା ଦେଇଛି। ଏବେ କାରିଗରମାନେ ପୂର୍ବପରି ବଟୁଆ, ପଣାପାଲି, କୋଥଳୀ ଆଦି ତିଆରି କରୁ ନାହାନ୍ତି। ବଟୁଆର ସ୍ଥାନ ନେଇଛି ମନିପର୍ସ, ଲେଡିଜ୍ ଭେନିଟି ବେଗ୍ ଓ ଅନ୍ୟାନ୍ୟ ଅନେକ ପ୍ରକାର ସୁଦୃଶ୍ୟ ଝୁଲା। କୋଥଳୀର ସ୍ଥାନ ଗ୍ରହଣ କରିଛି ଚିଠି ବାକ୍ସ। ପଣାପାଲିର ତିଆରି ବି ନାହିଁ। ପୂର୍ବରୁ ତିଆରି ହେଉଥିବା ଛତିରେ ପଞ୍ଚରଙ୍ଗୀ କନାର ବ୍ୟବହାର ପରିବର୍ତ୍ତେ ଏବେ ଦୁଇଟି ରଙ୍ଗର କନା ବ୍ୟବହାର କରାଯାଉଛି। ସେଥିରେ ଛୋଟ ଛୋଟ କାଚ ଲଗାଇ ଅଧିକ ଆକର୍ଷଣୀୟ କରିବାକୁ ଦରଜୀମାନେ ଚାହୁଁଛନ୍ତି। ଫଳରେ କାରିଗରମାନେ କ୍ରମେ କ୍ରମେ ପରମ୍ପରାଠାରୁ ଦୂରେଇ ଯାଉଥିବାର ଲକ୍ଷ୍ୟ କରାଯାଉଛି। ଏହା ମୂଳରେ କେତୋଟି କାରଣ ରହିଥିବାର ମନେହୁଏ। ଗୋଟିଏ ହେଲା, ଗ୍ରାହକମାନଙ୍କ ରୁଚିରେ ପରିବର୍ତ୍ତନ ଓ ନୂତନ ପ୍ରକାର ଜିନିଷ ପ୍ରତି ଆକର୍ଷଣ। ଅନ୍ୟ କାରଣଟି ହେଉଛି, କାରିଗରମାନଙ୍କର

Digitized by srujanika@gmail.com

ବ୍ୟାବସାୟିକ ମନୋଭାବ। ସେମାନେ ଶସ୍ତାରେ ସୁନ୍ଦର ଜିନିଷମାନ ଯୋଗାଇ ଗ୍ରାହକଙ୍କୁ ଅଧିକ ଆକୃଷ୍ଟ କରିବାକୁ ଚାହୁଁଛନ୍ତି। ଫଳରେ ·ବିଭିନ୍ନ ରଙ୍ଗର କନା ପରିବର୍ତ୍ତେ ଗୋଟିଏ ରଙ୍ଗର କନା ବ୍ୟବହାର କରି ସେମାନେ ସୂଚୀକାମ ଦ୍ୱାରା ସେଗୁଡ଼ିକୁ ଅଧିକ ଆକର୍ଷଣୀୟ କରିବାକୁ ଉଦ୍ୟମ କରୁଛନ୍ତି। ବ୍ୟବସାୟ ଦୃଷ୍ଟିରୁ କାରିଗରମାନଙ୍କର ପ୍ରତିଯୋଗିତା ମନୋଭାବ ଫଳରେ ଜିନିଷର ମାନ ହ୍ରାସ ପାଇବାରେ ଲାଗିଛି।

ଏସବୁ ସତ୍ତ୍ୱେ କ୍ରମେ କ୍ରମେ ପିପିଲିର ଚାନ୍ଦୁଆ ଶିଳ୍ପ ଅଧିକରୁ ଅଧିକ ଆଦୃତ ହେବାର ଦେଖାଯାଉଛି। ବିଶେଷତଃ, ସ୍ୱଦେଶୀ ଓ ବିଦେଶୀ ପର୍ଯ୍ୟଟକଙ୍କ ମଧ୍ୟରେ ଏହାର ଆଦର ବୃଦ୍ଧି ପାଇବାରେ ଲାଗିଛି। ଖବର ନେବାରେ ଜଣାଯାଇଛି ଯେ ସ୍ୱଦେଶୀ ପର୍ଯ୍ୟଟକମାନେ ଟି.ଭି. ଓ ଗଦିର କଭର, ଲ୍ୟାମ୍ପ ସେଡ୍, ୱାଲ ହେଙ୍ଗ୍ ଓ ଗାର୍ଡ଼େନ ଅମ୍ବ୍ରେଲା ପ୍ରତି ଆକୃଷ୍ଟ ହେଉଥିବା ସ୍ଥଳେ ବିଦେଶୀ ପର୍ଯ୍ୟଟକମାନେ ପୁରାତନ ପାରମ୍ପରିକ କଳାପ୍ରତି ଆଗ୍ରହ ପ୍ରକାଶ କରୁଛନ୍ତି। ଓଡ଼ିଶା ବାହାରେ ମଧ୍ୟ ଏହାର ଆଦର ବୃଦ୍ଧି ପାଉଛି। କିଛିଦିନ ପୂର୍ବେ ମୁଁ ରାଞ୍ଚି ବିଶ୍ୱ ବିଦ୍ୟାଳୟ ଯାଇଥିଲି - ଆମ ଓଡ଼ିଶାର ସଂସ୍କୃତିର ପ୍ରତୀକ ପିପିଲି ବେଗ୍‌ଟିଏ ଧରି। ସେଠାରେ ସମସ୍ତେ ବେଗ୍‌ଟିର ଖୁବ୍ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ମୋତେ ଅନୁରୋଧ କରିଥିଲେ ସେମାନଙ୍କ ନିକଟରେ ଗୋଟିଏ ଗୋଟିଏ ପହଞ୍ଚାଇବା ପାଇଁ। ଏବେ ଓଡ଼ିଶା ଇତିହାସ କଂଗ୍ରେସର ସପ୍ତଦଶ ଅଧିବେଶନ ଉପଲକ୍ଷେ ପିପିଲିର ବିଧାୟକ ଶ୍ରୀ ପ୍ରଦୀପ ମହାରଥୀଙ୍କ ପ୍ରଦତ୍ତ ପିପିଲି ବେଗ୍ ପାଇ ଓଡ଼ିଶା ଓ ଓଡ଼ିଶା ବାହାରର ପ୍ରତିନିଧିମାନେ ବେଶ୍ ଖୁସି ହୋଇଥିଲେ।

ଏହିପରି ଭାବେ ଆମ ଗର୍ବ ଓ ଗୌରବ 'ପିପିଲି ଚାନ୍ଦୁଆ' ଯୁଗେ ଯୁଗେ ଶିଳ୍ପକଳାକୁ ଋଦ୍ଧିମନ୍ତ କରିବା ସଙ୍ଗେ ସଙ୍ଗେ ଦେଶ ବିଦେଶରେ ଓଡ଼ିଶାକୁ ମହିମାନ୍ୱିତ କରିପାରିଛି।

## ବସ୍ତ୍ର ବୟନ ଶିଳ୍ପ

ପିପିଲି ଅଞ୍ଚଳର ଅନ୍ୟତମ ଶିଳ୍ପ ହେଉଛି, ବସ୍ତ୍ର ବୟନ। ଅବଶ୍ୟ ଏହା ଏକ କୁଟୀର ଶିଳ୍ପ ରୂପେ ପରିଗଣିତ। ମୁଖ୍ୟତଃ ରୂପଦେଇପୁର ପଞ୍ଚାୟତ ଅନ୍ତର୍ଗତ ମଉଳୀବେଗ୍ ଗ୍ରାମରେ ଏହା ଦେଖାଯାଇଥାଏ। ସେଠାରେ ଏବେ ୧୦୦ଟି ବୁଣାକାର ପରିବାର ବାସ କରୁଛନ୍ତି। ସେମାନେ ରଙ୍ଗଣୀ ନାମରେ କଥିତ। କୌଳିକ ବୃତ୍ତି ଅନୁସାରେ ସେମାନେ ପ୍ରଥମେ ସୂତାକୁ ଭିନ୍ନ ଭିନ୍ନ ରଙ୍ଗରେ

Digitized by srujanika@gmail.com

ରଙ୍ଗାଉଥିବାରୁ ସେମାନଙ୍କର ଏପରି ନାମକରଣ ହୋଇଛି। ମଉଜୀବେଗ୍ ବ୍ୟତୀତ ତେଇଶିପୁରରେ ଏହି ସଂପ୍ରଦାୟର ୧୦ଟି ପରିବାର ଓ ସରସ୍ୱତୀ ପୁର ଅନ୍ତର୍ଗତ ନୂଆହାଟ ଗ୍ରାମରେ ୧୨ଟି ରଙ୍ଗଣୀ ପରିବାର ବାସ କରୁ ଅଛନ୍ତି।

ଉପରୋକ୍ତ ଗ୍ରାମମାନଙ୍କରେ ପ୍ରତ୍ୟେକ ରଙ୍ଗଣୀ ପରିବାରରେ ଏକାଧିକ ତନ୍ତ ରହିଛି। ସେଗୁଡ଼ିକ ସବୁ ହସ୍ତ ଚାଳିତ ତନ୍ତ। ଏ ପର୍ଯ୍ୟନ୍ତ ସେମାନେ କଳତନ୍ତ ପ୍ରତି ଆକୃଷ୍ଟ ହୋଇ ନାହାନ୍ତି। ସେମାନେ ନିଜ ନିଜ ତନ୍ତରେ ଗାମୁଛା, ଧୋତି ଓ ଶାଢ଼ୀ ଆଦି ବୟନ କରିଥା'ନ୍ତି। ଉତ୍କୃଷ୍ଟତା ପାଇଁ ଲୋକମାନଙ୍କ ମଧ୍ୟରେ ସେଗୁଡ଼ିକର ଆଦର ରହିଛି। ବିଶେଷତଃ, ଗାମୁଛା ବୁଣିବାରେ ସେମାନେ ବେଶ୍ ପାରଦର୍ଶିତା ଅର୍ଜନ କରିଛନ୍ତି। ସେହି ଗାମୁଛାର ମଧ୍ୟ ସ୍ୱାତନ୍ତ୍ର୍ୟ ରହିଛି।

ଏହି ବସ୍ତ୍ର ବୟନ ଶିଳ୍ପକୁ ପ୍ରୋତ୍ସାହିତ କରିବା ପାଇଁ ପୂର୍ବେ ମଉଜିବେଗ୍ ଗ୍ରାମରେ ଏକ ସୂତା ସହଯୋଗ ସମିତି ପ୍ରତିଷ୍ଠିତ ହୋଇଥିଲା। ଏବେ ତା' ସ୍ଥାନରେ ତନ୍ତୁବାୟ ସହଯୋଗ ସମିତି ସ୍ଥାପିତ ହୋଇଛି। ପ୍ରତ୍ୟେକ ପରିବାରରୁ ଏକାଧିକ ବ୍ୟକ୍ତି ଏଥିରେ ସଦସ୍ୟ ଥାଇ ବର୍ତ୍ତମାନ ଏଥିରେ ମୋଟ ୩୦୦ରୁ ଊର୍ଦ୍ଧ୍ୱ ସଦସ୍ୟ ରହିଛନ୍ତି।

## ପିପିଲି ପଞ୍ଚାୟତ କାଷ୍ଠ ଶିଳ୍ପ ସମବାୟ ସମିତି

ଆଠ ନମ୍ବର ରାଜ ପଥର ବାମ ପାର୍ଶ୍ୱରେ ଓ ପିପିଲି ତହସିଲ୍ ପୂର୍ବରୁ ପିପିଲି ପଞ୍ଚାୟତ କାଷ୍ଠ ଶିଳ୍ପ ସମବାୟ ସମିତି ଅବସ୍ଥିତ। ଏହା ପିପିଲି ବ୍ଲକର ଏକ ମାତ୍ର କାଷ୍ଠ ଶିଳ୍ପ ସମବାୟ ସମିତି। ୧୯୬୪ ମସିହା ଡିସେମ୍ବର ୨୩ ତାରିଖ ଦିନ ଏହା ସ୍ଥାପିତ ହୋଇଥିଲା ଓ ଲଳିତ କୁମାର ରାୟ ଏହାର ପ୍ରଥମ ପି.ଆଇ.ଓ ଥିଲେ। ଏହି କାଷ୍ଠ ଶିଳ୍ପ ସମବାୟ ସମିତିରେ ପ୍ରଥମେ ୨୩ ଜଣ ସଦସ୍ୟ ଥିଲେ। ଏହି ସମିତି କାର୍ଯ୍ୟ ଆରମ୍ଭ କରିବା ସମୟରେ କେବଳ କାଠର ଚୌକାଠ ଓ କବାଟ ତିଆରି କରୁଥିଲେ। କିନ୍ତୁ ପରେ ପରେ ଏଠାରେ ଅନ୍ୟାନ୍ୟ କାଷ୍ଠୋପକରଣ ତିଆରି ହୋଇଥିଲା। ୧୯୭୧ ମସିହା ଠାରୁ ୧୯୮୧ ମସିହା ପର୍ଯ୍ୟନ୍ତ ଏହି ସମବାୟ ସମିତି ପଞ୍ଚାନନ ବେହେରା, ପି.ଆଇ.ଓ.ଙ୍କ ତତ୍ତ୍ୱାବଧାନରେ ସାରା ଓଡ଼ିଶାରେ କାଷ୍ଠୋପକରଣର ଉତ୍କୃଷ୍ଟତା ପାଇଁ ପ୍ରସିଦ୍ଧି ଲାଭ କରିଥିଲା। କାଠ ଉପରେ ସରକାରଙ୍କର କଟକଣା ହେବା ପରେ ବର୍ତ୍ତମାନ ଏଠାରେ ଲୁହାର ଗ୍ରିଲ୍, ଚୌକାଠ ଆଦି ଉତ୍ପାଦନ ହେଉଅଛି।

Digitized by srujanika@gmail.com

## ବାଣ ତିଆରି ଶିଳ୍ପ

ବାଣ ତିଆରି ପାଇଁ ପିପିଲି ଅଞ୍ଚଳ ପ୍ରସିଦ୍ଧି ଲାଭ କରିଛି। ଏହା ଏହି ଅଞ୍ଚଳର ଅନ୍ୟତମ କୁଟୀର ଶିଳ୍ପ। ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ବାଣ ଅନ୍ୟ ଜାତିର ଲୋକ ତିଆରି କରୁଥିବା ବେଳେ ପିପିଲି ଅଞ୍ଚଳରେ କେବଳ ବ୍ରାହ୍ମଣମାନେ ଏହାକୁ ତିଆରି କରିଥାଆନ୍ତି। ସମ୍ଭବତଃ, ଏହି ଅଞ୍ଚଳରେ ଅନୁଷ୍ଠିତ ବିଭିନ୍ନ ଯାତ୍ରା ଓ ପର୍ବ ପର୍ବାଣୀରେ ପରିବେଶକୁ ଅଧିକ ପ୍ରାଣବନ୍ତ ଓ ଉତ୍ସବ ମୁଖର କରିବା ପାଇଁ ବ୍ରାହ୍ମଣମାନେ ଏହାର ତିଆରି ଆରମ୍ଭ କରିଥିଲେ। କାରଣ ସବୁ ଯାତ୍ରା ଓ ପର୍ବ ପର୍ବାଣୀ ବ୍ରାହ୍ମଣମାନଙ୍କ ଦ୍ୱାରା ନିୟନ୍ତ୍ରିତ ଓ ପରିଚାଳିତ ହେଉଥିଲା। ଏ ସଂପର୍କରେ ଅନ୍ୟ ଗୋଟିଏ କାରଣ ମଧ୍ୟ ଚିନ୍ତା କରାଯାଇପାରେ। ପିପିଲି ଅଞ୍ଚଳର୍ରେ ଯାତ୍ରା ଦେବାଦେବୀଙ୍କ ବିବାହ ଉପରେ ଆଧାରିତ। ତନ୍ମଧ୍ୟରୁ ବୀରପୁରୁଷୋତ୍ତମପୁରରେ ଅନୁଷ୍ଠିତ ହେଉଥିବା ହର-ପାର୍ବତୀଙ୍କର ବିବାହ ଉତ୍ସବ, ଦାଣ୍ଡମୁକୁନ୍ଦପୁରଠାରେ ଚମ୍ପକ ଦ୍ୱାଦଶୀ ଦିନ ଶ୍ରୀକୃଷ୍ଣ ଓ ରୁକ୍ମିଣୀଙ୍କର ବିବାହ ଉପଲକ୍ଷେ ଅନୁଷ୍ଠିତ ଯାତ୍ରାର ନାମ ଉଲ୍ଲେଖ ଯୋଗ୍ୟ। ମାନବ ସମାଜରେ ଅନୁଷ୍ଠିତ ବିବାହ ଉତ୍ସବଗୁଡ଼ିକୁ ଅଧିକ ମନୋଜ୍ଞ କରିବା ପାଇଁ ସାଧାରଣତଃ ବାଣ ରୋଷଣୀ ବ୍ୟବହାର କରାଯାଇଥାଏ। ତେଣୁ ଦେବାଦେବୀଙ୍କ ବିବାହ ଉପଲକ୍ଷେ ବାଣ, ରୋଷଣୀ ବ୍ୟବହାର କରିବା ପାଇଁ ବ୍ରାହ୍ମଣମାନେ ସେଗୁଡ଼ିକୁ ତିଆରି କରି ପାରି ଥାଆନ୍ତି। ମାତ୍ର ଏବେ ଅନ୍ୟ ଜାତିର ଲୋକେ ଏହାକୁ ତିଆରି କରୁଥିବାର ଦେଖାଯାଏ। ପିପିଲି ଅଞ୍ଚଳରେ ତିଆରି କରାଯାଉଥିବା ବାଣଗୁଡ଼ିକ ମଧ୍ୟରୁ କାଠ ଚକ୍ର, ବାଉଁଶ ଚକ୍ର, ହାବେଳୀ, ତୁମ୍ବ, ଆକାଶ ମଲ୍ଲୀ, ଘଡ଼ି ଗଛ ବାଣ, ଚରଖା, ଉଡ଼ା ଚକ୍ର ଏବଂ ବମ୍ବାଚୀ ପ୍ରଧାନ। ଭିନ୍ନ ଭିନ୍ନ ଉତ୍ସବ ଉପଲକ୍ଷେ ବାଣରେ ବହୁ ବିଷୟ ଲେଖିବାର କାରିଗରୀ କୌଶଳରେ ଏଠାକାର ବାଣ କାରିଗରମାନେ ସିଦ୍ଧହସ୍ତ। ଉତ୍କଳ ଦିବସ ଉପଲକ୍ଷେ ''ବନ୍ଦେ ଉତ୍କଳ ଜନନୀ'', ସ୍ୱାଧୀନତା ଦିବସ ଓ ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ''ଜୟ ଭାରତ'' ଓ ବିବାହ ଉତ୍ସବରେ ବରକନ୍ୟାଙ୍କ ନାମ ଆଦିର ଲେଖା ଉଲ୍ଲେଖ ଯୋଗ୍ୟ। ଉତ୍କଳ ଦିବସ ଉପଲକ୍ଷେ ରାଜଧାନୀ ଭୁବନେଶ୍ୱର ଓ ପିପିଲିଠାରେ ଆୟୋଜିତ ପ୍ରତିଯୋଗିତା ଓ ହରିରାଜପୁର ମେଳଣରେ ପିପିଲିର ବାଣ କାରିଗରମାନେ ଯୋଗ ଦେଇ ବେଶ୍ ଖ୍ୟାତି ଅର୍ଜନ କରିପାରିଛନ୍ତି। ସେମାନଙ୍କ ମଧ୍ୟରୁ ଡେଲାଙ୍ଗର ଶରତ ଚନ୍ଦ୍ର ପ୍ରଧାନ, ଗୋଲାପଡ଼ାର ଧନଞ୍ଜୟ ରାଉତରାୟ, ଦାଣ୍ଡମୁକୁନ୍ଦପୁରର ରଘୁ ବେହେରା, ମଠସାହିର ଏକାଦଶୀ ନାୟକ, ପାଣିଦୋଳ ଗ୍ରାମର ପ୍ରହ୍ଲାଦ ମଳିକ

Digitized by srujanika@gmail.com

ଓ ଚିକରପଡ଼ା ଗ୍ରାମର କେଲୁ ସ୍ୱାଇଁ ଓ ରସାନନ୍ଦ ସ୍ୱାଇଁଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

## କତା ଶିଳ୍ପ

କତା ଶିଳ୍ପ ପାଇଁ ପିପିଲି ଓଡ଼ିଶା ପ୍ରସିଦ୍ଧ । ପିପିଲି ନିର୍ବାଚନ ମଣ୍ଡଳୀ ଅନ୍ତର୍ଗତ ଯଶୁଆପୁର ପଞ୍ଚାୟତର ସାତଶଙ୍ଖ ବଜାର ନିକଟରେ ନଡ଼ିଆ କତାରୁ ପ୍ରସ୍ତୁତ ବିଭିନ୍ନ ସାମଗ୍ରୀ ପାଇଁ ଏରୋକୋମ ପ୍ରାଇଭେଟ ଲିମିଟେଡ୍ ନାମରେ ଏକ କମ୍ପାନୀ ୧୯୬୨ ମସିହାରେ ପ୍ରତିଷ୍ଠିତ ହୋଇଥିଲା । ପ୍ରଥମେ ପ୍ରଭୁଦୟାଲ କ୍ୟାର, ମୋହନଲାଲ ଗୁପ୍ତା, ଠାକୁର ପ୍ରସାଦ ଅଗ୍ରୱାଲା, ବେଣୀ ପ୍ରସାଦ ଅଗ୍ରୱାଲା, ମହାବୀର ପ୍ରସାଦ ଗୋଏଙ୍କା ଓ ନିମାଇଁ ଚରଣ ମୁଖାର୍ଜୀ ନାମରେ ୭ ଜଣ ବିଶିଷ୍ଟ ବ୍ୟକ୍ତି ଶୁବଳପୁର ମୌଜାର ବୈରାଗୀ ପାତ୍ରଙ୍କ ସ୍ତ୍ରୀ ସୁନାମଣି ବେୱାଙ୍କଠାରୁ ଦୁଇ ଏକର ୮୦ ଡ଼ିସିମିଲ ଜମି କ୍ରୟ କରି ଓଡ଼ିଶା ଫାଇବର୍ ଓ ଇଣ୍ଡିଆନ୍ ଲେଟେକ୍ସ ଫାଇବର କର୍ପୋରେସନ ନାମରେ ଦୁଇଟି କମ୍ପାନୀ ପ୍ରତିଷ୍ଠା କରିଥିଲେ । ଏଥିରୁ ୧୯୬୫ରେ ଉତ୍ପାଦନ ଆରମ୍ଭ ହୋଇଥିଲା । ଏଥିପାଇଁ ୩ ଲକ୍ଷ ଟଙ୍କାର ଯନ୍ତ୍ରପାତି ଅଷ୍ଟ୍ରିଆରୁ କ୍ରୟ କରାଯାଇଥିବାର ଜଣାଯାଏ । ଖୋଲା ବଜାରରୁ କଞ୍ଚାମାଲ ଇଣ୍ଡିଆନ୍ ଲେଟେକ୍ସ ଫାଇବର୍ କର୍ପୋରେସନ୍ କ୍ରୟ କରି ଓଡ଼ିଶା ଫାଇବରକୁ ଯୋଗାଉଥିଲା । ଓଡ଼ିଶା ଫାଇବର୍ ସେଗୁଡ଼ିକୁ ପ୍ରୋସେସ୍ କରି ଇଣ୍ଡିଆନ୍ ଲେଟେକ୍ସ ଫାଇବର୍‌କୁ ଦେଉଥିଲା ବିଭିନ୍ନ ସାମଗ୍ରୀ ଉତ୍ପାଦନ ପାଇଁ । ଏଠାରେ ସିଟ୍, ମେଟ୍ରେସ୍, ଗଦି, ତକିଆ ଆଦି ପ୍ରସ୍ତୁତ କରାଯାଉଥିଲା ।

ବହୁ ଘାତ ପ୍ରତିଘାତ ଓ ଉତ୍‌ଥାନ ପତନ ମଧ୍ୟରେ ଗତି କରି ଉଭୟ କମ୍ପାନୀ ୧୯୭୭ ପର୍ଯ୍ୟନ୍ତ ଚାଲୁ ରହିଥିଲା । ୧୯୭୦, ୧୯୭୨, ୧୯୭୫ ଓ ୧୯୭୭ ମସିହାରେ ଏକାଧିକ ବାର ଶ୍ରମିକ ଧର୍ମଘଟ ପାଇଁ ୧୯୭୭ ମସିହା ନଭେମ୍ବର ୧୭ ତାରିଖ ଦିନ ଏହାକୁ ସମ୍ପୂର୍ଣ୍ଣ ରୂପେ ବନ୍ଦ କରି ଦିଆଯାଇଥିଲା ।

ମାତ୍ର ଠିକ୍ ବର୍ଷକ ପରେ ଏରୋକୋମ ପ୍ରାଇଭେଟ ଲିମିଟେଡ୍ ନାମ ଦେଇ ୧୯୭୮ ମସିହା ଜୁନ୍ ୨ ତାରିଖ ଦିନ ଅନ୍ୟ ଏକ କମ୍ପାନୀ ସ୍ଥାପିତ ହୋଇଥିଲା । କୁଲଦୀପ ଗୁପ୍ତା, ଟି.ସି.ସିଘାଲ ଓ ଜ୍ଞାନଚାନ୍ଦ ଅଗ୍ରୱାଲା ଏହାର ପରିଚାଳନା କମିଟି (ବୋର୍ଡ଼ ଅଫ ଡ଼ାଇରେକ୍ଟର୍ସ) ରୂପେ କାର୍ଯ୍ୟ କଲେ । ତନ୍ମଧ୍ୟରୁ ଟି.ସି.ସିଘାଲଙ୍କ ମୃତ୍ୟୁ ପରେ ଅର୍ଜୁନ ଗୁପ୍ତା ଓ ୧୯୯୨ରେ ଅର୍ଜୁନ ଗୁପ୍ତାଙ୍କ ମୃତ୍ୟୁ ପରେ ତାଙ୍କ ସ୍ତ୍ରୀ ଅଳକା ଗୁପ୍ତା ଏହାର ସଭ୍ୟ ରୂପେ କାର୍ଯ୍ୟ କରୁଛନ୍ତି ।

Digitized by srujanika@gmail.com

ଏହି କମ୍ପାନୀର ବାର୍ଷିକ ଆୟ ୧୯୯୦ରେ ୨କୋଟି ୨୮ ଲକ୍ଷ ଟଙ୍କା ଥିବା ସ୍ଥଳେ ଏବେ ଏହା ୧କୋଟି ୬୦ ଲକ୍ଷ ଟଙ୍କାକୁ ହ୍ରାସ ପାଇଛି। ଏଥିପାଇଁ ମୁଖ୍ୟତଃ ଶ୍ରମିକ ଆନ୍ଦୋଳନ ହିଁ ଦାୟୀ। ଏବେ ଏଠାରେ ୧୦୦ ଜଣ ଶ୍ରମିକ କାମ କରୁଛନ୍ତି ଏବଂ ଏମାନେ ସମସ୍ତେ ପିପିଲି ଅଞ୍ଚଳର ଲୋକ। ଶ୍ରମିକ ଅଶାନ୍ତି ପାଇଁ ଏହି କମ୍ପାନୀର ଗୋଟିଏ ଶାଖା ମହାରାଷ୍ଟ୍ରର ନାଗପୁରଠାରେ ପ୍ରତିଷ୍ଠିତ ହୋଇ ସାରିଲାଣି। ପିପିଲି ଶାଖାରୁ ଉତ୍ପାଦିତ ଦ୍ରବ୍ୟ ମହାରାଷ୍ଟ୍ର, ପଶ୍ଚିମବଙ୍ଗ ବିଶେଷତଃ କଲିକତା, ଆସାମ ଓ ଦକ୍ଷିଣ ଭାରତରେ ବିକ୍ରୟ ହେଉଛି।

## କୃଷି

ପିପିଲି ଅଞ୍ଚଳର ଅର୍ଥନୈତିକ ଐତିହ୍ୟର ଆଲୋଚନା ଅବସରରେ ସେଠାରେ କୃଷିର ବିକାଶ ଉପରେ କିଞ୍ଚିତ ଆଲୋକପାତ କରିବା ଆବଶ୍ୟକ। କାରଣ କେବଳ ପିପିଲି କାହିଁକି, ଗ୍ରାମ ବହୁଳ ଭାରତ ବର୍ଷର ଅର୍ଥନୀତି ମୁଖତଃ କୃଷି ଉପରେ ପର୍ଯ୍ୟବେସିତ। ଯୁଗେ ଯୁଗେ ଭାରତୀୟଙ୍କ ଅର୍ଥନୈତିକ ଜୀବନରେ କୃଷି ହିଁ ମୁଖ୍ୟ ଭୂମିକା ଗ୍ରହଣ କରିଆସିଛି। ପିପିଲି ଭୂଖଣ୍ଡ ମଧ୍ୟ ସେହି ସତ୍ୟରୁ ବହିର୍ଭୂତ ହୋଇନାହିଁ। ପିପିଲିକୁ ପୁରୀ ଜିଲ୍ଲାର ଶସ୍ୟାଗାର ରୂପେ କୁହାଯାଏ। ଏହି ପରିପ୍ରେକ୍ଷୀରେ ପିପିଲି ଅଞ୍ଚଳର କୃଷି ଉପରେ ସମ୍ୟକ୍ ଆଲୋଚନା କରାଯାଇଛି।

ସୁଦୂର ଅତୀତରେ ଦୟାନଦୀ କୂଳରୁ ସତ୍ୟବାଦୀ ପର୍ଯ୍ୟନ୍ତ ପିପିଲିର ବିସ୍ତୀର୍ଣ୍ଣ ଅଞ୍ଚଳ ଘନ ଜଙ୍ଗଲରେ ପରିପୂର୍ଣ୍ଣ ହୋଇଥିବାର ବିଶ୍ୱାସ କରାଯାଏ। ଏବେ ମଧ୍ୟ ତା'ର ସଂକେତ ଧଉଳି, ନିଜଗଡ଼କୁରୁଖି ଓ ବିଶ୍ୱନାଥ ମୁଣ୍ଡିଆର ସମୀପବର୍ତ୍ତୀ ଅଞ୍ଚଳରେ ପରିଲକ୍ଷିତ ହୁଏ। ମାତ୍ର ସେହି ସମୟରେ ଦୟା, ଭାର୍ଗବୀ, ରତ୍ନଚିରା ଓ ଗୋଦାବରୀ ନଦୀର କୂଳେ କୂଳେ ଅବସ୍ଥିତ ଭୂଖଣ୍ଡଗୁଡ଼ିକ ଚାଷୋପଯୋଗୀ ହୋଇଥିବ। ଏଥିସହିତ ପ୍ରଥମ ଜନବସତି ସେହି ଅଞ୍ଚଳରେ ହିଁ ଗଢ଼ି ଉଠିଥିବ। କାରଣ ନଦୀକୂଳରେ ଭାରତବର୍ଷ କାହିଁକି ସମଗ୍ର ବିଶ୍ୱର ଆଦି ସଭ୍ୟତାଗୁଡ଼ିକ କୁସୁମାୟିତ ହୋଇଛି। ଉର୍ବର ମୃତ୍ତିକା, ବର୍ଷ ସାରା ଜଳ ଓ ଗୃହ ନିର୍ମାଣ ପାଇଁ ଆବଶ୍ୟକୀୟ ଉପାଦାନ ପ୍ରଚୁର ପରିମାଣରେ ମିଳିଥିବାରୁ ଯାଯାବର ଜୀବନଯାପନ କରୁଥିବା ମଣିଷ ସ୍ଥାୟୀ ବସବାସ ପାଇଁ ସେହି ସ୍ଥାନଗୁଡ଼ିକୁ ନିର୍ବାଚନ କରିଛି। ମିଶରର ନୀଳନଦୀ, ଚୀନର ହୋୟାଂହୋ ଓ ୟାଂସିକିୟାଂ ନଦୀ, ମେସୋପୋଟାମିଆର ଇଉଫ୍ରେଟିସ୍ ଓ ଟାଇଗ୍ରୀସ ନଦୀ ଓ ଭାରତ ବର୍ଷର ସିନ୍ଧୁ ନଦୀକୂଳ ପୃଥିବୀରେ ଆଦି ସଭ୍ୟତାର ଉନ୍ମେଷରେ ମୁଖରିତ ହୋଇଥିଲା। ସେହିପରି

Digitized by srujanika@gmail.com

ପିପିଲି ଅଞ୍ଚଳର ନଦୀଗୁଡ଼ିକର ତୀରେ ତୀରେ ଅଧିବାସୀମାନେ ଚାଷକାର୍ଯ୍ୟ ଆରମ୍ଭ କରିଥିଲେ। ଧାନ ଥିଲା ସେମାନଙ୍କର ପ୍ରଧାନ ଚାଷ। ପରେ ପରେ ଜନ ସଂଖ୍ୟା ବୃଦ୍ଧି ପାଇବାରୁ ଲୋକମାନେ ଜଙ୍ଗଲ ସଫାକରି ଜମିଗୁଡ଼ିକ ଚାଷୋପଯୋଗୀ କରିଥିଲେ। ସେତେବେଳେ ଉର୍ବର ମୃତ୍ତିକା ପାଇଁ ସେହିସବୁ ସ୍ଥାନ ଫସଲରେ ହସି ଉଠୁଥିବ। ସମ୍ଭବତଃ, ଲୋକସଂଖ୍ୟା ଅନୁପାତରେ ଧାନ ଆମଦାନୀ ଅଧିକ ହୋଇଥିବାରୁ ସେମାନେ ଅନ୍ୟ କୌଣସି ଫସଲ ଚାଷକରିବା ଦିଗରେ ମନ ବଳାଇ ନଥିଲେ।

ସମୟର ଗତି ସଙ୍ଗେ ସଙ୍ଗେ ମଣିଷର ଆଶା ଆକାଂକ୍ଷା ବୃଦ୍ଧି ପାଇଛି। ସେ ଚାହିଁଛି ତାର ଜୀବନକୁ ଅଧିକ ସୁନ୍ଦର ଓ ସରସ କରିବା ପାଇଁ। ସେଥିପାଇଁ ଅର୍ଥର ଆବଶ୍ୟକତା ହୋଇଛି। ଏହା ପାଇବା ପାଇଁ ସେ ଧାନ ବ୍ୟତୀତ ଅନ୍ୟ ଫସଲ ଉତ୍ପନ୍ନ କରିବା ଦିଗରେ ମନ ବଳାଇଛି। ତାହାହିଁ ହୋଇଛି ପିପିଲି ଅଞ୍ଚଳରେ। ଏଲ୍.ଏସ୍.ଏସ୍.ଓ.ମାଲେଙ୍କ ଦ୍ୱାରା ସଂକଳିତ ପୁରୀ ଜିଲ୍ଲା ଗେଜେଟିଅରରେ ଏ ବିଷୟରେ କେତୋଟି ତଥ୍ୟ ସ୍ଥାନ ପାଇଛି। ସେ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଏହା ସଂକଳନ କରିଥିଲେ ଓ ୧୯୦୮ ମସିହାରେ ପ୍ରକାଶ ହୋଇଥିଲା। ସେଥିରୁ ଜଣାଯାଏ ଯେ, ପିପିଲିର ହାରାହାରି ବାର୍ଷିକ ବୃଷ୍ଟିପାତ ୫୫.୬୬ ଇଞ୍ଚ ଥିଲା। କେବଳ ମାତ୍ର ୧୮୬୨ ମସିହାରେ ୧୩୬ ଇଞ୍ଚ ବର୍ଷା ହୋଇଥିଲା।(୧)। ଏହି ଅନୁକୂଳ ବୃଷ୍ଟିପାତ ଯୋଗୁଁ ସପ୍ତଦଶ ଶତାବ୍ଦୀଠାରୁ ଲୋକମାନେ ମୁଖ୍ୟତଃ ଶାରଦ ଧାନ ଚାଷ କରିବା ସଙ୍ଗେ ସଙ୍ଗେ କିଛି ପରିମାଣର ବିରି, ମୁଗ, କୋଳଥ ପ୍ରଭୃତି ରବି ଫସଲ ଚାଷ କରିଥିଲେ। ଏହିସବୁ ରବି ଫସଲର ଉତ୍ପାଦନ ହୋଇଥିଲା ଶତକଡ଼ା ୯ ଭାଗ। ବାକି ୯୧ ଭାଗ ଥିଲା ଧାନ। ମାତ୍ର ଊନବିଂଶ ଶତାବ୍ଦୀ ବେଳକୁ ଉପରୋକ୍ତ ଫସଲ ବ୍ୟତୀତ ପିପିଲି ଅଞ୍ଚଳର ଲୋକମାନେ ରାଶି, ସୋରିଷ, ଜଡ଼ା ଓ ଆଖୁ ଚାଷ ଆରମ୍ଭ କରିଥିବା ବିଷୟ ଓ'.ମାଲେ ତାଙ୍କ ପୁସ୍ତକରେ ଉଲ୍ଲେଖ କରିଛନ୍ତି। ସେତେବେଳେ ଢିପ ଜମିକୁ ଯନ୍ତ ଓ ଟେଣ୍ଡା ସାହାଯ୍ୟରେ ପୋଖରୀ, କୂଅ ଓ ନଦୀରୁ ପାଣି ଉଠାଇ ଜଳ ସେଚନ କରିଥିବା ବିଷୟ ସେ ମଧ୍ୟ ଦର୍ଶାଇଛନ୍ତି।(୨)। ୧୯୩୦ ମସିହା ବେଳକୁ ଉପରୋକ୍ତ ରବି ଫସଲ ପ୍ରଚୁର ପରିମାଣରେ ଚାଷ ହେଉଥିବାର ପିପିଲି ଅଞ୍ଚଳର ୮୪ ବର୍ଷ ବୟସ୍କ ଅଧିବାସୀ ତଥା ପୁସ୍ତକର ପ୍ରକାଶକ ଶ୍ରୀ ଜନାର୍ଦ୍ଦନ ପଟ୍ଟନାୟକ

---

(୧) L.S.S.O' Malley, Bengal District Gazetteer, p.245
(୨) L.S.S.O' Malley,Op.cit. p.150

Digitized by srujanika@gmail.com

ନିଜେ ଦେଖିଛନ୍ତି ବୋଲି ଏକ ସାକ୍ଷାତକାରରେ ପ୍ରକାଶ କରିଛନ୍ତି । ସେହି ଊନବିଂଶ ଶତାବ୍ଦୀରେ ମଧ୍ୟ ପାନ, ନଡ଼ିଆ ଓ ବାଉଁଶ ପ୍ରଭୃତି ଚାଷ କରାଯାଉଥିଲା । ଏହା ଉପରେ ବ୍ରାହ୍ମଣମାନଙ୍କର ଏକଚାଟିଆ ଅଧିକାର ଥିଲା ବୋଲି ରମେଶ ଚନ୍ଦ୍ର ମହାପାତ୍ର ସଂଗ୍ରହ କରିଥିବା ତଥ୍ୟରୁ ଜଣାଯାଏ । ଏଥିରେ ମଧ୍ୟ ସତ୍ୟତା ଥିବାର ବିଶ୍ୱାସ କରାଯାଏ । ସେତେବେଳେ ବ୍ରାହ୍ମଣମାନଙ୍କର ସ୍ଥାନ ଥିଲା ସମାଜର ଶୀର୍ଷ ସ୍ଥାନରେ । ସେମାନଙ୍କୁ ଧର୍ମର ନିୟାମକ ବୋଲି ଲୋକମାନେ ଗ୍ରହଣ କରିଥିଲେ । ତେଣୁ ନିଜର ପ୍ରତିଷ୍ଠା ବଜାୟ ରଖିବା ନିମନ୍ତେ ଲୋକମାନଙ୍କର କେତୋଟି ଅତ୍ୟାବଶ୍ୟକୀୟ ଦ୍ରବ୍ୟର ଉତ୍ପନ୍ନ ଉପରେ ସେମାନେ ନିୟନ୍ତ୍ରଣ ଜାରୀ କରିବା ପାଇଁ ଚାହିଁଥିଲେ । ତନ୍ମଧ୍ୟରୁ ଗୋଟିକର ଦୃଷ୍ଟାନ୍ତ ଦିଆ ଯାଇପାରେ । ତାହା ଥିଲା ଶ୍ରୀଫଳ ବା ନଡ଼ିଆ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଗୋଟିଏ ହିନ୍ଦୁ ପରିବାରରେ ପୂଜା ଆଦି ଲାଗି ରହିଥାଏ ଏବଂ ପ୍ରତ୍ୟେକ କ୍ଷେତ୍ରରେ ନଡ଼ିଆ ବ୍ୟବହାର କରାଯାଏ । ନଡ଼ିଆ ନହେଲେ ସବୁ ଧର୍ମ କାର୍ଯ୍ୟ ନିଷ୍ଫଳ ବୋଲି ସେତେବେଳେ କାହିଁକି ଏବେ ମଧ ବହୁ ଲୋକଙ୍କର ଧାରଣା । ସେଥିପାଇଁ ଆମେ ଦେଖିଥାଉଁ କୌଣସି ପୂଜା ବା ପର୍ବର ଅବ୍ୟବହିତ ପୂର୍ବରୁ ବଜାରରେ ନଡ଼ିଆର ମୂଲ୍ୟ ପ୍ରାୟ ଅଧିକ ହୋଇଯାଏ । ସେହି ଦୃଷ୍ଟିରୁ ଯଦି ନଡ଼ିଆ ଚାଷକୁ ଏକଚାଟିଆ କରି ରଖାଯାଇ ପାରିବ ତେବେ ସେମାନେ ତାକୁ ମନମୁଖୀ ଦରରେ ବିକ୍ରୟ କରିବା ସଂଗେ ସଂଗେ ସମାଜରେ ନିଜର ପ୍ରତିଷ୍ଠା ବଜାୟ ରଖିପାରିବେ । ସେଥିପାଇଁ ନଡ଼ିଆ ଚାଷକୁ ବ୍ରାହ୍ମଣମାନେ ଏକଚାଟିଆ କରି ରଖିଥିଲେ । କିନ୍ତୁ ଏବେ ମନରେ ସେ ଧାରଣାର ପରିବର୍ତ୍ତନ ଘଟିଛି । ନଡ଼ିଆ, ବାଉଁଶ ଓ ପାନ ଚାଷ ବେଶ୍ ଲାଭଜନକ ଭାବି ସମସ୍ତେ ନିଜ ନିଜ ବାଡ଼ିରେ ଏହା ଲଗାଇଲେଣି । ତଥାପି ସେହି ଧାରଣା ଏତେ ଅସ୍ଥିମଜ୍ଜାଗତ ହୋଇଯାଇଛି ଯେ, କେତେକ ରକ୍ଷଣଶୀଳ ପରିବାର ଏବେ ମଧ୍ୟ ନଡ଼ିଆ ଚାଷ ଶୁଭଙ୍କରୀ ନୁହେଁ ବୋଲି କହି ସେ ଦିଗରେ ଆଗ୍ରହ ପ୍ରକାଶ କରୁନାହାନ୍ତି । ଧାନ ଓ ରବି ଫସଲ ସହିତ କେତେକ ଲୋକ ନିଜନିଜ ବାଡ଼ିରେ ପୋଲାଙ୍ଗ ଗଛ ଲଗାଇଥିଲେ ଜାଳିବା ତେଲର ଆବଶ୍ୟକତା ମେଣ୍ଟାଇବା ପାଇଁ । ବହୁ ପୂର୍ବରୁ ଏହି ଗଛର ଫଳରୁ ତେଲ ଉତ୍ପାଦନ କରି ଲୋକମାନେ ତାହା ବହୁଳ ଭାବେ ବ୍ୟବହାର କରିଥିବାର ଜଣାଯାଏ । ନଦୀପଠାରେ ଏହି ବୃକ୍ଷ ବହୁଳ ପରିମାଣରେ ଦେଖାଯାଏ । କିରେସିନି ତେଲର ବ୍ୟବହାର ଜାଣିବାପରେ ମଧ୍ୟ ତାହା ଯଥେଷ୍ଟ ହେଉନଥିବାରୁ ପୋଲାଙ୍ଗ ତେଲ ବ୍ୟବହାର କରାଯାଉଥିଲା । ଏବେ ଅବଶ୍ୟ ସେ ତେଲର ଚାହିଦା ହ୍ରାସ ପାଇଛି । ତଥାପି ଏବେ ପିପିଲି ଅଞ୍ଚଳରେ ଠାଏ ଠାଏ ନଦୀପଠାମାନଙ୍କରେ ପୋଲାଙ୍ଗ ବଗିଚା

Digitized by srujanika@gmail.com

ଦଣ୍ଡାୟମାନ ହୋଇ ଅତୀତର ସେହି ସ୍ମୃତିକୁ ଉଦ୍‌ଜୀବିତ କରୁଛି।

୧୯୩୪ ମସିହା ବେଳକୁ ପିପିଲି ଅଞ୍ଚଳରେ କୃଷି କାର୍ଯ୍ୟରେ କେତେକ ପରିବର୍ତ୍ତନ ଦେଖାଯାଇ ଥିଲା। ସେହିବର୍ଷ ଗାନ୍ଧିଜୀ ପଦଯାତ୍ରା କରି ପୁରୀରୁ ପିପିଲି ଦେଇ କଟକ ଆସିବାର ଥାଏ। ସେହି ପରିପ୍ରେକ୍ଷୀରେ ପୁରୀ ଅଂଚଳର କର୍ମୀମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ଯେ, ଗାନ୍ଧିଜୀ ସଭା ସମିତି ଓ ରାତ୍ରି ଯାପନ କରୁଥିବା ସ୍ଥାନର ୧୦ ମାଇଲ ପରିସର ମଧ୍ୟରେ ଯେଉଁଠି ଯେଉଁ ଫସଲ ଉତ୍ପାଦିତ ହେଉଥିବ ତାହା ସେ ଓ ଅନ୍ୟ କର୍ମୀମାନେ ଭୋଜନ କରିବେ। ଗାନ୍ଧିଜୀ ଓ ଅନ୍ୟମାନେ ମୁଖ୍ୟତଃ ରୁଟି ଖାଉଥିବାରୁ ଗୋପବନ୍ଧୁ ଚୌଧୁରୀଙ୍କ ନିର୍ଦ୍ଦେଶ କ୍ରମେ ପିପିଲି ଓ ଡେଲାଙ୍ଗ ଅଂଚଳରେ ପ୍ରଥମଥର ପାଇଁ ଗହମ ଓ ବିଲାତି ବାଇଗଣ ଚାଷ କରାଯାଇଥିଲା। ୪ ବର୍ଷ ମଧ୍ୟରେ ଏହାର ଉତ୍ପାଦନ ଏତେ ବୃଦ୍ଧି ପାଇଥିଲା ଯେ, ୧୯୩୮ ମସିହାରେ ଡେଲାଙ୍ଗ ନିକଟବର୍ତ୍ତୀ ବେରବୋଇଠାରେ ଅନୁଷ୍ଠିତ ଗାନ୍ଧି ସେବାସଂଘ ଅଧିବେଶନରେ ଯୋଗ ଦେଇଥିବା ଶତସହସ୍ର କର୍ମୀମାନଙ୍କ ଭୋଜନ ପାଇଁ ପିପିଲି ଓ ଡେଲାଙ୍ଗ ଅନ୍ୟାନ୍ୟ ପନିପରିବା ବ୍ୟତୀତ ଯଥେଷ୍ଟ ପରିମାଣରେ ଗହମ ଓ ବିଲାତି ବାଇଗଣ ଯୋଗାଇ ଦେବାରେ ସକ୍ଷମ ହୋଇପାରିଥିଲା। ପରେ ପରେ ୧୯୪୪ ମସିହାରେ ପ୍ରଖ୍ୟାତ ସମାଜସେବୀ ଡକ୍ଟର ହରିଚରଣ ଗିରି ପ୍ରଥମ ଥର ପାଇଁ ପିପିଲି ଅଞ୍ଚଳରେ କୋବି ଚାଷ ଆରମ୍ଭ କରିଥିଲେ। କେବଳ ସେତିକି ନୁହେଁ, କୃଷି ସମ୍ବନ୍ଧରେ ବିଭିନ୍ନ ବିଷୟ କୃଷକମାନଙ୍କ ଅବଗତ ପାଇଁ ସେ କଲିକତା ଓ ମାନ୍ଦ୍ରାଜରୁ ବହି ମଗାଇ ତାହା ବିତରଣ କରିବା ସଂଗେ ସଂଗେ ତା'ର ସାରାଂଶ ସମସ୍ତଙ୍କୁ ବୁଝାଇଥିଲେ। ଏଥି ସହିତ ସେ ଆମ୍ବ, ଲେମ୍ବୁ ଆଦି ଫଳ ଗଛର କଲମି ଚାରା ମଗାଇ ପ୍ରଥମେ ପିପିଲି ଅଞ୍ଚଳରେ ଏ ସବୁର ପ୍ରଚଳନ କରାଇଥିଲେ। ସେ ମଧ୍ୟ ନିଜେ କଲମି ଚାରା ପ୍ରସ୍ତୁତ କରିଥିଲେ। ଏହା ଏତେ ଉନ୍ନତ ଧରଣର ହୋଇଥିଲା ଯେ, ପୁରୀ ଜିଲ୍ଲାର କୃଷି ବିଭାଗ ତାଙ୍କଠାରୁ ସେ ସବୁ କ୍ରୟକରି ଗାଁ ଗହଳିରେ ଲୋକମାନଙ୍କୁ ଦେଉଥିଲେ। ଏ ଦିଗରେ ଅନ୍ୟ ତିନିଜଣ ବ୍ୟକ୍ତିଙ୍କର ଅବଦାନ ପ୍ରଶଂସନୀୟ। ସେମାନେ ଥିଲେ କମାକଣ୍ଡିଆ ଗ୍ରାମର ସ୍ୱର୍ଗତ ରାଜ କିଶୋର ପଟ୍ଟନାୟକ, ଶୁଆବରେଇ ଗ୍ରାମର ସ୍ୱର୍ଗତ ଯଦୁମଣି କୋଦମାସିଂ ଓ ସିଂହାରପୁର ଗ୍ରାମର ସ୍ୱର୍ଗତ ନାରାୟଣ ସେନାପତି। ସ୍ୱର୍ଗତ ପଟ୍ଟନାୟକ ପିପିଲି ଅଞ୍ଚଳରେ ଏକ ନୂତନ ପ୍ରକାରର କଦଳୀ ଚାଷ ନିଜେ କରି ତାହା ଲୋକମାନଙ୍କୁ ଶିଖାଇଥିଲେ। ତାଙ୍କର କଦଳୀ ଚାଷ ସମଗ୍ର ପୁରୀ ଜିଲ୍ଲାରେ ପ୍ରଥମ ସ୍ଥାନ ଅଧିକାର କରିଥିଲା।

Digitized by srujanika@gmail.com

ସେହିପରି ସ୍ୱର୍ଗତ କୋଦମାସିଂ ପିପିଲି ଅଂଚଳରେ କୃଷିର ବିକାଶ ପାଇଁ ବହୁବିଧ ପଦକ୍ଷେପ ଗ୍ରହଣ କରିଥିଲେ। ତନ୍ମଧ୍ୟରୁ କୃଷି ଋଣ ସହଯୋଗ ସମିତି ସ୍ଥାପନ ଅନ୍ୟତମ। ଏହା ସେ ତାଙ୍କ ନିଜ ଗ୍ରାମରେ ୧୯୫୫ ମସିହାରେ ସ୍ଥାପନ କରିଥିଲେ। ସ୍ୱର୍ଗତ ସେନାପତି ମଧ୍ୟ ପିପିଲି ଅଞ୍ଚଳରେ କୃଷିର ଉନ୍ନତି ପାଇଁ ଯତ୍ନବାନ ଥିଲେ। ସେ ନିଜ ଜମିରେ ସଦା ସର୍ବଦା ନୂଆ ପନିପରିବା ଚାଷ କରିବା ସଙ୍ଗେ ସଙ୍ଗେ ଅନ୍ୟ ଚାଷୀମାନଙ୍କୁ ପ୍ରୋତ୍ସାହିତ କରିଥିଲେ। ପିପିଲି ଅଞ୍ଚଳରେ କୃଷିର ଉନ୍ନତି ଆଣିବା ଦିଗରେ ଅନ୍ୟ ଦୁଇଜଣ ସରକାରୀ କର୍ମଚାରୀଙ୍କର ଅବଦାନ ସ୍ମରଣୀୟ। ସେମାନେ ହେଉଛନ୍ତି, ପିପିଲିର ପ୍ରଥମ ତହସିଲଦାର ଭାସ୍କର ଷଡ଼ଙ୍ଗୀ ଓ ପ୍ରଥମ ବି.ଡି.ଓ ବୃନ୍ଦାବନ ସାମନ୍ତରାୟ।

ସ୍ୱାଧୀନତା ପ୍ରାପ୍ତିପରେ ବିଶେଷ କରି ୧୯୬୦ ପରେ ପିପିଲି ଅଞ୍ଚଳରେ କୃଷିର ପ୍ରଭୂତ ବିକାଶ ହୋଇଥିବାର ଦେଖାଯାଏ। ଧଉଳି ମୁଣ୍ଡିଆଠାରୁ ସତ୍ୟବାଦୀ ପର୍ଯ୍ୟନ୍ତ ୮ ନମ୍ବର ରାଜପଥର ଦୁଇ ପାର୍ଶ୍ୱରେ ପିପିଲି ଅଞ୍ଚଳର ଦୀର୍ଘ ୩୦ କି.ମି. ଭୂଖଣ୍ଡ ଧାନ ସମେତ ନାନା ପ୍ରକାର ସବୁଜିମାରେ ହସି ଉଠୁଥିବାର ଦେଖାଯାଏ। ସତେ ଯେପରି ଜଣାଯାଏ ଫସଲର ଏକ ଅପୂର୍ବ ଶୋଭାଯାତ୍ରା ଚାଲିଛି। ଢିପ ଜମିରେ ବିଆଳି, ଜିଲେଇସିଆଳି ଓ ଗୋଲାଭଣ୍ଟୀ ପ୍ରଭୃତି ଧାନଚାଷ କରାଯାଉ ଥିବା ସ୍ଥଳେ ଖାଲ ଜମିରେ ରତ୍ନଚୂଡ଼ି, ପଦ୍ମକେଶରୀ, ଚମ୍ପା, କୁସୁମକୁଣ୍ଡା, ମୋତିବାଙ୍କେଇ, କଳାଖଜରା, ଜଣ୍ଡାଖଜରା, ରଙ୍ଗିଆରାଇ ଓ ହରିଶଙ୍କର ପ୍ରଭୃତି ଧାନଚାଷ କରାଯାଉଥିଲା। ଜାପାନ ପ୍ରଣାଳୀ ଚାଷ ପ୍ରବର୍ତ୍ତନ ହେବାପରେ ନୂଆ ନୂଆ ପ୍ରକାରର ଅଧିକ ଉତ୍ପାଦନ କ୍ଷମ ଧାନଚାଷ କରାଯାଇଛି। ତାହା ମଧ୍ୟ ବର୍ଷସାରା କରାଯାଉଛି। ତେଇଶପୁର ଓ ଯଶୁଆପୁର ପଂଚାୟତରେ ଚାଷ କରାଯାଉଥିବା ବାଇଗଣ ଉତ୍ପାଦନ ଆଜି ସମଗ୍ର ଓଡ଼ିଶାରେ ଏକ ଆକର୍ଷଣୀୟ ସ୍ଥାନ ଗ୍ରହଣ କରିଛି। ପ୍ରତ୍ୟହ ଏଠାରୁ ଟ୍ରକ୍ ଟ୍ରକ୍ ବାଇଗଣ ବୋଝେଇ ହୋଇ ଓଡ଼ିଶା ଏପରିକି ଓଡ଼ିଶା ବାହାରକୁ ରପ୍ତାନୀ କରାଯାଉଛି। ସାତଶଙ୍ଖ ଓ ତା'ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ମଧ୍ୟ ପୁରୀ ଜିଲ୍ଲାରେ ନାନା ପ୍ରକାର ପନିପରିବା ବିଶେଷ କରି କଦଳୀ ଓ ବୋଇତି କଖାରୁ ଉତ୍ପାଦନରେ ପ୍ରସିଦ୍ଧି ଲାଭ କରିଛି। ଭୁବନେଶ୍ୱର ଓ ତା'ର ନିକଟବର୍ତ୍ତୀ ଅଂଚଳର ଭୋଜି ପାଇଁ କାହାରି ଅଧିକ ପରିମାଣରେ ପନିପରିବାର ଆବଶ୍ୟକତା ପଡ଼ିଲେ ସେମାନେ ତାହା ସାତଶଙ୍ଖ ହାଟରୁ କ୍ରୟ କରିଥିବାର ଦେଖାଯାଏ। ସାତଶଙ୍ଖ ସୁବଳପୁର ଗ୍ରାମର ଜଣେ ଚାଷୀ କିଛି ଦିନ ତଳେ ନିଜ ବିଲରେ ୮୦ କେଜି ଓଜନର ଗୋଟିଏ ଗୋଟିଏ କଖାରୁ ଉତ୍ପାଦନ

Digitized by srujanika@gmail.com

କରି ଓଡ଼ିଶାରେ ଚହଳ ସୃଷ୍ଟି କରିଛନ୍ତି ।

ସେହିପରି ୧୯୭୨ ମସିହାଠାରୁ ପିପିଲି ଅଞ୍ଚଳରେ ଚିନାବାଦାମ ଚାଷର ଆରମ୍ଭ କରାଯାଇଥିଲା । କିନ୍ତୁ ୧୯୮୨ ଠାରୁ ୧୯୯୨ ପର୍ଯ୍ୟନ୍ତ ୧୦ ବର୍ଷ ମଧ୍ୟରେ ଏହାର ଉତ୍ପାଦନ ଆଶାତୀତ ଭାବେ ବୃଦ୍ଧି ପାଇଛି । ଏବେ ପିପିଲି ବ୍ଲକରେ ୨୫୦୦ ହେକ୍ଟର ଅଧିକ ଜମିରେ ଚିନାବାଦାମ ଚାଷ କରାଯାଉଥିବାର ଜଣାଯାଏ । ଫଳରେ ରାଜ୍ୟରେ ଖାଇବା ତେଲର ସମସ୍ୟାକୁ ପିପିଲି ବହୁ ପରିମାଣରେ ଲାଘବ କରିପାରିଛି । ଏ ଦିଗରେ ଭୁବନେଶ୍ୱରସ୍ଥିତ ଅଏଲ୍ ଓଡ଼ିଶାର ଭୂମିକା ଉଲ୍ଲେଖ ଯୋଗ୍ୟ ।

ଏବେ ପ୍ରତ୍ୟହ ଭୁବନେଶ୍ୱରକୁ ପିପିଲିରୁ ଚାଉଳ, ପନିପରିବା ଓ ନଡ଼ିଆ ପର୍ଯ୍ୟାପ୍ତ ପରିମାଣରେ ପ୍ରେରିତ ହେଉଥିବାର ଦେଖାଯାଏ । ବିଶେଷତଃ, ଭୁବନେଶ୍ୱର ହାଟଗୁଡ଼ିକ ପିପିଲି ଚାଉଳରେ ଭରପୂର ହେଉଛି । ଚାଉଳ ବ୍ୟବସାୟୀମାନଙ୍କୁ ଗ୍ରାହକ କି ଚାଉଳ ଅଛି ପଚାରିଲେ ସେମାନେ ପିପିଲି ଚାଉଳ କହି ସେମାନଙ୍କୁ ଦେଖାଇ ଥା'ନ୍ତି । କ୍ରେତା ହିସାବରେ ରାଜଧାନୀବାସୀ ସମସ୍ତେ ପ୍ରାୟ ଏହି ବିଷୟରେ ଅନୁଭବୀ । ସରୁ, ସଫା ଓ ବାଲିଗୋଡ଼ି ନଥିବା ଚାଉଳ କହିଲେ ପିପିଲି ଚାଉଳକୁ ହିଁ ବୁଝାଇଥାଏ । ଏହା ହେଉଛି ପିପିଲି ଅଂଚଳରେ କୃଷିର ବିକାଶ ଉପରେ ଏକ ସଂକ୍ଷିପ୍ତ ସୂଚନା ।

ପିପିଲି ଯଦି ପୁରୀ ଜିଲ୍ଲାର 'ଶସ୍ୟ ଭଣ୍ଡାର'ର ସ୍ୱାକ୍ଷର ବହନ କରି ଜିଲ୍ଲାର ଅର୍ଥନୈତିକ ମାନଦଣ୍ଡକୁ ଋଦ୍ଧିମନ୍ତ କରିଛି, ତେବେ ତା' ମୂଳରେ ରହିଛି ଆବଶ୍ୟକୀୟ ଜଳସେଚନ ବ୍ୟବସ୍ଥା, ସମବାୟ ସମିତି ଓ ବିଭିନ୍ନ ବ୍ୟାଙ୍କର ଭୂମିକା । ନିମ୍ନରେ ସେ ସମ୍ବନ୍ଧରେ କିଛି ଆଲୋକପାତ କରାଯାଇଛି ।

## ଜଳସେଚନ ବ୍ୟବସ୍ଥା

ପୂର୍ବରୁ ସୂଚୀତ ହୋଇଛି ଯେ, ପିପିଲି ଅଞ୍ଚଳରେ ନଦୀ, ପୁଷ୍କରିଣୀ ଓ କୂପ ଊନବିଂଶ ଶତାବ୍ଦୀ ଓ ତା' ପୂର୍ବରୁ ଭୂମିକୁ ଜଳସେଚିତ କରିବା ଦିଗରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ପରେ ପରେ କେତୋଟି କେନାଲ ଏ ଦିଗରେ ବିଶେଷ ଭାବେ ସହାୟକ ହୋଇଛି । ଯଦିଓ କଟକ ଓ ପୁରୀ ଜିଲ୍ଲାର କେତେକ ଅଞ୍ଚଳରେ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ କେତୋଟି କେନାଲ ଖନନ କରାଯାଇଥିଲା, ପିପିଲି ଅଞ୍ଚଳରେ ୧୯୬୭ ମସିହାରେ କେନାଲ ଖୋଳା

Digitized by srujanika@gmail.com

ହୋଇଛି । ଏହି ଅଞ୍ଚଳର ଦୁଇଟି ମୁଖ୍ୟ କେନାଲ ହେଲା କଣାସ ଶାଖା କେନାଲ ଓ ସାକ୍ଷୀଗୋପାଳ ଶାଖା କେନାଲ । ଉଉରା ନିକଟସ୍ଥ ବାରମାଣଠାରେ କଣାସ ଶାଖା କେନାଲଟି ଭାର୍ଗବୀ ନଦୀରୁ ଉତ୍ପତ୍ତି । ପୁନଶ୍ଚ, ଏହି କେନାଲରୁ ବାହାରିଛି ଡେଲାଙ୍ଗ ଡିଷ୍ଟ୍ରିବ୍ୟୁଟାରୀ । ସେହିପରି ସାକ୍ଷୀଗୋପାଳ କେନାଲ ମଧ୍ୟ ଭାର୍ଗବୀ ନଦୀରୁ ନିର୍ଗତ ହୋଇଛି । ଶ୍ରୀକଣ୍ଠପୁରଠାରେ ଏହି ସାକ୍ଷୀଗୋପାଳ ଶାଖା କେନାଲରୁ ଶୁକଳ ଡିଷ୍ଟ୍ରିବ୍ୟୁଟାରୀ ବାହାରିଛି । ଏଗୁଡିକ ଦ୍ୱାରା ସମଗ୍ର ପିପିଲି ଓ ଡେଲାଙ୍ଗ ବ୍ଲକ ଜଳସେଚିତ ହୋଇ ପାରିଛି । ଏବେ ଉଭୟ ବ୍ଲକରେ ଜଳସେଚିତ ହେଉଥିବା ଜମିର ପରିମାଣ ୧୧,୮୫୭ ହେକ୍ଟର । ଫଳରେ ସେହି ସବୁ ଜମିରେ ପର୍ଯ୍ୟାପ୍ତ ପରିମାଣରେ ଧାନ, ପନିପରିବା ଓ ଚିନାବାଦାମ ଚାଷ କରାଯାଇ ପାରୁଛି । ଏବେ ପିପିଲି ଅଞ୍ଚଳର ବିଭିନ୍ନ ସ୍ଥାନରୁ ତଥ୍ୟ ସଂଗ୍ରହ କରିବା ଅବକାଶରେ କୌଶଲ୍ୟାପୁର, କାଇରି, ଭଉଳ, ପମସରା (ହଳଦି ବସନ୍ତ), ଗୋବର୍ଦ୍ଧନପୁର, ଭାଲିଆବିଲି, ପୋପରଙ୍ଗା, ଆରୁହା, ଦରଡ଼ା, ବୁଡ଼ାପଡ଼ା, କାକୁଡ଼ିଆ, ବାଗେଶ୍ୱରପୁର, ମଠସାହି, ପାଣିଦୋଳ, ପାଟଯୋଶୀପୁର, ଖୋରାପଦା, କଣ୍ଟି, ମାଧିପୁର ଆଦି ଗ୍ରାମ ସହିତ ଦାଣ୍ଡମୁକୁନ୍ଦପୁର ଠାରୁ ସାତଶଙ୍ଖ ପର୍ଯ୍ୟନ୍ତ ଗ୍ରାମଗୁଡିକୁ ସଂଲଗ୍ନ କରି ଚାଷ ଜମିଗୁଡିକ ଏପ୍ରିଲ ମାସରେ ଦେଖିବାକୁ ସୁଯୋଗ ମିଳିଥିଲା । ସେଥିରେ ଟାଇଚୁଙ୍ଗ ଧାନ ଚାଷ ଏପରି ଭରପୁର ହୋଇଥିବାର ଦେଖି ମୁଁ କାହିଁକି ଯେ କେହି ବ୍ୟକ୍ତି ଦେଖିଲେ ଆନନ୍ଦରେ ଅଭିଭୂତ ହୋଇଯିବ । ମଝିରେ ଗୋଟିଏ ହେଲେ ଜମି ପଡ଼ିଆ ପଡ଼ିଥିବାର ମୁଁ ଦେଖିପାରିଲି ନାହିଁ । ସତେ ଜଣାପଡୁଥିଲା ସେହି ସବୁ ଜମି ବର୍ଷାଦିନିଆ ଧାନ ଫସଲରେ ପରିପୂର୍ଣ୍ଣ ।

କେନାଲ ଜଳ ବ୍ୟତୀତ ବିଭିନ୍ନ ସ୍ଥାନରେ କୂପ, ନଳକୂପ, ପୁଷ୍କରିଣୀ ଖନନ ଓ ଉଠା ଜଳସେଚନ ବ୍ୟବସ୍ଥା କରାଯାଇ ଜଳସେଚନ ପ୍ରକ୍ରିୟାକୁ ଅଧିକ ପରିପୁଷ୍ଟ କରା ଯାଇଛି । ଏ ଦିଗରେ ବିଭିନ୍ନ ପର୍ଯ୍ୟାୟରେ ସ୍ଥାନୀୟ ବିଧାୟକମାନଙ୍କର ଅବଦାନ ଉଲ୍ଲେଖ ଯୋଗ୍ୟ । ବିଧାୟକ ଜୟକୃଷ୍ଣ ମହାନ୍ତି ପିପିଲିରେ ୩୦୦ଟି ନଳକୂପ, ୫୪ଟି କୂପ ଓ ଡ଼େଲାଙ୍ଗ ଅଞ୍ଚଳରେ ବହୁ ପୁଷ୍କରିଣୀ ଖନନ କରିଥିଲେ । ଏ ଦିଗରେ ବିଧାୟକ ବିପିନ୍ ଦାଶଙ୍କର ଅବଦାନ ମଧ୍ୟ ସ୍ୱୀକାର୍ଯ୍ୟ । ସେ ବିଧାୟକ ଥିବା ସମୟରେ ୧୯୭୪ ମସିହାରେ ଇଞ୍ଜିନିୟର ତପନ ବୋଷ ଓ ମୁକୁନ୍ଦ ମହାପାତ୍ରଙ୍କ ଉଦ୍ୟମ ଫଳରେ ଗଙ୍ଗୁଆ ପ୍ରକଳ୍ପ ଆରମ୍ଭ କରାଯାଇ ଥିଲା । ଅବଶ୍ୟ ଏହା ମୁଖ୍ୟତଃ ବନ୍ୟାଜଳ ନିଷ୍କାସନ କରିବା ପାଇଁ ଉଦ୍ଦିଷ୍ଟ । ଏହି ପ୍ରକଳ୍ପ କାର୍ଯ୍ୟ

Digitized by srujanika@gmail.com

ଏବେ ମଧ୍ୟ ସମାପ୍ତ ହୋଇ ନାହିଁ। ଏହାର କାର୍ଯ୍ୟ ଶୀଘ୍ର ସମାପ୍ତ କରିବା ପାଇଁ ଏବେ ସ୍ଥାନୀୟ ବିଧାୟକ ପ୍ରଦୀପ ମହାରଥି ବେଶ୍ ସକ୍ରିୟ ହୋଇଛନ୍ତି। ତାଙ୍କରି ଉଦ୍ୟମରେ ଏହି ପ୍ରକଳ୍ପ ପାଇଁ ସରକାର ୮୫ ଲକ୍ଷ ଟଙ୍କା ମଞ୍ଜୁର କରିଥିବାର ଜଣାଯାଏ। ଏହି କାର୍ଯ୍ୟ ଶେଷ ହୋଇଗଲେ ପାଟ୍‌ଲପୁର, ନିଳିଗଡ଼କୁରୁଖି ଓ ପୋପରଙ୍ଗା ପଞ୍ଚାୟତର ବହୁ ଗ୍ରାମ ଉପକୃତ ହୋଇ ପାରିବ। ନଦୀଜଳ ନିଷ୍କାସନ ହୋଇ ପାରିଲେ ଚାଷ ଜମିର ଉତ୍ପାଦନ ବୃଦ୍ଧି ପାଇବ। ବିଧାୟକ ମହାରଥି ଯଦି ଏହିପରି ସକ୍ରିୟ ହୋଇ କାର୍ଯ୍ୟ କରନ୍ତି, ତେବେ ଆଶା କରାଯାଏ ଧରମା କୋଣାର୍କ ଦେଉଳର ମୁଣ୍ଡି ମାରିବା ପରି ସେ ହିଁ ଏହି ପ୍ରକଳ୍ପର ମୁଣ୍ଡି ମାରି ପାରିବେ। କେବଳ ସେତିକି ନୁହେଁ, ବିଧାୟକ ମହାରଥି ବର୍ତ୍ତମାନ ପର୍ଯ୍ୟନ୍ତ ପିପିଲି ବ୍ଲକରେ ୧୧ଟି ଓ ଡେଲାଙ୍ଗ ବ୍ଲକରେ ୧୬ଟି ଉଠା ଜଳ ସେଚନ କୂପ ସ୍ଥାପନ କରି ପାରିଛନ୍ତି। ଏତଦ୍ ବ୍ୟତୀତ ତାଙ୍କର ପ୍ରଚେଷ୍ଟା ଯୋଗୁଁ ଉଭୟ ବ୍ଲକରେ ଡାନିଡ଼ା ପ୍ରକଳ୍ପ ମାଧ୍ୟମରେ ୪୩୫ଟି ନଳକୂପ ପାନୀୟ ଜଳ ଯୋଗାଣ ପାଇଁ ବସାଯାଇ ପାରିଛି।

ଏ ସମସ୍ତ ବ୍ୟବସ୍ଥାରୁ ଜଣାଯାଏ ଯେ, ଜଳସେଚନର ସୁବ୍ୟବସ୍ଥା ଯୋଗୁଁ ପିପିଲି କୃଷି କ୍ଷେତ୍ରରେ ଅଗ୍ରଗତି କରିପାରିଛି ଏବଂ ଏଠାକାର ଲୋକମାନଙ୍କର ଅର୍ଥନୈତିକ ମାନଦଣ୍ଡରେ ଉନ୍ନତି ପରିଲକ୍ଷିତ ହୋଇଛି।

## ସମବାୟ ସମିତି ଓ ବ୍ୟାଙ୍କ

ପିପିଲି ଅଞ୍ଚଳରେ କୃଷିର ବିକାଶ ପାଇଁ ସମବାୟ ସମିତି ଓ ବ୍ୟାଙ୍କଗୁଡ଼ିକ ଯେ ବହୁ ପରିମାଣରେ ସହାୟକ ହୋଇଛି, ଏଥିରେ ସନ୍ଦେହ ନାହିଁ। ବିଭିନ୍ନ ସମୟରେ ସ୍ଥାନୀୟ ବିଧାୟକ, ଜନମଙ୍ଗଳକାରୀ ବ୍ୟକ୍ତି ଓ ସରକାରୀ କର୍ମଚାରୀଙ୍କ ଉଦ୍ୟମରେ ଏ ଅଞ୍ଚଳରେ ବହୁ ସମବାୟ ସମିତି ଗଢ଼ି ଉଠିଛି। ତନ୍ମଧ୍ୟରୁ କୃଷି ସେବା ସମବାୟ ସମିତି, ଚିନାବାଦାମ ସମବାୟ ସମିତି, ବୁଣାକାର ସମବାୟ ସମିତି ଓ ଧୀବର ସମବାୟ ସମିତିର ନାମ ଉଲ୍ଲେଖ ଯୋଗ୍ୟ। ବାଲିଅନ୍ତା ସମବାୟ ସମିତିର ବ୍ରାଞ୍ଚ ମ୍ୟାନେଜର ତଥା ମଠସାହି ନିବାସୀ ବେଣୁଧର ମହାନ୍ତି ଏକ ସାକ୍ଷାତକାରରେ ପିପିଲି ଅଞ୍ଚଳରେ ଥିବା ସେବା ସମବାୟ ସମିତିର ନାମ ଓ କାର୍ଯ୍ୟକାରିତା ଉପରେ ଏକ ବିବରଣୀ ଉପସ୍ଥାପନ କରିଥିଲେ। ସେଥିରୁ ଜଣାଯାଏ ଯେ ପିପିଲି ବ୍ଲକରେ ଶୁଆବରେଇ, ପାଣିଦୋଳ, କଣ୍ଟି, ମଙ୍ଗଳପୁର,

Digitized by srujanika@gmail.com

ଦାଣ୍ଡମୁକୁନ୍ଦପୁର, ନୂଆ ଶାସନ, ପୁବାଶାସନ, ରୂପଦେଈପୁର, ସରସ୍ୱତୀପୁର ଓ ଆରୁହା ଗ୍ରାମରେ କୃଷି ସେବା ସମବାୟ ସମିତିମାନ ପ୍ରତିଷ୍ଠା କରାଯାଇଛି। ତାହାରି ମାଧ୍ୟମରେ ଚାଷୀମାନଙ୍କୁ କୃଷି, ଋଣ, ସାର, କୀଟ ନାଶକ ଔଷଧ ପ୍ରଭୃତି ବଣ୍ଟନ କରା ଯାଉଥିଛି। ସେହିପରି ଅଏଲ୍ ଓଡ଼ିଶାର ପ୍ରତ୍ୟକ୍ଷ ସହାୟତାରେ ଚିନାବାଦାମ ଚାଷର ଉନ୍ନତି କଳ୍ପେ କେତେକ ସ୍ଥାନରେ ଚିନାବାଦାମ ସେବା ସମବାୟ ସମିତି ଗଠନ କରାଯାଇଛି। ତନ୍ମଧ୍ୟରୁ ପୋପରଙ୍ଗା, ଆରୁହା, ବିଲିପଡ଼ା, ନାଖୁରପାଟଣା, ହସନପୁର, କଣ୍ଟି ଓ ଷଷ୍ଠଶ ସେବା ସମବାୟ ସମିତିର ନାମ ଉଲ୍ଲେଖ ଯୋଗ୍ୟ। ଉପରୋକ୍ତ ଚିନାବାଦାମ ସେବା ସମବାୟ ସମିତି ମଧ୍ୟରୁ ତଥ୍ୟ ସଂଗ୍ରହ ଅବକାଶରେ ଦଇଶପାଟଣାଠାରେ ଥିବା ଆରୁହା ସମବାୟ ସମିତିକୁ ଦେଖିବାର ସୁଯୋଗ ମିଳିଥିଲା। ମୋ ସହିତ ଥିଲେ ରମେଶ ମହାପାତ୍ର ସେଠାକାର ଦାୟିତ୍ୱରେ ଥିବା ସମିତିର ସଂପାଦକ ଦୁଃଶାସନ ଦଳେଇ ଓ ସଭ୍ୟ ଅନାଥ ପତିଙ୍କ ସହ ଏକ ସାକ୍ଷାତକାରରୁ ଜାଣିଲୁ ଯେ, ସେହି ସମିତି ବର୍ଷକୁ ହାରାହାରି ୧୯ ଲକ୍ଷ ଟଙ୍କାର ଚିନାବାଦାମ କାରବାର କରିଥାଏ। ସେଠାରୁ ଟ୍ରକ ବୋଝେଇ ହୋଇ ଚାଷୀ ବିକ୍ରୟ କରିଥିବା ଶହଶହ ବସ୍ତା ଚିନାବାଦାମ ବିଭିନ୍ନ ସ୍ଥାନକୁ ପ୍ରେରିତ ହେଉଥିବାର ଦେଖିଲୁ।

ସେହିପରି ବଙ୍କାଥାନା ଅନ୍ତର୍ଗତ ରୂପଦେଈପୁର ପଞ୍ଚାୟତର ମଉଳୀବେଗ ଗ୍ରାମରେ ତନ୍ତୁବାୟ ସମବାୟ ସମିତି ଗଠିତ ହୋଇଛି। ଏଥିରେ ମୁଖ୍ୟତଃ ରଙ୍ଗଣୀ ପରିବାରର ତନ୍ତୁବାୟମାନେ ସଭ୍ୟ ରହିଛନ୍ତି ଓ ସେମାନଙ୍କର ସଂଖ୍ୟା ୩୦୦ରୁ ଊର୍ଦ୍ଧ୍ୱ। ଏହା ପିପିଲି ବ୍ଲକର ଏକମାତ୍ର ସମବାୟ ସମିତି। ଅବଶ୍ୟ ଏପରି ଏକ ସମିତି ସ୍ଥାପନ ପୂର୍ବରୁ ସେଠାରେ ଅନ୍ୟ ଏକ ସୂତା ସହଯୋଗ ସମିତି ଥିଲା। ପିପିଲି ଅଞ୍ଚଳରେ ଅନ୍ୟ ଏକ ସେବା ସମବାୟ ସମିତି ଗଢ଼ି ଉଠିଛି କଣ୍ଟି ଗ୍ରାମରେ। ଏହା କଣ୍ଟି ଧୀବର ସମବାୟ ସମିତି ନାମରେ କଥିତ। ଏଥିରେ ଧୀବରମାନେ ସଦସ୍ୟ ରହିଛନ୍ତି।

ସମବାୟ ସେବା ସମିତି ବ୍ୟତୀତ କୃଷିର ଉନ୍ନତି ପାଇଁ ବିଭିନ୍ନ ସ୍ଥାନରେ ସରକାରୀ ସାର ବିକ୍ରୟ କେନ୍ଦ୍ର ଖୋଲା ଯାଇଛି। ବର୍ତ୍ତମାନ ସେଗୁଡ଼ିକର ସଂଖ୍ୟା ୮। ଏ ଦିଗରେ ବିଧାୟକ ପ୍ରଦୀପ ମହାରଥିଙ୍କ ଅବଦାନ ଉଲ୍ଲେଖନୀୟ।

କୃଷିର ଅଭୂତପୂର୍ବ ବିକାଶ ଦିଗରେ ପିପିଲି ଅଞ୍ଚଳରେ ପ୍ରତିଷ୍ଠିତ କେତୋଟି ବ୍ୟାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ। ତନ୍ମଧ୍ୟରୁ ଭାରତୀୟ ଷ୍ଟେଟ୍‌ବ୍ୟାଙ୍କ, ସମ୍ମିଳିତ ପୁରୀ

Digitized by srujanika@gmail.com

ନିମାପଡ଼ା କେନ୍ଦ୍ର ସମବାୟ ବ୍ୟାଙ୍କ, ପୁରୀ ଗ୍ରାମ୍ୟ ବ୍ୟାଙ୍କ ଓ ଆନ୍ଧ୍ର ବ୍ୟାଙ୍କର ନାମ ଉଲ୍ଲେଖ ଯୋଗ୍ୟ। ବର୍ତ୍ତମାନ କେବଳ ପିପିଲି ବ୍ଲକରେ ଭାରତୀୟ ଷ୍ଟେଟ୍ ବ୍ୟାଙ୍କର ୪ଟି ଶାଖା ଓ ଆନ୍ଧ୍ର ବ୍ୟାଙ୍କର ଗୋଟିଏ ଶାଖା କାର୍ଯ୍ୟ କରୁଛି। ୧୯୭୬ ମସିହା ଫେବୃୟାରୀ ୨୫ ତାରିଖ ଦିନ ପୁରୀ ଗ୍ରାମ୍ୟ ବ୍ୟାଙ୍କର ମୁଖ୍ୟ କାର୍ଯ୍ୟାଳୟ ପିପିଲିଠାରେ ସ୍ଥାପିତ ହୋଇଛି। ଏହି ବ୍ୟାଙ୍କ ସ୍ଥାପନ ଦିଗରେ ବିଧାୟକ ବିପିନ୍ ଦାଶଙ୍କ ଭୂମିକା ଉଲ୍ଲେଖନୀୟ। ବର୍ତ୍ତମାନ ପିପିଲି ବ୍ଲକରେ ଗ୍ରାମ୍ୟ ବ୍ୟାଙ୍କର ୪ଟି ଶାଖା ଓ ଡେଲାଙ୍ଗ ବ୍ଲକରେ ୩ଟି ଶାଖା କାର୍ଯ୍ୟ କରୁଅଛି। ଏହି ବ୍ୟାଙ୍କ ପିପିଲିର ଅର୍ଥନୈତିକ ବିକାଶ ଦିଗରେ ବେଶ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି।

## ଜୀବିକା

ପୂର୍ବରୁ ସୂଚାଇ ଦିଆଯାଇଛି ଯେ, ପିପିଲି ଅଞ୍ଚଳରେ କୌଣସି ବୃହତ୍ ଶିଳ୍ପ ପ୍ରତିଷ୍ଠିତ ହୋଇ ନଥିବାରୁ ଲୋକମାନଙ୍କର କୃଷି, ଏକ ପ୍ରଧାନ ଜୀବିକାର ସ୍ଥାନ ଗ୍ରହଣ କରିଛି। ଏହା ଶତକଡ଼ା ୯୦ ଭାଗ ଲୋକଙ୍କର ମୁଖ୍ୟ ଜୀବିକା। ଜଳ ସେଚନର ସୁବିଧା, ଉର୍ବର ମୃତ୍ତିକା ଓ ଲୋକମାନଙ୍କର ଅଧ୍ୟବସାୟ ଯୋଗୁଁ ପିପିଲି ଅଂଚଳର ଅଧିବାସୀ ସହସ୍ରାଧିକ ହେକ୍ଟର ଜମିରେ ଧାନ, ଚିନାବାଦାମ, ପନିପରିବା ଓ ଅନ୍ୟାନ୍ୟ ଫସଲ ଉତ୍ପାଦନ କରି ନିଜର ଜୀବିକା ନିର୍ବାହ କରିଥାନ୍ତି। ପୂର୍ବେ ଚାଷ ଜମି ବ୍ୟତୀତ ପିପିଲିର ବିସ୍ତୃତ ଅଂଚଳ ପଡ଼ିଆ ଓ ଜଙ୍ଗଲ ଥିବାରୁ ଗୋପାଳନ ପ୍ରତ୍ୟେକ ପରିବାରର ଜୀବିକା ନିର୍ବାହର ଅନ୍ୟ ଏକ ପନ୍ଥା ହୋଇଥିଲା। ଅନେକ ଶତାୟୁ ବ୍ୟକ୍ତିଙ୍କଠାରୁ ଖବର ନେବାରେ ଜଣା ଯାଇଛି ଯେ, ତାଙ୍କ ପିଲା ବେଳେ ଅର୍ଥାତ୍ ପ୍ରାୟ ୧୦୦ ବର୍ଷ ତଳେ ଗାଈ କ୍ଷୀର ସେର ପ୍ରତି ବର୍ତ୍ତମାନ ହିସାବରେ ୨୦ ପଇସା ଓ ଘିଅ ସେର ପ୍ରତି ଟ୧.୨୫ ପଇସା ଦରରେ ବିକ୍ରୀ କରା ଯାଉଥିଲା। ଏବେ ଗୋପାଳନ କରି ଜୀବିକା ନିର୍ବାହ ଦିଗରେ ଲୋକମାନଙ୍କର ଆଗ୍ରହ ହ୍ରାସ ପାଇଛି। ତଥାପି ସରକାରଙ୍କର ପ୍ରୋତ୍ସାହନ, କମାକଟିଆ ଗ୍ରାମର ସ୍ୱର୍ଗତ ରାଜ କିଶୋର ପଟ୍ଟନାୟକଙ୍କ ଭଳି କେତେ ଜଣ ଜନହିତାକାଂକ୍ଷୀ ବ୍ୟକ୍ତିଙ୍କ ଉଦ୍ୟମ ଯୋଗୁଁ ଗୋପାଳନ ପ୍ରତି କ୍ରମେ କ୍ରମେ ଆଗ୍ରହ ସୃଷ୍ଟି ହେଉଛି। ସେଥିପାଇଁ ଏଠାରେ ଏକ ପଶୁ ଡ଼ାକ୍ତରଖାନା ସ୍ଥାପିତ ହୋଇଛି। ବହୁ ସମୟରେ ମଧ୍ୟ ଗୋପ୍ରଦର୍ଶନୀ ଆୟୋଜନ କରାଯାଉଛି।

କୁଟୀର ଶିଳ୍ପ ହେଉଛି ପିପିଲି ଅଞ୍ଚଳର ଲୋକମାନଙ୍କର ଅନ୍ୟ ଏକ

Digitized by srujanika@gmail.com

ଜୀବିକା । ବିଶେଷତଃ ଚାନ୍ଦୁଆ, ଛତି ଓ ସୂତାରେ ବିଭିନ୍ନ ଜିନିଷ ତିଆରି କରି ସେମାନେ ଜୀବିକା ନିର୍ବାହ କରୁଥିବାର ଦେଖାଯାଏ । ଏତଦ୍ ବ୍ୟତୀତ ମାଛ ମାରି ପେଟ ପୋଷିବା ଏ ଅଞ୍ଚଳର ଲୋକମାନଙ୍କର ଅନ୍ୟ ଏକ ଜୀବିକା ଥିଲା । କାରଣ ଏ ଅଞ୍ଚଳରେ ବହୁ ବୃହଦାକାର ପୁଷ୍କରିଣୀମାନ ରହିଥିବାର ଦେଖାଯାଏ । ସେ ବିଷୟରେ ପୂର୍ବରୁ ଆଲୋଚନା କରାଯାଇଛି । ନଦୀ ଜଳରେ ବିଭିନ୍ନ ପ୍ରକାରର ମାଛ ଅନାୟାସରେ ଆପେ ଆପେ ସେହି ପୁଷ୍କରିଣୀ ମଧ୍ୟକୁ ପ୍ରବେଶ କରି କାଳକ୍ରମେ ବଡ଼ ହୋଇ ଯାଉଥିଲେ । ସେହି ପୁଷ୍କରିଣୀଗୁଡ଼ିକ କାହାର ବ୍ୟକ୍ତିଗତ ସଂପତ୍ତି ହୋଇ ନଥିବାରୁ ବହୁ ସମୟରେ ସମୀପବର୍ତ୍ତୀ ଗାଁଗୁଡ଼ିକର ଲୋକେ ସେଥିରୁ ମାଛ ମାରି ତାହା ବିକ୍ରୟ କରୁଥିଲେ । ଏବେ କିନ୍ତୁ ସେଗୁଡ଼ିକ ବିଜ୍ଞାପିତ ଅଞ୍ଚଳ ବା ପଞ୍ଚାୟତ ଦ୍ୱାରା ନିୟନ୍ତ୍ରିତ । ସେମାନେ ପ୍ରତିବର୍ଷ ଏହି ପୁଷ୍କରିଣୀଗୁଡ଼ିକ ନିଲାମ କରୁଛନ୍ତି । ପୁଷ୍କରିଣୀ ବ୍ୟତୀତ ଏ ଅଞ୍ଚଳରେ ଦୟା ଓ ଭାର୍ଗବୀ ପରି ନଦୀଗୁଡ଼ିକ ବହୁ ପରିମାଣରେ ମାଛ ଯୋଗାଇ ଥାଏ । ପ୍ରତ୍ୟହ ଏହି ନଦୀଗୁଡ଼ିକରୁ ଲୋକମାନେ ମାଛଧରି ତାହା ଭୁବନେଶ୍ୱର ବଜାରରେ ବିକ୍ରୟ କରିଥା'ନ୍ତି । ଏଗୁଡ଼ିକ ମଧୁର ମାଛ ହୋଇଥିବାରୁ ବଜାରରେ ଏହାର ଚାହିଦା ଖୁବ୍ ବେଶୀ । ମାଛ ବିକ୍ରୟ କରୁଥିବା ଦୋକାନୀମାନଙ୍କୁ ପଚାରିଲେ ସେମାନେ ଯେ କୌଣସି ମାଛକୁ ଦୟା ଓ ଭାର୍ଗବୀ ନଦୀର ମାଛ ବୋଲି କହି ତାହା ବେଶ୍ ମଧୁର ଓ ସୁସ୍ୱାଦୁ ବୋଲି ଗ୍ରାହକମାନଙ୍କୁ ବିକ୍ରୟ କରୁଥିବାର ଦେଖାଯାଏ ।

ଏତଦ୍ ବ୍ୟତୀତ କୌଶଲ୍ୟାଗଙ୍ଗ ମାଛ ଉତ୍ପାଦନର ଅନ୍ୟ ଏକ ପ୍ରଧାନ କେନ୍ଦ୍ର ହୋଇଛି । ଏହା ଏକ ବହୁ ପୁରାତନ ପୁଷ୍କରିଣୀ : ଦ୍ୱାଦଶ ଶତାବ୍ଦୀର ଗଙ୍ଗ ବଂଶର କୀର୍ତ୍ତି । ଏହା ଏକ ଆୟତାକାର ପୁଷ୍କରିଣୀ ଥିଲା । ଦୈର୍ଘ୍ୟରେ ୨ ମାଇଲ ଓ ପ୍ରସ୍ଥରେ ୨ ମାଇଲ । ମାଛ ଚାଷ ନିମନ୍ତେ ଏହାକୁ ଭାଗ ଭାଗ କରି ଦିଆଯାଇଛି । ଭୁବନେଶ୍ୱରରୁ ପୁରୀ ଆଡ଼କୁ ଗଲେ ୮ ନମ୍ବର ରାଜପଥର ଡାହାଣ ପଟରେ ଏହାର ଅବସ୍ଥିତି । ଏଠାରେ ଗଢ଼ି ଉଠିଥିବା ମତ୍ସ୍ୟ ଗବେଷଣା ପ୍ରତିଷ୍ଠାନଟି ୧୯୭୭ ମସିହା ଫେବୃୟାରୀ ୩ ତାରିଖ ଦିନ ସ୍ୱର୍ଗୀୟା ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ଏହା ଏସିଆ ମହାଦେଶର ସର୍ବ ବୃହତ୍ତମ ମତ୍ସ୍ୟ ଗବେଷଣା ଅନୁଷ୍ଠାନ ଭାବେ ସୁବିଦିତ । ଏଥିର ଉତ୍ପାଦିତ ମତ୍ସ୍ୟ ଅନୁଷ୍ଠାନର କର୍ମଚାରୀମାନଙ୍କୁ ବିକ୍ରୀ ହୋଇଥିଲେ ମଧ୍ୟ ସ୍ଥାନୀୟ ବ୍ୟବସାୟୀମାନେ ତାହା କେବେ କେବେ କିଣି ଭୁବନେଶ୍ୱର ବଜାରରେ ବିକ୍ରୀ କରିଥାଆନ୍ତି । ଆନ୍ଧ୍ରରୁ

Digitized by srujanika@gmail.com

ଆସୁଥିବା ମତ୍ସ୍ୟ ତୁଳନାରେ ଏଠାରୁ ଉତ୍ପାଦିତ ମତ୍ସ୍ୟ ଅଧିକ ସୁସ୍ୱାଦୁ ହୋଇଥିବାରୁ ଏହାର ଆଦର ଓ ଚାହିଦା ଖୁବ୍ ବେଶୀ ।

ଏହା ହେଉଛି ପିପିଲି ଅଞ୍ଚଳର ଅଧିବାସୀଙ୍କ ଜୀବିକା ଉପରେ ଏକ ସଂକ୍ଷିପ୍ତ ସୂଚନା ।

## ବ୍ୟବସାୟ ଓ ବାଣିଜ୍ୟ

ପିପିଲି ପୁରୀ ଜିଲ୍ଲାର ଏକ ପ୍ରଧାନ ବ୍ୟବସାୟ କେନ୍ଦ୍ର । ସେ ସମ୍ବନ୍ଧରେ ଏଲ୍.ଏସ୍.ଏସ୍. ଓ ମାଲେଙ୍କ ଦ୍ୱାରା ସଂକଳିତ ବେଙ୍ଗଲ ଡିଷ୍ଟ୍ରିକ୍ଟ ଗେଜେଟିଅରେ ଏକ ବର୍ଣ୍ଣନା ଦିଆ ଯାଇଛି । ଊନବିଂଶ ଶତାବ୍ଦୀରେ ପୁରୀ ଜିଲ୍ଲାର ଏହା ସର୍ବ ପ୍ରଧାନ ବ୍ୟବସାୟ କେନ୍ଦ୍ର ଥିବାର ସେ ଉଲ୍ଲେଖ କରିଛନ୍ତି । ସେହି ସମୟରେ ଏଠାରେ ଏକ ବିରାଟ ହାଟ ବସୁଥିଲା । ଏହା ସପ୍ତାହରେ ଦୁଇଥର ବସୁଥିଲା । ହାଟରେ ପ୍ରଚୁର ପରିମାଣରେ ଚାଉଳ, ଗହଣା, ପନିପରିବା, କଂସା ଓ ପିତଳ ବାସନ, ମସଲା, ମିଠାଇ, ଦୁଗ୍ଧ ଓ କିରୋସିନୀ ତେଲ ବିକ୍ରୟ ହେଉଥିବାର ସେ ନିଜେ ଦେଖିଛନ୍ତି ।(୩)। କଂସା ଓ ପିତଳ ବାସନ ପାଇଁ ପ୍ରସିଦ୍ଧି ଲାଭ କରିଥିବା ବାଳକାଟିରୁ ସେଗୁଡ଼ିକ ବିକ୍ରୟ ପାଇଁ ହାଟକୁ ଅଣାଯାଉଥିଲା । ପିପିଲି ଏକ ବ୍ୟବସାୟର କେନ୍ଦ୍ର ହୋଇଥିବାରୁ ବାହାରୁ ବହୁଲୋକ ଆକର୍ଷିତ ହୋଇ ଏଠାରେ ବସବାସ କରିବାକୁ ଆସିଛନ୍ତି । ସ୍ୱାଧୀନତା ପ୍ରାପ୍ତି ପରେ ମଧ ପିପିଲି ତା'ର ଖ୍ୟାତି ଅକ୍ଷୁଣ୍ଣ ରଖିଛି । ସେଥିପାଇଁ ନରସିଂହ ଦାସ ଅଗ୍ରଓ୍ୱାଲା କିଛି ପରିମାଣରେ ଦାୟୀ । ସେ ୧୯୫୨ ମସିହାରେ ଏଠାରେ ବ୍ୟବସାୟ ଆରମ୍ଭ କରି କାଳକ୍ରମେ ତାର ବହୁଳ ପ୍ରସାର କରିଥିଲେ । ଏବେ ତେଜରାତି ସଉଦାର ତାଙ୍କ ଦୋକାନ ଏକ ପ୍ରଧାନ ପେଣ୍ଠ ହୋଇଛି । ଏଠାରୁ ଖୁଚୁରା ବ୍ୟବସାୟୀ ସଉଦା କ୍ରୟ କରି ଗାଁ ଗହଳିର ଦୋକାନରେ ତାହା ବିକ୍ରୟ କରିଥା'ନ୍ତି । ପିପିଲି ଅଞ୍ଚଳର ଅନ୍ୟତମ ପ୍ରସିଦ୍ଧ ହାଟ ଓ ବ୍ୟବସାୟର କେନ୍ଦ୍ର ହେଉଛି ସାତଶଙ୍ଖ । ୧୯୫୦ ମସିହାରେ ଯଶୁଆପୁର ଅନ୍ତର୍ଗତ ଶୁବଳପୁରର ପ୍ରଖ୍ୟାତ ଜମିଦାର ମୋତିଲାଲ ପଣ୍ଡିତ ଓ ସେହି ଗ୍ରାମର ଅନ୍ୟତମ ସମାଜସେବୀ ଜଗନ୍ନାଥ ମହାନ୍ତି ଏହି ହାଟକୁ ସ୍ଥାପନ କରିଥିଲେ । କାଳକ୍ରମେ ତାହା ବୃଦ୍ଧି ପ୍ରାପ୍ତ ହୋଇ ଏବେ ଏକ ବିରାଟ ବ୍ୟବସାୟ କେନ୍ଦ୍ରର ରୂପ ନେଇଛି । ପୂର୍ବରୁ ସାତଶଙ୍ଖ ନିକଟସ୍ଥ ତେଇଶପୁରଠାରେ ମଧ୍ୟ ଏକ ହାଟ ବସୁଥିଲା । ମାତ୍ର ସାତଶଙ୍ଖ ହାଟର ବୃଦ୍ଧି ଯୋଗୁଁ ବର୍ତ୍ତମାନ

Digitized by srujanika@gmail.com

ତେଲଙ୍ଗପୁର ହାଟ ହେଉ ନାହିଁ।

ଏତଦ୍ ବ୍ୟତୀତ ବିଭିନ୍ନ ଯାତ୍ରା ଓ ମେଳଣ ଅସ୍ଥାୟୀ ବ୍ୟବସାୟ ରୂପେ ମୁଣ୍ଡ ଟେକି ଉଠିଛି। ସେଗୁଡ଼ିକ ବିଶେଷତଃ କାଠ, ବାଉଁଶ, କୃଷି ଉପକରଣ ଗୃହୋପକରଣ ଓ ବଳଦ ବ୍ୟବସାୟର ମୁଖ୍ୟ କେନ୍ଦ୍ର ହୋଇ ପଡ଼ିଛି। ତନ୍ମଧ୍ୟରୁ ଘୋରଡ଼ିହାର ଦୟଣା ଚୋରି ଯାତ୍ରା, ହରିରାଜପୁର ମେଳଣ ଓ କୁଞ୍ଜର ମେଳଣର ନାମ ଉଲ୍ଲେଖ ଯୋଗ୍ୟ। କେତୋଟି ଯାତ୍ରା ମାସ ମାସ ଧରି ପାଳିତ ହେଉଥିବାରୁ ସେଠାରେ ଲକ୍ଷ ଲକ୍ଷ ଟଙ୍କାର ବ୍ୟବସାୟ ହେଉଥିବା ବିଷୟ କେତେକ ପ୍ରତ୍ୟକ୍ଷଦର୍ଶୀଙ୍କ ମୁଖରୁ ଶୁଣିବାକୁ ମିଳେ।

ଅତୀତରେ ପିପିଲି ଅଞ୍ଚଳରେ ନୌବାଣିଜ୍ୟ ଚାଲିଥିବାର ଜଣାଯାଏ। ରତ୍ନଚିରା ନଦୀ ଚିଲିକାରେ ପଡ଼ିଥିବାରୁ ଉକ୍ତ ନଦୀ ଦେଇ ନୌକାରେ ଜିନିଷ ପତ୍ରଗୁଡ଼ିକ ଦୂର ଦୂରାନ୍ତକୁ ପ୍ରେରଣ କରା ଯାଉଥିଲା। ତା'ର ଏକ ସନ୍ତକ ଏବେ ମଧ୍ୟ ବାଲିଗାଁର ଦାସିଆ ବାଉରିଙ୍କ ସମାଧି ପୀଠର ଅନତିଦୂରରେ ଦେଖାଯାଏ। ସେଠାରେ ରତ୍ନଚିରା ନଦୀଟି ପୋତି ହୋଇ ପଡ଼ିଛି। ସେହିଠାରେ ଏକ ବହୁ ପୁରାତନ ପଥରଖୁଣ୍ଟ ପୋତା ହୋଇଥିବାର ଦେଖାଯାଏ। ସେହି ଖୁଣ୍ଟରେ ନୌକାଗୁଡ଼ିକ ବନ୍ଧା ହେଉଥିବା ବିଷୟ କେତେକ ବର୍ଷିୟାନ ବ୍ୟକ୍ତି ସେମାନଙ୍କର ପୂର୍ବ ପୁରୁଷଙ୍କଠାରୁ ଶୁଣିଥିବା ବିଷୟ ତଥ୍ୟ ସଂଗ୍ରହ ଅବକାଶରେ ପ୍ରକାଶ କରିଥିଲେ।

ପରିଶେଷରେ ପିପିଲି ଅଞ୍ଚଳର କେତେକ ପ୍ରମୁଖ ରାସ୍ତା ଉପରେ କିଞ୍ଚିତ୍ ଆଲୋକପାତ କରିବା ଆବଶ୍ୟକ, କାରଣ ଏହା ଉକ୍ତ ଅଞ୍ଚଳର ଅର୍ଥନୀତି ସହ ସଂପୃକ୍ତ।

## ପ୍ରଧାନ ରାସ୍ତା

ପିପିଲି ଅଞ୍ଚଳର ପ୍ରଧାନ ରାସ୍ତାଗୁଡ଼ିକ ହେଲା ୪୨ କିଲୋମିଟର ଦୈର୍ଘ୍ୟ ପିପିଲି-ପୁରୀ ରାସ୍ତା, ୯ କିଲୋମିଟର ଦୈର୍ଘ୍ୟ ପିପିଲି-ତେଲାଙ୍ଗ ରାସ୍ତା, ମଠସାହି ଜଗଦଳପୁର ରାସ୍ତା ଓ ସାତଶଙ୍ଖ ବଙ୍ଗା ରାସ୍ତା। ଏ ସମସ୍ତ ପକ୍କା ରାସ୍ତା। ଏତଦ୍ ବ୍ୟତୀତ ବଡ଼ ବଡ଼ ଗାଁକୁ ସଂଯୋଗ କରି ବହୁ ନାଳି ଗୋଡ଼ି ରାସ୍ତା ନିର୍ମିତ ହୋଇଥିବାର ଦେଖାଯାଏ। ୬୨ବର୍ଷ ବୟସ୍କ ମଠସାହି ଗ୍ରାମର ଅର୍ଜୁନ ମହାନ୍ତି ତଥ୍ୟ ସଂଗ୍ରହ ଅବକାଶରେ ଏକ ସାକ୍ଷାତକାରରେ ପ୍ରକାଶ କରିଛନ୍ତି ଯେ, ଉପରୋକ୍ତ ରାସ୍ତାଗୁଡ଼ିକ ବିଧାୟକ ଜୟକୃଷ୍ଣ ମହାନ୍ତିଙ୍କ ସମୟରେ ନିର୍ମିତ

Digitized by srujanika@gmail.com

ହୋଇଥିଲେ ସୁଦ୍ଧା ସେଗୁଡ଼ିକ ପକ୍କା ହୋଇ ନଥିଲା। ବର୍ତ୍ତମାନର ବିଧାୟକ ପ୍ରଦୀପ ମହାରଥୀଙ୍କ ତତ୍ପରତା ଯୋଗୁଁ ସେଗୁଡ଼ିକ ପକ୍କା ଓ ପିଚୁ ହୋଇଛି। ତାଙ୍କର ଉଦ୍ୟମ କ୍ରମେ ଅନ୍ୟ କେତେକ ନୂତନ ରାସ୍ତା ଓ ପୋଲ ନିର୍ମାଣ କରାଯାଉଛି।

ଏହା ହେଉଛି ପିପିଲି ଅଞ୍ଚଳର ଅର୍ଥନୈତିକ ଐତିହ୍ୟର ଏକ ସଂକ୍ଷିପ୍ତ ବିବରଣୀ।

□ □ □

Digitized by srujanika@gmail.com

# ସପ୍ତମ ଅଧ୍ୟାୟ

## ପିପିଲିର ସାଂସ୍କୃତିକ ବିଭବ

ସାଂସ୍କୃତିକ ବିଭବରେ ବିମଣ୍ଡିତ ପିପିଲି ଅଞ୍ଚଳ ଓଡ଼ିଶାର ସାଂସ୍କୃତିକ ଦିଗ୍‌ବଳୟକୁ ବର୍ଣ୍ଣାଢ୍ୟକରି ଇତିହାସ ପୃଷ୍ଠାରେ ଏକ ଗୌରବମୟ ସ୍ଥାନ ଅଧିକାର କରିଛି। ଅବଶ୍ୟ ଏହି ମହିମାମଣ୍ଡିତ ସାଂସ୍କୃତିକ ପରଂପରା ପାଇଁ ଏହାର ଭୌଗୋଳିକ ଅବସ୍ଥିତି ଯେ ବହୁ ପରିମାଣରେ ସହାୟକ ହୋଇଛି, ଏଥିରେ ସନ୍ଦେହ ନାହିଁ। ମନ୍ଦିରମାଳିନୀ ପ୍ରସିଦ୍ଧ ଶୈବପୀଠ ଭୁବନେଶ୍ୱର, ଭାରତ ପ୍ରସିଦ୍ଧ ତୀର୍ଥକ୍ଷେତ୍ର ପୁରୀ ଏବଂ ବିଶ୍ୱ-ବିଶ୍ରୁତ ଅର୍କକ୍ଷେତ୍ର କୋଣାର୍କ ଦ୍ୱାରା ଗଠିତ ସୁବର୍ଣ୍ଣ ତ୍ରିଭୁଜର ମଧ୍ୟ ଭାଗରେ ପିପିଲି ଅବସ୍ଥିତ ହୋଇଥିବାରୁ ସେ ସବୁ ସ୍ଥାନ ଦ୍ୱାରା ଏହା ବିଶେଷ ଭାବରେ ପ୍ରଭାବିତ ହୋଇଛି। ଏହି ପ୍ରଭାବ ପଡ଼ିଛି ପିପିଲି ଅଞ୍ଚଳର ବିଶେଷତଃ ଧର୍ମ-ଧାରା ଓ ପ୍ରତ୍ନତାତ୍ତ୍ୱିକ କ୍ଷେତ୍ରରେ। ପୁନଶ୍ଚ ପୁରୀକୁ ପଡ଼ିଥିବା ଜଗନ୍ନାଥ ସଡ଼କ କଡ଼ରେ ଏହାର ଅବସ୍ଥିତି ପାଇଁ ଅତୀତରେ ଭାରତରେ ବିଭିନ୍ନ ପ୍ରାନ୍ତରୁ ଆସୁଥିବା ସହସ୍ରାଧିକ ତୀର୍ଥଯାତ୍ରୀଙ୍କର ଏହା ଏକ ଆଶ୍ରୟସ୍ଥଳୀ ହୋଇଥିଲା। ସେତେବେଳେ ଯାନବାହାନର ସୁବିଧା ନଥିବାରୁ ଅଧିକାଂଶ ତୀର୍ଥଯାତ୍ରୀ ପାଦରେ ଓ ଅପେକ୍ଷାକୃତ ବିଭବଶାଳୀ ଲୋକ ପାଲିଙ୍କିରେ ପୁରୀକୁ ଆସିବା ବାଟରେ ଏଠାରେ କେହି କେହି ବିଶ୍ରାମ ଓ କେହି କେହି ରାତ୍ରି ଯାପନ କରୁଥିଲେ। ସେଥିପାଇଁ ଏଠାରେ ସୁବିଧା ମଧ୍ୟ ରହିଥିଲା। ଏ ଦିଗରେ ପିପିଲିରେ ପ୍ରତିଷ୍ଠିତ ସଦାବର୍ତ୍ତମଠ ମଙ୍ଗଳପୁର ଗ୍ରାମରେ ଅବସ୍ଥିତ ସଦାବର୍ତ୍ତ ମଠର ଭୂମିକା ଉଲ୍ଲେଖ ଯୋଗ୍ୟ। ରହିବା ଓ ଖାଇବା ପାଇଁ ସୁବିଧା ଥିବାରୁ ପ୍ରତ୍ୟହ ବହୁତୀର୍ଥ ଯାତ୍ରୀ



Digitized by srujanika@gmail.com

ଏଠାରେ ଆଶ୍ରୟ ନେଉଥିଲେ। ଗୁଡ଼ିଆ ପୋଖରୀଠାରେ ଅନ୍ୟ ଜଣେ ବ୍ୟକ୍ତି ତୀର୍ଥଯାତ୍ରୀମାନଙ୍କ ପାଇଁ ଘରଟିଏ ନିର୍ମାଣ କରିଥିବାରୁ ସେଠାରେ ମଧ୍ୟ କେତେକ ଯାତ୍ରୀ ବିଶ୍ରାମ ନେଉଥିଲେ। ଏହାଦ୍ୱାରା ପିପିଲିର ଅଧିବାସୀ ଓ ତୀର୍ଥ ଯାତ୍ରୀଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ ହୋଇଥିଲା। ଫଳରେ ସ୍ଥାନର ସାଂସ୍କୃତିକ ପରିବେଶ ପରିପୁଷ୍ଟ ହୋଇ ପାରିଥିଲା। ସେହିପରି ଯାତ୍ରା ଓ ପର୍ବ-ପର୍ବାଣୀ ପାଇଁ ପ୍ରସିଦ୍ଧି ଲାଭ କରିଥିବା ପୁରୀଠାରୁ ପିପିଲିର ଦୂରତା ସ୍ୱଳ୍ପ ହୋଇଥିବାରୁ ଏଥିରେ ପ୍ରଭାବିତ ହୋଇ ପିପିଲି ସେଗୁଡ଼ିକର ଏକ ପ୍ରଧାନ ପୀଠ-ସ୍ଥଳୀ ହୋଇଥିଲା। ଏଥି ସହିତ ଯାତ୍ରା ଓ ପର୍ବ ପର୍ବାଣୀ ଅନୁଷ୍ଠିତ ଦିବସଗୁଡ଼ିକୁ ଅଧିକ ଉତ୍ସବ-ମୁଖର କରିବା ପାଇଁ ନାଟ୍ୟକଳା ଓ ପାଲା ଆଦିର ଉନ୍ମେଷ ହୋଇଥିଲା। ପିପିଲିର ଅବସ୍ଥିତିର ଗୁରୁତ୍ୱ ଦୃଷ୍ଟିରୁ ମଧ୍ୟ ଖ୍ରୀଷ୍ଟିୟାନ, ମୁସଲମାନ ଓ ସନାତନ ଧର୍ମର ବିଭିନ୍ନ ସଂପ୍ରଦାୟ ଲୋକଙ୍କର ଏହା ଲୀଳାଭୂମି ହୋଇଥିଲା। ସେଥିଯୋଗୁ ଏଠାରେ ବହୁ ସଂଖ୍ୟକ ମଠ, ମନ୍ଦିର, କେତେକ ମସଜିଦ୍ ଓ ପୀରଙ୍କର ସମାଧି ଓ ଗୋଟିଏ ଗୀର୍ଜା ପ୍ରତିଷ୍ଠିତ ହୋଇଛି। ପୁନଶ୍ଚ ଏଠାରେ ସାଂସ୍କୃତିକ ବିକାଶ ସହିତ ଶିକ୍ଷା ମଧ୍ୟ ପ୍ରସାର ଲାଭ କରିଛି। ସେ ସବୁର ଏକ ବର୍ଣ୍ଣନା ଏହି ଅଧ୍ୟାୟରେ ପ୍ରଦତ୍ତ ହୋଇଛି। ପ୍ରଥମେ ଆଲୋଚନା କରାଯାଇଛି ପିପିଲି ଅଞ୍ଚଳର ଯାତ୍ରା ପର୍ବ ପର୍ବାଣୀ।

## ପିପିଲିର ଯାତ୍ରା ଓ ପର୍ବପର୍ବାଣୀ

ଯାତ୍ରା ଓ ପର୍ବପର୍ବାଣୀ ଭାରତୀୟ ସଂସ୍କୃତିର ଏକ ବୈଶିଷ୍ଟ୍ୟ। ଏହା ଊଣାଅଧିକେ ପୃଥିବୀର ବିଭିନ୍ନ ଦେଶରେ ପରିଲକ୍ଷିତ ହୋଇଥିଲେ ମଧ୍ୟ ଏ ଦିଗରେ ଭାରତ ଶୀର୍ଷସ୍ଥାନ ଅଧିକାର କରିଛି। କାରଣ ଭାରତ ହେଉଛି ଏକ ଗ୍ରାମ ବହୁଳ ଦେଶ। ଗ୍ରାମ ହେଉଛି ଭାରତୀୟଙ୍କ ସାମାଜିକ ଜୀବନର ମୂଳପିଣ୍ଡ। ଶତକଡ଼ା ୮୦ ଭାଗ ଲୋକେ ଗ୍ରାମାଞ୍ଚଳରେ ବାସ କରିଥାନ୍ତି। ତେଣୁ ଗ୍ରାମର ଜୀବନ ସୁନ୍ଦର, ସରସ ଓ ମଧୁମୟ କରିବା ପାଇଁ ଯାତ୍ରା ଓ ପର୍ବପର୍ବାଣୀ ଗୁଡ଼ିକ ଉଦ୍ଦିଷ୍ଟ। ଭାରତ ଇତିହାସର ପ୍ରାକ୍‌କାଳରୁ ଏହା ପାଳିତ ହୋଇଆସୁଛି। ସିନ୍ଧୁ ନଦୀ ଓ ତାର ଶାଖା ରାବି ନଦୀ ଉପତ୍ୟକାରେ ବିକଶିତ ଆଦିସଭ୍ୟତା ହରପ୍ପା ଓ ମହେଞ୍ଜୋଦାରୋର ଅଧିବାସୀମାନେ ସେମାନଙ୍କର ଅବସର ସମୟକୁ ପଶା, ଜୁଆଖେଳ, ସଂଗୀତ ଓ ନୃତ୍ୟ ମାଧ୍ୟମରେ ବିନିଯୋଗ କରିଥିବାର ଜଣାଯାଏ। ଏହା ଥିଲା ନଗର ସଭ୍ୟତା। ପ୍ରାଚୀନ ବୈଦିକ ଯୁଗର ଗ୍ରାମ୍ୟ ସଭ୍ୟତାରେ ଲୋକମାନେ ଏଥିପ୍ରତି ବିଶେଷ ଧ୍ୟାନ ଦେଉ ଥିଲେ। ଅବଶ୍ୟ

Digitized by srujanika@gmail.com

ସେମାନଙ୍କର ମନ୍ଦିର ନଥିଲା କି ସେମାନେ ପ୍ରତିମା ପୂଜାକରୁ ନଥିଲେ। ସେମାନେ ପ୍ରକୃତି କୋଳରେ ଦିନ ଅତିବାହିତ କରୁଥିଲେ, ମୁକ୍ତାକାଶ ତଳେ ମୁଖ୍ୟତଃ ପ୍ରକୃତିର ଉପାସନା କରୁଥିଲେ। ପ୍ରକୃତିର ବିଭିନ୍ନ ରୂପରେ ଈଶ୍ୱରଙ୍କର ସତ୍ତା ଅନୁଭବ କରି ସେମାନଙ୍କର ଉପାସନା କରାଯାଉଥିଲା। ତନ୍ମଧ୍ୟରୁ ପୃଥିବୀ, ଆକାଶ, ସୂର୍ଯ୍ୟ, ଚନ୍ଦ୍ର, ତାରା, ବର୍ଷା, ଝଡ଼, ମରୁଡ଼ି, ପ୍ରଭାତ, ନଦୀ, ପର୍ବତ ଓ ବୃକ୍ଷଲତା ପ୍ରଧାନ। ମାତ୍ର ଉପାସନା ପଦ୍ଧତି ଅତି ସରଳ ଥିଲା। ଏକ ଯଜ୍ଞ ଆୟୋଜନ କରି ସେମାନେ ଯଜ୍ଞକୁଣ୍ଡର ଅଗ୍ନିରେ ଘୃତ, ଦୁଗ୍ଧ, ଶସ୍ୟ, ମାଂସ, ସୋମରସ ଆଦି ଆହୁତି ଦେବା ଅବକାଶରେ ଦିନଟିକୁ ଆନନ୍ଦ ଉଲ୍ଲାସରେ ବିତାଉଥିଲେ। ଅନ୍ୟ ସମୟରେ ପୁରୁଷମାନେ, ସଂଗୀତ, ନୃତ୍ୟ ବୀଣା ଓ ବଂଶୀବାଦନ, ନୌବିହାର, ମଲ୍ଲଯୁଦ୍ଧ ଓ କ୍ରୀଡ଼ା ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ଜୀବନକୁ ସରସ ଓ ସୁନ୍ଦର କରୁଥିଲେ। ନାରୀମାନେ ମୁଖ୍ୟତଃ ସଂଗୀତ ଓ ନୃତ୍ୟ ଆସରରେ ଯୋଗଦେଇ ନିଜର ଚିତ୍ତବିନୋଦନ କରୁଥିଲେ। ପଶାଖେଳ, ମୃଗୟା ଓ ପଶୁ ଶିକାର ଥିଲା ସେମାନଙ୍କର ଅନ୍ୟ କେତୋଟି ଅବସର ବିନୋଦନ। ପରବର୍ତ୍ତୀ ବୈଦିକ ଯୁଗରେ ପ୍ରତିମା ପୂଜା ପ୍ରଚଳିତ ହେବାରୁ ଆବାସସ୍ଥଳୀଭାବେ ମନ୍ଦିରମାନ ନିର୍ମାଣ କରାଯାଇ ଥିଲା ଓ ଏଥିସହିତ ଯାଗଯଜ୍ଞର ପ୍ରାଧାନ୍ୟ ବୃଦ୍ଧିପାଇଥିଲା। ସେମାନେ ରାଜସୂୟ, ଅଶ୍ୱମେଧ, ବାଜପେୟ ଭଳି ବିଭିନ୍ନ ପ୍ରକାର ଯଜ୍ଞର ଆୟୋଜନ କରୁଥିଲେ। ଉପାସନା ପାଇଁ ବ୍ରାହ୍ମଣ ପୁରୋହିତଙ୍କର ଆବଶ୍ୟକତା ପଡ଼ିଥିଲା। ଫଳରେ ପୂଜାପଦ୍ଧତି ଜଟିଳ ହୋଇ ପଡ଼ିଲା। ଏଥି ସହିତ ପର୍ବପର୍ବାଣୀର ସଂଖ୍ୟା ବୃଦ୍ଧି ହେଲା। କାଳକ୍ରମେ ଏଚୁଡ଼ିକ ଭାରତର ବିଭିନ୍ନ ପ୍ରାନ୍ତକୁ ପ୍ରସାରଲାଭ କରିଥିଲା। ସେପରିସ୍ଥଳେ ଓଡ଼ିଶା ଏଥିରୁ ବହିର୍ଭୂତ ହେବ କିପରି? ବରଂ ଏ ସ୍ୱତନ୍ତ୍ରତା ଅନୁଭୂତ ହୁଏ। ଓଡ଼ିଶାରେ ଅଧିକ ପର୍ବପର୍ବାଣୀ ପାଳିତ ହେଉଥିବା ସ୍ଥାନ ମଧ୍ୟରୁ ପିପିଲି ଅନ୍ୟତମ। ତା' ମୂଳରେ କେତୋଟି କାରଣ ରହିଥିବାର ଅନୁମାନ କରାଯାଇପାରେ। ବର୍ଷର ବିଭିନ୍ନ ମାସ ବହୁ ପର୍ବପର୍ବାଣୀରେ ମୁଖରିତ। ପୁରୀଠାରୁ ପିପିଲିର ଦୂରତ୍ୱ କମ୍। ତେଣୁ ଏହା ଜଗନ୍ନାଥ ସଂସ୍କୃତି ଦ୍ୱାରା ପ୍ରଭାବିତ। ଅପର ପକ୍ଷରେ ମନ୍ଦିରମାଳିନୀ ଶୈବପୀଠ ଭୁବନେଶ୍ୱରଠାରୁ ଅନତି ଦୂରରେ ପିପିଲିର ଅବସ୍ଥିତି। ତେଣୁ ଏ ଦିଗରେ ଉକ୍ତ ଦୁଇଟି ସ୍ଥାନର ପ୍ରଭାବ ଯେ ପିପିଲି ଉପରେ ପଡ଼ିଛି, ଏଥିରେ ସନ୍ଦେହ ନାହିଁ। ପିପିଲିରେ ବୈଷ୍ଣବ ଓ ଶୈବ ଧର୍ମାବଲମ୍ବୀଙ୍କ ସଂଖ୍ୟା ବହୁତ ବେଶୀ। ବହୁ ଦେବାଦେବୀ ମନ୍ଦିରରେ ପିପିଲି ଅଞ୍ଚଳ ମଧ୍ୟ ମୁଖରିତ। ଏ ଅଞ୍ଚଳର ଅଧିବାସୀଙ୍କ ଆର୍ଥିକ ଅବସ୍ଥା ଅପେକ୍ଷାକୃତ ସ୍ୱଚ୍ଛଳ। ତେଣୁ ଏହି ପ୍ରକାର ଆଦର୍ଶ ପରିସ୍ଥିତି ଯୋଗୁଁ ବହୁ ଗ୍ରାମରେ ଜଗନ୍ନାଥ, ବିଷ୍ଣୁ, ଶିବ ଓ ଦେବୀଙ୍କର

Digitized by srujanika@gmail.com

ଯାତ୍ରା ଓ ପର୍ବପର୍ବାଣୀ ଆଡ଼ମ୍ବର ସହକାରେ ପାଳନ କରାଯାଇଥାଏ। ପିପିଲି ଅଞ୍ଚଳ ନାନାପ୍ରକାର ବାଣ ତିଆରି କରିବାରେ ପ୍ରସିଦ୍ଧି ଲାଭ କରିଥିବାରୁ ଯାତ୍ରା ଓ ପର୍ବପର୍ବାଣୀରେ ସେଗୁଡ଼ିକର ବହୁଳ ବ୍ୟବହାର ଘଟଣାକୁ ଅଧିକ ଆଡ଼ମ୍ବର ପୂର୍ଣ୍ଣ ଓ ଉତ୍ସବ ମୁଖର କରିଥାଏ। ଏଠାରେ ପିପିଲି ଅଞ୍ଚଳର କେବଳ ପ୍ରମୁଖ ଯାତ୍ରା ଓ ପର୍ବପର୍ବାଣୀ ସମ୍ବନ୍ଧରେ ସୂଚନା ଦିଆଯାଇଛି। ସେଗୁଡ଼ିକ ସବୁ ସାର୍ବଜନୀନ। ମାତ୍ର ବ୍ୟକ୍ତିଗତଭାବେ ପାଳନ କରୁଥିବା ପର୍ବପର୍ବାଣୀଗୁଡ଼ିକୁ ଆଲୋଚନା ପରିସରକୁ ଅଣାଯାଇ ନାହିଁ।

## ପିପିଲି ଦେବୀ ଯାତ୍ରା

ଦଶହରା ସମୟରେ ପିପିଲି ବଜାର ଦେବୀଯାତ୍ରା ପାଇଁ ମୁଖରିତ ହୋଇ ଉଠେ। ବଜାରର ନିମାପଡ଼ା ଛକଠାରୁ ଅଳ୍ପ ଦୂରରେ ବାମପଟରେ ଏକ ଗଳିରେ ଏହା ଅନୁଷ୍ଠିତ ହୋଇଥାଏ। ସେଥିପାଇଁ ଉକ୍ତ ସ୍ଥାନ ଦେବୀଗଳି ନାମରେ ଖ୍ୟାତ। ଏହା ଭବାନୀପୁର ମୌଜାର ଅନ୍ତର୍ଗତ। ଉକ୍ତ ଯାତ୍ରା ୧୦୦ ବର୍ଷର ପୁରାତନ। ଏହାର ଶୁଭ ଉଦ୍‌ଘାଟନ କରିଥିଲେ ଜଣେ ବଙ୍ଗୀୟ ବ୍ୟକ୍ତି।

ଆଜକୁ ୧୦୦ ବର୍ଷ ପୂର୍ବେ ବଙ୍ଗଳାରୁ ନାଥ ଭଟ୍ଟାଚାର୍ଯ୍ୟ ନାମଧେୟ ଜନୈକ ବ୍ରାହ୍ମଣ ସପରିବାରେ ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ଶ୍ରୀକ୍ଷେତ୍ରକୁ ଆସିଥିଲେ। ପ୍ରତ୍ୟାବର୍ତ୍ତନ ପଥରେ ସମ୍ଭବତଃ ପିପିଲିର ଅବସ୍ଥିତି ତାଙ୍କୁ ବିମୋହିତ କରିଥିଲା। ତେଣୁ ସେଠାରେ ସେ ବସବାସ କରି ରହିବାପାଇଁ ଆଗ୍ରହୀ ହୋଇଥିଲେ। ତାଙ୍କ ରହଣିର କିଛିଦିନ ପରେ ସେ ଦୁର୍ଗାପୂଜା ଆରମ୍ଭ କରିବାପାଇଁ ଚିନ୍ତାକରି ଭବାନୀପୁର ମୌଜାର କେତେକ ବ୍ୟକ୍ତିଙ୍କ ସହାୟତା ଲୋଡ଼ିଥିଲେ। ଏ ଦିଗରେ ସେମାନଙ୍କର ସକ୍ରିୟ ସହଯୋଗ ଫଳରେ ଆରମ୍ଭ ହୋଇଥିଲା ଦୁର୍ଗାପୂଜା। ଏହା ମଧ୍ୟ ବିଧିବଦ୍ଧଭାବେ ପ୍ରତିବର୍ଷ ପାଳିତ ହୋଇଥିଲା। ଇତିମଧ୍ୟରେ ନାଥ ଭଟ୍ଟାଚାର୍ଯ୍ୟଙ୍କର ମୃତ୍ୟୁ ହୁଏ। ତାଙ୍କ ଅନ୍ତେ ତାଙ୍କ ସ୍ତ୍ରୀ ଗୟାମଣୀ ଦାସୀ ଅନ୍ୟମାନଙ୍କ ସହଯୋଗରେ ଦେବୀପୂଜା ପାରମ୍ପରିକ ପଦ୍ଧତିରେ ଅନୁଷ୍ଠିତ କରାଇଥିଲେ। ଏହା ଥିଲା ୧୯୨୫ ମସିହାର କଥା। ସେହିବର୍ଷ ସେ ପିପିଲି ଛାଡ଼ି ବଙ୍ଗଳାକୁ ଫେରିଯିବାକୁ ମନସ୍ଥ କରନ୍ତି। ମାତ୍ର ସେ ଚାଲିଗଲେ ପୂଜା କିପରି ଅନୁଷ୍ଠିତ ହେବ ତାହା ତାଙ୍କୁ ଚିନ୍ତାଗ୍ରସ୍ତ କରାଇଥାଏ। ଶେଷରେ ନିଜ ଜମିରୁ ସେ ୩ ଏକର ୭୭ ଡିସିମିଲ୍ ଜମି ନିୟମିତ ଦେବୀ ପୂଜାପାଇଁ ଅର୍ପଣ କରିଥିଲେ। ସେ ମଧ୍ୟ ୧୯୨୫ ମସିହା ଅକ୍ଟୋବର ୨୭ ତାରିଖ ଦିନ ଭବାନୀପୁର ମୌଜାର ୧୦ ଜଣ ପ୍ରତିଷ୍ଠିତ ବ୍ୟକ୍ତିଙ୍କୁ ଡକାଇ ଏହି ଜମିର ଆୟରୁ ପୂଜାକାର୍ଯ୍ୟ ଚାଲିବ ବୋଲି ଅନୁରୋଧ

Digitized by srujanika@gmail.com

କରିଥିଲେ। ସେମାନେ ଆଗ୍ରହ ସହକାରେ ତାହା ଗ୍ରହଣକରି ଦେବୀପୂଜା ପାରମ୍ପରିକ ପଦ୍ଧତିରେ ଅନୁଷ୍ଠିତ କରାଇଥିଲେ। ସେହି ବ୍ୟକ୍ତିମାନେ ହେଲେ ନୀଳକଣ୍ଠ ଦୀକ୍ଷିତ, ଲୋକନାଥ ନନ୍ଦୀ, କାଶିନାଥ ସାହୁ, ରାମ ବୈଠାରୁ, ପୀତବାସ ନାୟକ ଓ ଆର୍ତ୍ତ ପାଳ। ଏବେ ମଧ୍ୟ ସେମାନଙ୍କ ଆନ୍ତରିକ ପ୍ରଚେଷ୍ଟାରେ ଉକ୍ତ ଯାତ୍ରା ସମ୍ପାଦିତ ହେଉଛି। ସତ୍ୟବାଦୀ ବୈଠାରୁ ପିପିଲି ଅଞ୍ଚଳର ଜଣେ ନିଖୁଣ ଶିଳ୍ପୀ ଓ ସେ ପ୍ରତିବର୍ଷ ଦେବୀ ପ୍ରତିମା ନିର୍ମାଣ କରନ୍ତି। ମୃତ୍ୟୁ ପର୍ଯ୍ୟନ୍ତ ସେ ଏହି କାର୍ଯ୍ୟ କରୁଥିଲେ। ୧୯୬୮ ମସିହାଠାରୁ ସେହି ସ୍ଥାନରେ ଦୁର୍ଗାପୂଜା ବ୍ୟତୀତ କାଳୀପୂଜା ମଧ୍ୟ ଅନୁଷ୍ଠିତ ହୋଇ ଆସୁଛି। ଏହାକୁ ଆରମ୍ଭ କରିଥିଲେ ଦାମୋଦର ମହାପାତ୍ର। ଉଭୟ ପୂଜା ପାଇଁ ଏବେ ହିନ୍ଦୁ ଓ ମୁସଲମାନମାନଙ୍କ ଠାରୁ ଚାନ୍ଦା ଆଦାୟ କରାଯାଉଛି। ପୂଜାଦିନମାନଙ୍କରେ ଦେବୀ ମଣ୍ଡପ ସମ୍ମୁଖରେ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ଯୁବକଙ୍କ ମଧ୍ୟରେ ଡୁ ଡୁ ଖେଳ ବେଶ୍ ଦର୍ଶନୀୟ ଓ ଚିତ୍ତାକର୍ଷକ ହୋଇଥାଏ। ପିପିଲିରେ ସାମ୍ପ୍ରଦାୟିକ ସଦ୍ଭାବର ଏହା ଏକ ନିଚ୍ଛକ ଚିତ୍ର। ସେହି ଦୃଷ୍ଟିରୁ ପିପିଲିର ଦେବୀଯାତ୍ରା ବେଶ୍ ଗୁରୁତ୍ୱପୂର୍ଣ୍ଣ।

## ବୀରପୁରୁଷୋତ୍ତମପୁର ଶୀତଳ ଷଷ୍ଠୀ ବାଣଯାତ୍ରା

ପିପିଲି ଅଞ୍ଚଳରେ ଅନୁଷ୍ଠିତ ଯାତ୍ରାଗୁଡ଼ିକ ମଧ୍ୟରୁ ବୀରପୁରୁଷୋତ୍ତମପୁର ଶୀତଳ ଷଷ୍ଠୀ ବାଣଯାତ୍ରା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥାଏ। ଏହା ଏକ ବହୁ ପୁରାତନ ଯାତ୍ରା। ଏହା ପିପିଲି ବ୍ଲକର ଯଶୁଆପୁର ପଞ୍ଚାୟତ ଅନ୍ତର୍ଗତ ବୀରପୁରୁଷୋତ୍ତମପୁର ଗ୍ରାମରେ ଅନୁଷ୍ଠିତ ହୋଇଥାଏ। ଗ୍ରାମଟି ପିପିଲି ଅଞ୍ଚଳରେ ଏକ ଶିକ୍ଷିତ ଓ ଆଦର୍ଶ ଗ୍ରାମରୂପେ ସୁବିଦିତ। ଏହା ଦୁଇଭାଗରେ ବିଭକ୍ତ- ପ୍ରଥମ ଖଣ୍ଡ ଓ ଦ୍ୱିତୀୟ ଖଣ୍ଡ। ପ୍ରଥମ ଖଣ୍ଡରେ ୬୦ଟି ଘର ରହିଥିବାସ୍ଥଳେ ଦ୍ୱିତୀୟ ଖଣ୍ଡରେ ୮୦ଟି ଘର ରହିଥିବାର ଦେଖାଯାଏ। ଗ୍ରାମର ପୂର୍ବଦିଗରେ ଗୋଟିଏ ମହାଦେବ ମନ୍ଦିର ଓ ହନୁମାନ ମନ୍ଦିର ଏବଂ ପଶ୍ଚିମ ଦିଗରେ ଗୋଟିଏ ବିଷ୍ଣୁ ମନ୍ଦିର ବିରାଜମାନ।

ଏହି ବୀରପୁରୁଷୋତ୍ତମ ଗ୍ରାମରେ ପ୍ରତିବର୍ଷ ଜ୍ୟେଷ୍ଠମାସ ଶୁକ୍ଳପକ୍ଷରେ ୩ ଦିନ ଧରି ଶୀତଳ ଷଷ୍ଠୀ ବାଣଯାତ୍ରା ଅନୁଷ୍ଠିତ ହୋଇଥାଏ। ପଞ୍ଚମୀତିଥିରେ ଏହାର ଆରମ୍ଭ ଓ ସପ୍ତମୀ ତିଥିରେ ଏହାର ସମାପ୍ତି। ହର ପାର୍ବତୀଙ୍କ ବିବାହ ଉପଲକ୍ଷେ ଏହି ଯାତ୍ରାର ଆୟୋଜନ କରାଯାଏ। ବିବାହଟି ସମ୍ପାଦିତ ହୁଏ ଠିକ୍ ବୈଦିକ ରୀତିରେ। ବ୍ରାହ୍ମଣ ପୁରୋହିତଙ୍କ ମଧ୍ୟରୁ ଜଣେ ହୁଅନ୍ତି ଶିବଙ୍କର ପିତା ଓ ଅନ୍ୟ ଜଣେ ହୁଅନ୍ତି ପାର୍ବତୀଙ୍କର ପିତା। ବୈଦିକ ମନ୍ତ୍ର ଉଚ୍ଚାରଣ ସହ

Digitized by srujanika@gmail.com

ପଞ୍ଚମୀ ତିଥି ରାତିରେ ବିବାହ ସମ୍ପାଦିତ ହୋଇ ଷଷ୍ଠୀ ତିଥି ରାତିରେ ବାଣଯାତ୍ରା ଓ ସପ୍ତମୀ ତିଥିରେ ହଳଦୀପାଣି ଯାତ୍ରା ଅନୁଷ୍ଠିତ ହୋଇଥାଏ। ଦେବାଦେବୀଙ୍କ ବିବାହ ଉପଲକ୍ଷେ ଯାତ୍ରାର ଆୟୋଜନ ପିପିଲି ବ୍ୟତୀତ ଓଡ଼ିଶାର ଅନ୍ୟ କୌଣସି ସ୍ଥାନରେ ପ୍ରାୟ ଦେଖାଯାଏ ନାହିଁ।

ତିନିଦିନ ମଧ୍ୟରୁ ଷଷ୍ଠୀ ତିଥିରେ ଅନୁଷ୍ଠିତ ଯାତ୍ରାଟି ବେଶ୍ ଚିତ୍ତାକର୍ଷକ ହୋଇଥାଏ। ସେଦିନ ଗ୍ରାମର ଶିବ ବିଗ୍ରହ ଗଡ଼େଶ୍ୱର ଦେବ ଓ ବାଲୁକେଶ୍ୱର ଦେବଙ୍କର ଦୁଇଟି ଚଳନ୍ତି ପ୍ରତିମା ସହ ଦୁଇଟିନାଗ, ଦୁଇଟି ବୃଷଭଙ୍କୁ ଅଣାଯାଇ ଏକ ସୁସଜ୍ଜିତ ମଣ୍ଡପ ଉପରେ ରଖାଯାଏ। ତାଙ୍କ ଆଗରେ ବାଣମରା ସ୍ଥାନ। ସେଦିନ ରାତିରେ ତାଙ୍କ ସମ୍ମୁଖରେ ବାଣମରା ପ୍ରତିଯୋଗିତା ହୋଇଥାଏ। ଏହା ଗ୍ରାମବାସୀଙ୍କର ବ୍ୟକ୍ତିଗତ ଖର୍ଚ୍ଚରୁ କରାଯାଏ। ସେଦିନ ଗ୍ରାମର ଶିଶୁ ଓ ବୃଦ୍ଧଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଉପବାସରେ ରହନ୍ତି। ବିଭିନ୍ନ ବାଣରେ ଗଗନ ପବନ ଆଲୋକିତ ଓ ମୁଖରିତ ହୋଇ ଉଠେ। ବାଣଗୁଡ଼ିକ ମଧ୍ୟରୁ କାଠଚକ୍ର, ବାଉଁଶଚକ୍ର, ତୁମ୍ବ, ଆକାଶମଲ୍ଲୀ, ଘଡ଼ି, ଗଛବାଣ ଓ ଅନ୍ଧାରୀ ପ୍ରଧାନ। ସମ୍ଭବତଃ ବାଣମରା ସ୍ଥାନଟି ଜନବହୁଳ ଗ୍ରାମର ମଧ୍ୟଭାଗରେ ଥିବାରୁ ବିପଦ ସଙ୍କୁଳ ହାବେଳୀବାଣ ସେଦିନ ବ୍ୟବହାର କରାଯାଇନଥାଏ। ବାଣରେ ଅଗ୍ନି ସଂଯୋଗ କରନ୍ତି ଗ୍ରାମର ଦୁଇଖଣ୍ଡରୁ ଦୁଇଜଣ ବ୍ୟକ୍ତି। ସେମାନେ ବାଣୁଆ ନାମରେ କଥିତ। ବାଣରେ ଅଗ୍ନି ସଂଯୋଗ ପୂର୍ବରୁ ଶିବ ବିବାହ ଉପରେ କ-ରୁ-କ୍ଷ ପର୍ଯ୍ୟନ୍ତ ରଚିତ ଏକ ସଂଗୀତ ଉପସ୍ଥିତ ବାଣ ପ୍ରତିଯୋଗୀମାନେ ଗାନକରୁଥିବାର ଦେଖାଯାଏ। ଏହାର ପଦଗୁଡ଼ିକ ଅଭିନୟ ସହ ବୋଲିବାର ଦୃଶ୍ୟ ବେଶ୍ ମନୋମୁଗ୍ଧକର। ଏହା ଚଉତିଶା ବନ୍ଧ ସିନ୍ଧୁଡ଼ା ଛନ୍ଦରେ ଆବୃତ୍ତି କରାଯାଏ।

ବାଣରେ ଅଗ୍ନିସଂଯୋଗ ପରେ ସ୍ଥାନୀୟ ଯୁବକମାନେ ଗାମୁଛା ଉଡ଼ାଇ ଆନନ୍ଦ ଉଲ୍ଲାସରେ ନାଚିଥାଆନ୍ତି। ଏହା ଏକ ପରମ୍ପରାରେ ପରିଣତ ହୋଇଗଲାଣି। ଏହି ନାଚ ଦର୍ଶକମାନଙ୍କୁ ବେଶ୍ ଆନନ୍ଦ ଦେଇଥାଏ। ଏହିପରି ଭାବେ ଶୀତଳ ଷଷ୍ଠୀ ଯାତ୍ରା ଜନମନ ରଞ୍ଜନକରି ପିପିଲିର ସାଂସ୍କୃତିକ ଇତିହାସକୁ ଋଦ୍ଧିମନ୍ତ କରିଛି।

## ନୂଆଶାସନ ନୃସିଂହ ଜନ୍ମ ଯାତ୍ରା

ପିପିଲି ଅଞ୍ଚଳର ଅନ୍ୟ ଏକ ଐତିହାସିକ ଯାତ୍ରା ହେଉଛି ନୃସିଂହ ଜନ୍ମ ଯାତ୍ରା। ଏହା ନୂଆଶାସନ ଗ୍ରାମରେ ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ଓ ପୂର୍ଣ୍ଣମୀ ଦିନ ଅନୁଷ୍ଠିତ ହୋଇଥାଏ। ଏହା ଗ୍ରାମର ଅଧିଷ୍ଠିତ ବିଗ୍ରହ ନୃସିଂହନାଥଙ୍କର

Digitized by srujanika@gmail.com

ନିଜସ୍ୱ ଯାତ୍ରା । ନୂଆଶାସନ ଗ୍ରାମଟି ଏବେ ୪ଟି ପଡ଼ାରେ ବିଭକ୍ତ ହୋଇଛି । ସେଗୁଡ଼ିକ ହେଲା ଦକ୍ଷିଣସାହି, ଉତ୍ତର ସାହି, ନୂଆପାଟଣା ଓ ଚଉଦ ମାଣ । ପୂର୍ବରୁ ଏହି ନୃସିଂହ ଜନ୍ମ ଯାତ୍ରାଟି ଉଭୟ ଦକ୍ଷିଣସାହି ଓ ଉତ୍ତର ସାହିରେ ଗୋଟିଏ ଦିନପାଇଁ ପାଳିତ ହେଉଥିଲା । କିନ୍ତୁ ଯାତ୍ରାଦିନ କଳହ ଉପୁଜିବାରୁ ବର୍ତ୍ତମାନ ଏହା ଦୁଇଦିନଧରି ପାଳିତ ହେଉଛି । ଚତୁର୍ଦ୍ଦଶୀଦିନ ଉତ୍ତରସାହିରେ ଓ ପୂର୍ଣ୍ଣମୀଦିନ ଦକ୍ଷିଣସାହିରେ ପାଳନ କରାଯାଏ । ନୃସିଂହନାଥଙ୍କୁ ମନ୍ଦିରରୁ ବିମାନ ଯୋଗେ ପୂଜା ମଣ୍ଡପକୁ ଅଣାଯାଏ । ତାହା ଚନ୍ଦନ ମଣ୍ଡପ ନାମରେ କଥିତ । ଆସିବା ବାଟରେ ପାଞ୍ଚପଡ଼ାରେ ତାଙ୍କୁ ଭୋଗ ଦିଆଯାଏ । ସେ ଅନ୍ୟ ଗୋଟିଏ ବାଟରେ ଫେରିଥାଆନ୍ତି । ସେ ଯାହାହେଉ ଚନ୍ଦନ ମଣ୍ଡପଠାରେ ବିମାନରୁ ଓହ୍ଲାଇ ଠାକୁର ସିଧା ଭାର୍ଗବୀ ନଦୀରେ ଚାପ ଖେଳନ୍ତି । ଖେଳିସାରିବା ପରେ ତାଙ୍କୁ ଚନ୍ଦନ ଜଳରେ ସ୍ନାନ କରାଯାଏ । ତାପରେ ସେ ବିଜେ ହୁଅନ୍ତି ଚନ୍ଦନ ମଣ୍ଡପରେ । ସେହିଠାରେ ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ଯାତ୍ରା ଚାଲିଥାଏ । ନାଗାନାଚରେ ସ୍ଥାନଟି ମୁଖରିତ ହୋଇଉଠେ । ଏହି ନାଗାଙ୍କ ସଂଖ୍ୟା ୯ । ତନ୍ମଧ୍ୟରୁ ଉତ୍ତରାସାହିରୁ ୬ ଗୋଟି ନାଗା ଯାଇଥିବା ସ୍ଥଳେ ଦକ୍ଷିଣସାହିରୁ ୩ ଗୋଟି ନାଗା ଯାଇଥାଆନ୍ତି । ଏହି ନାଗାନାଚଗୁଡ଼ିକ ବେଶ ଉପଭୋଗ୍ୟ ହୋଇଥାଏ । ଏହିପରି ଭାବେ ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ଯାତ୍ରା ହୋଇ ବିଗ୍ରହ ଯାଆନ୍ତି ପୁନରାୟ ଭାର୍ଗବୀ ନଦୀକୁ ନାବକେଳୀ କରିବାପାଇଁ । ନାବକେଳିପରେ ଦକ୍ଷିଣସାହିରେ ଚାଟେରୀ ଭୋଗ ଖାଇ ଉତ୍ତରସାହିକୁ ଯାଆନ୍ତି । ସେହିଠାରୁ ସେ ବିରାଜମାନ କରନ୍ତି ମନ୍ଦିରକୁ । ତାପରେ ନୃସିଂହ ଜନ୍ମଯାତ୍ରାରେ ଯବନିକା ପଡ଼େ ।

କେବଳ ପୁରୀ ଜିଲ୍ଲା କାହିଁକି ସମଗ୍ର ଓଡ଼ିଶାର ଅନ୍ୟ କୌଣସି ସ୍ଥାନରେ ନୃସିଂହ ଜନ୍ମ ଯାତ୍ରା ଏହିପରି ଭାବରେ ପାଳିତ ହେବାର ଦୃଷ୍ଟାନ୍ତ ନାହିଁ । ଅବଶ୍ୟ ୧୯୫୩ ମସିହାର ଜମିଦାରୀ ଉଚ୍ଛେଦ ପରେ ମନ୍ଦିର ପରିଚାଳନାଗତ ତ୍ରୁଟି ଯୋଗୁଁ ପୂଜା ଅର୍ଚ୍ଚନା କ୍ଷେତ୍ରରେ କିଛି ବ୍ୟତିକ୍ରମ ପରିଲକ୍ଷିତ ହୋଇଛି । ଏହା ସତ୍ତ୍ୱେ ଯାତ୍ରାଟି ପାରମ୍ପରିକ ପ୍ରଥାରେ ଅନୁଷ୍ଠିତ ହୋଇଆସୁଅଛି ।

## ଦାଣ୍ଡମୁକୁନ୍ଦପୁର ଚମ୍ପକ ଦ୍ୱାଦଶୀ ବାଣଯାତ୍ରା

ସମଗ୍ର ପୁରୀ ଜିଲ୍ଲାରେ ଦାଣ୍ଡମୁକୁନ୍ଦପୁର ଚମ୍ପକ ଦ୍ୱାଦଶୀ ବାଣଯାତ୍ରା ପ୍ରସିଦ୍ଧି ଲାଭ କରିଛି । ଏହା ଖୋର୍ଦ୍ଧାର ଗଜପତି ରାଜା ପ୍ରଥମ ମୁକୁନ୍ଦଦେବଙ୍କଠାରୁ ଅନୁଷ୍ଠିତ ହୋଇ ଆସୁଥିବାର ଜଣାଯାଏ । ସେ ୧୬୫୭ ଖ୍ରୀଷ୍ଟାବ୍ଦରୁ ୧୬୮୯ ପର୍ଯ୍ୟନ୍ତ ରାଜୁତି କରିଥିବାରୁ ତାଙ୍କ ରାଜତ୍ୱର ମଧ୍ୟଭାଗରେ ଅର୍ଥାତ୍ ୧୬୭୦ରୁ

Digitized by srujanika@gmail.com

୧୬୮୦ ମଧ୍ୟରେ ଏହି ଯାତ୍ରା ଆରମ୍ଭ ହୋଇପାରିଥାଏ । କାରଣ ଦାଣ୍ଡମୁକୁନ୍ଦପୁରସ୍ଥିତ ଜୟଗୋପାଳ ମନ୍ଦିର ସହିତ ଉକ୍ତ ଯାତ୍ରା ସମ୍ପୃକ୍ତ । ସେହି ମୁକୁନ୍ଦଦେବଙ୍କ ରାଜତ୍ୱରେ ଉକ୍ତ ମନ୍ଦିରଟି ନିର୍ମିତ ହୋଇଥିବାର ଜଣାଯାଏ । ଶ୍ରୀକୃଷ୍ଣଙ୍କର ରୁକ୍ମଣୀଙ୍କ ସହିତ ବିବାହ ଉତ୍ସବଟି ପାଳନ କରିବା ଏହି ଯାତ୍ରାର ଅନ୍ତର୍ନିହିତ ଆଭିମୁଖ୍ୟ । ଶ୍ରୀକୃଷ୍ଣ ରୁକ୍ମଣୀ ବିବାହରେ ଅଧୁନା ହିନ୍ଦୁ ପରିବାରରେ ଅନୁସୃତ ବୈଦିକ ରୀତିରେ ବିବାହ ସମ୍ପନ୍ନ କରିବାର ପଦ୍ଧତି ପାଳନ କରାଯାଇଥାଏ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଲକ୍ଷ୍ୟକଲେ ଜଣାଯାଏ ସତେଯେପରି କୌଣସି ଏକ ବ୍ରାହ୍ମଣ ପରିବାରର ବିବାହ ଅନୁଷ୍ଠିତ ହେଉଛି । ଗୋଟିଏ ସମୟରେ ମଣିଷ ଚିନ୍ତାକରି ଥିଲା ଯେ ତା ଜୀବନର ସମସ୍ତ ଘଟଣା ଈଶ୍ୱରଙ୍କର ଜୀବନରେ ମଧ୍ୟ ସଂଘଟିତ ହୋଇଥାଏ । ସେହି ବିଶ୍ୱାସରେ ବଶବର୍ତ୍ତୀ ହୋଇ ମଣିଷ ଏହିପରି ଉତ୍ସବମାନ ଆୟୋଜନ ପୂର୍ବକ ଈଶ୍ୱରଙ୍କୁ ସନ୍ତୁଷ୍ଟ କରିବା ଦିଗରେ ବ୍ରତୀ ହୋଇଛି । ପୂର୍ବରୁ ସୂଚୀତ ବୀରପୁରୁଷୋତ୍ତମପୁରର ଶିବ ପାର୍ବତୀ ବିବାହ ଓ ଦାଣ୍ଡମୁକୁନ୍ଦପୁରର ଶ୍ରୀକୃଷ୍ଣ ରୁକ୍ମିଣୀ ବିବାହ ସେହି ବିଶ୍ୱାସର ଜ୍ୱଳନ୍ତ ଉଦାହରଣ । ସେ ଯାହାହେଉ ଜ୍ୟେଷ୍ଠମାସ ଏକାଦଶୀ ଓ ଦ୍ୱାଦଶୀଦିନ ଚମ୍ପକ ଦ୍ୱାଦଶୀ ବାଣଯାତ୍ରା ଅନୁଷ୍ଠିତ ହୋଇଥାଏ । ଏକାଦଶୀଦିନ ବିବାହ ଓ ତାପରଦିନ ଯାତ୍ରାର ଆୟୋଜନ କରାଯାଏ । ବ୍ରାହ୍ମଣମାନେ ଏହି ଯାତ୍ରାର ଆୟୋଜନ କରିଥାଆନ୍ତି । ଗୋପାଳଜୀଙ୍କ ସହ ବରଯାତ୍ରୀ ଭାବେ ଯିବା ପାଇଁ ବାଲୁକେଶ୍ୱର, ନୀଳକଣ୍ଠେଶ୍ୱର ଓ ଭଳୁନ୍ଦେଶ୍ୱର ମହାଦେବଙ୍କୁ ନିମନ୍ତ୍ରଣ କରାଯାଏ । ସେହିପରି ପାଖଆଖର ବ୍ରାହ୍ମଣମାନଙ୍କୁ ମଧ୍ୟ ଉକ୍ତ ବିବାହରେ ଯୋଗଦେବା ପାଇଁ ନିମନ୍ତ୍ରଣ ପଠାଯାଏ । ଏହାକୁ କୁହାଯାଏ ହକରା । ମାନ୍ୟସ୍ୱରୂପ ପୂର୍ବରୁ ବ୍ରାହ୍ମଣମାନଙ୍କୁ ୩୨ ଗୌଣୀ ଉଖୁଡ଼ା-ହୁଡ଼ୁମ୍ବ ଓ ୧୬ ସେର କୋରା ଦିଆଯାଉଥିଲା । ଏବେ ତାର ପରିମାଣ ୧୬ ଗୌଣି ଉଖୁଡ଼ା-ହୁଡ଼ୁମ୍ବ ଓ ୨ ସେର କୋରାକୁ ଖସିଆସିଛି । ସେହି ବ୍ରାହ୍ମଣମାନେ ମନ୍ଦିରରେ ବରକନ୍ୟାକୁ ଆଶୀର୍ବାଦ କରନ୍ତି । ବିବାହ ଉତ୍ସବ ଦିନ ଅର୍ଥାତ୍ ଏକାଦଶୀ ରାତ୍ରିରେ ମଣ୍ଡପ ଉପରେ ତିନି ମହାଦେବ ଓ ଗୋପାଳଜୀ ବିରାଜମାନ କରନ୍ତି ବିମାନରେ । ଗୋପାଳଜୀ ମନ୍ଦିରରେ ପୂଜିତା ଲକ୍ଷ୍ମୀଙ୍କୁ ମଧ୍ୟ ପାଲିଙ୍କିରେ ଅଣାଯାଇ ମଣ୍ଡପ ଉପରେ ଅଧିଷ୍ଠିତ କରାଯାଏ । ତା ପୂର୍ବରୁ ରୁକ୍ମଣୀଙ୍କୁ ଆଣି ଗୋପାଳଜୀଙ୍କ ପାର୍ଶ୍ୱରେ ରଖାଯାଇଥାଏ । ଏହାପରେ ମନ୍ତ୍ର ଉଚ୍ଚାରଣ ସହ ସେହି ଏକାଦଶୀ ରାତ୍ରିରେ ବିବାହ କାର୍ଯ୍ୟ ସମ୍ପନ୍ନ କରାଯାଏ । ତା ପରଦିନଟି ମଉଜମଜଲିସ୍ ପାଇଁ ଉଦ୍ଦିଷ୍ଟ । ସଂଧ୍ୟାରେ ଆରମ୍ଭ ହୁଏ ବାଣ ପ୍ରତିଯୋଗିତା । ତା ପୂର୍ବରୁ ବ୍ରାହ୍ମଣମାନଙ୍କ ଦ୍ୱାରା ବିଭିନ୍ନ ପ୍ରକାରର ବାଣ ତିଆରି କରାଯାଇଥାଏ । ତନ୍ମଧ୍ୟରୁ କାଠଚକ୍ର, ବାଉଁଶ ଚକ୍ର, ଗଡ଼ମ୍ବା, ଆକାଶମଲ୍ଲୀ ଆଦି

Digitized by srujanika@gmail.com

ବାଣର ନାମ ଉଲ୍ଲେଖଯୋଗ୍ୟ। ପୂର୍ବରୁ କାଠ ହାବେଳୀ ବାଣ ପ୍ରତିଯୋଗିତାରେ ସ୍ଥାନ ପାଇଥିଲା। ମାତ୍ର ଆଜକୁ ୬୬ ବର୍ଷ ପୂର୍ବେ ଉକ୍ତ ବାଣ ଦୁର୍ଘଟଣାରେ ଜନୈକ ବୃଦ୍ଧାଙ୍କର ମୃତ୍ୟୁ ଘଟିବାପରେ ତାର ବ୍ୟବହାର ନିଷେଧ କରାଯାଇଛି। ତା ସ୍ଥାନରେ କାଠଚକ୍ର ବାଣ ବ୍ୟବହାର କରାଯାଉଥିଲା। ଥରେ ଏହି ବାଣରେ ଗୋଟିଏ ଘରେ ନିଆଁ ଲାଗିଯାଇଥିବାରୁ ତାକୁ ମଧ୍ୟ ବନ୍ଦ କରାଯାଇଥିଲା। ଏବେ ତାର ପୁନର୍ବ୍ୟବହାର ହେଲାଣି ଓ ତାହା ଯାତ୍ରାର ମୁଖ୍ୟ ଆକର୍ଷଣୀୟ ବାଣ ହୋଇ ରହିଛି। ବାଣ ଶେଷ ହେବାପରେ ଯୁବକମାନେ ନାଲିଗାମୁଛା ଉଡ଼ାଇ ଉତ୍ସବଟିର ସମାପନ କରିଥାଆନ୍ତି। ଏହା ମଧ୍ୟ ବେଶ ଚିତ୍ତାକର୍ଷକ ହୋଇଥାଏ।

## ରୂପଦେଈପୁର ନାଗାଯାତ୍ରା

ପିପିଲି ଅଞ୍ଚଳରେ ରୂପଦେଈପୁରର ନାଗାଯାତ୍ରା ଅନ୍ୟ ଏକ ପ୍ରସିଦ୍ଧ ଯାତ୍ରାରୂପେ ସୁବିଦିତ। ଚାରିଗୋଟି ପଡ଼ାଥାଇ ଏହା ଗୋଟିଏ ବଡ଼ଗାଁ। ସେହି ପଡ଼ାଗୁଡ଼ିକ ହେଲା ମଉଳୀବେଗ, ବିରାଟସାହି, ଗଣ୍ଡସାହି ଓ ବଉଳ ଚଉକା। ରୂପଦେଈପୁର ଗ୍ରାମର ପଶ୍ଚିମ ଭାଗରେ ଗୋଟିଏ ଜଗନ୍ନାଥ ମନ୍ଦିର ବିଦ୍ୟମାନ। ଜଗନ୍ନାଥଙ୍କର ସମସ୍ତ ପର୍ବ ଉକ୍ତ ମନ୍ଦିରରେ ପାଳନ କରାଯାଏ। ତନ୍ମଧ୍ୟରୁ ସ୍ନାନଯାତ୍ରାଟି ନାଗାଯାତ୍ରା ନାମରେ ପ୍ରସିଦ୍ଧି ଲାଭ କରିଛି।

ନାଗାଯାତ୍ରା ଦୁଇଦିନ ଧରି ହୁଏ। ସ୍ନାନ ପୂର୍ଣ୍ଣମୀ ଓ ତାପରଦିନ। ସ୍ନାନପୂର୍ଣ୍ଣମୀର ପୂର୍ବଦିନ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦେବାଳୟ ମଣ୍ଡପରୁ ତଳକୁ ଓହ୍ଲାଯାଏ। ଏହାକୁ କୁହାଯାଏ ଚକାଛାଡ଼। ପୂର୍ଣ୍ଣମୀ ଦିନ ୩ଟି ବିଗ୍ରହଙ୍କୁ ସ୍ନାନମଣ୍ଡପକୁ ଅଣାଯାଏ। ସେହିଠାରେ ଗ୍ରାମବାସୀମାନେ ଭୋଗକରନ୍ତି। ରୂପଦେଈପୁର ଗାଁଟିକୁ ୭ଟି ଖଣ୍ଡରେ ବିଭକ୍ତ କରାଯାଇଛି। ପ୍ରତ୍ୟେକ ଖଣ୍ଡର ଗୋଟିଏ ଗୋଟିଏ ଜାଗାଘର ରହିଛି। ପ୍ରତ୍ୟେକ ଜାଗାଘର ଅଧୀନରେ ୩୦ ରୁ ୪୦ ଟି ଘର ଓ ଏହା ଗୋଟିଏ ଗୋଟିଏ ସମିତି ଦ୍ୱାରା ପରିଚାଳିତ। ନାଗାଯାତ୍ରାର ସମସ୍ତ ଖର୍ଚ୍ଚ ସମ୍ପୃକ୍ତ ଜାଗାଘରର ସମିତି ବହନ କରିଥାଏ।

ବହୁ ଆକାଂକ୍ଷିତ ନାଗାଯାତ୍ରା ଅନୁଷ୍ଠିତ ହୁଏ ପୂର୍ଣ୍ଣମୀବାସୀଦିନ। ନାଗାମାନେ ସାଧାରଣତଃ ପର୍ଶୁରାମବେଶରେ ଆବିର୍ଭୂତ ହୋଇଥାଆନ୍ତି। ସେମାନେ ଢେଙ୍ଗୁକ; ବାଘଛାଲ, ହାଣ୍ଡିଆ, କୀରିଟୀ ଓ ଢାଲ ପ୍ରଭୃତି ଉପାଦାନରେ ସୁସଜ୍ଜିତ ହୋଇଥାଆନ୍ତି। ସେମାନେ ଆସିବା ପରେ ଢେମ୍ପିନାଗରା ବାଜିଉଠେ। ତାରି ତାଳରେ ନାଗାମାନେ ନାଚି ଥାଆନ୍ତି। ପୂର୍ବରୁ ଏହି ଯାତ୍ରାରେ ୨୫ ଟି ନାଗା ନାଚୁଥିଲେ। ସେତେବେଳେ ଗୋଟିଏ ନାଗାଦେହରେ ପ୍ରାୟ ୨୫ରୁ ୩୦ କେ.ଜି. ପର୍ଯ୍ୟନ୍ତ ରୂପା ଅଳଙ୍କାର

Digitized by srujanika@gmail.com

ଖଂଜା ହେଉଥିଲା । ଏହା ବ୍ୟୟସାପେକ୍ଷ ହେବାରୁ ନାଗାସଂଖ୍ୟା ୨୫ ରୁ ୭ କୁ ଖସିଆସିଛି ଓ ଅଳଙ୍କାରର ପରିମାଣ ମଧ୍ୟ ହ୍ରାସ ପାଇଛି । ପ୍ରତ୍ୟେକ ଜାଗାଘରୁ ଗୋଟିଏ ଗୋଟିଏ ନାଗା ବାହାରିଥାଆନ୍ତି । ପୂର୍ବରୁ ନାଗାନାଚ ଦୁଇବେଳା ହେଉଥିଲା । ଏବେ ଏହା କେବଳ ଉପରବେଳା ହେଉଛି ।

## ବାଗେଶ୍ୱରପୁର ବାଣଯାତ୍ରା

ବାଗେଶ୍ୱରପୁର ବାଣଯାତ୍ରା ପିପିଲି ଅଞ୍ଚଳର ଅନ୍ୟତମ ଆକର୍ଷଣୀୟ ଉତ୍ସବ । ଗାଁଟିର ଅବସ୍ଥିତ ପିପିଲି ବଜାରଠାରୁ ପ୍ରାୟ ୩ କିଲୋମିଟର ଦୂରରେ କଟଣୀ-ପିପିଲି ରାସ୍ତାର ବାମପଟେ । ଏହା ଅଧୁନା ହାଟସାହୀ ପଞ୍ଚାୟତର ଅନ୍ତର୍ଗତ ।

ବାଗେଶ୍ୱରପୁରର ବାଣଯାତ୍ରାଟି ପ୍ରତିବର୍ଷ ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ସପ୍ତମୀତିଥିରେ ଅନୁଷ୍ଠିତ ହୋଇଥାଏ । ଗ୍ରାମର ମହାଦେବ ରାମେଶ୍ୱରଙ୍କର ବିବାହ ଉପଲକ୍ଷେ ଏହି ଯାତ୍ରାର ଆୟୋଜନ କରାଯାଏ । ୧୭୩୭ରୁ ୧୭୯୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜୁତି କରିଥିବା ଖୋର୍ଦ୍ଧରାଜା ବୀରକିଶୋର ଦେବ ଏହି ମନ୍ଦିର ନିର୍ମାଣ କରିଥିବାରୁ ତାଙ୍କରି ସମୟରୁ ଏହି ଯାତ୍ରା ପାଳିତ ହୋଇ ଆସୁଥିବାରୁ ଜଣାଯାଏ । ସମ୍ଭବତଃ ୧୭୭୦ରୁ ୧୭୮୦ ମଧ୍ୟରେ ଏହି ଯାତ୍ରାର ଆରମ୍ଭ । ଏହି ମର୍ମରେ ଏକ ସନନ୍ଦ ପତ୍ର ମନ୍ଦିରର ଟ୍ରଷ୍ଟିଙ୍କଠାରେ ରହିଛି ।

ଶୁକ୍ଳପକ୍ଷ ଷଷ୍ଠୀଦିନ ରାତିରେ ଗୋଟିଏ ସୁସଜ୍ଜିତ ବିମାନରେ ହରପାର୍ବତୀଙ୍କର ଚଳନ୍ତି ପ୍ରତିମାଙ୍କୁ ଯାତ୍ରା ସ୍ଥଳକୁ ନିଆଯାଏ । ସେହିଠାରେ ସେମାନେ ରାତ୍ରିଯାପନ କରିବାପରେ ପରଦିନ ବାଣଯାତ୍ରା ଅନୁଷ୍ଠିତ ହୋଇଥାଏ । ଯାତ୍ରାଟି ସକାଳ ୮ରୁ ସଂଧ୍ୟା ୫ଟା ପର୍ଯ୍ୟନ୍ତ ଚାଲିଥାଏ । ସେଦିନ ଜମିଲାପଡ଼ା ଓ ବାଗେଶ୍ୱରପୁର ମୌଜା ମଧ୍ୟରେ ବାଣ ପ୍ରତିଯୋଗିତା କରାଯାଇଥାଏ । ଭିନ୍ନ ଭିନ୍ନ ବାଣ କାଠଚକ୍ର ପଦ୍ମଚକ୍ର ଓ ଆସମାନଗୋଳା ବେଶ୍ ଆକର୍ଷଣୀୟ ହୋଇଥାଏ । କେବଳ ବାଣ ତିଆରିକରିଥିବା ବ୍ୟକ୍ତି ବାଣରେ ଅଗ୍ନିସଂଯୋଗ କରିଥାଆନ୍ତି । ଅଗ୍ନିସଂଯୋଗ ପୂର୍ବରୁ ବୀରପୁରୁଷୋତ୍ତମପୁରର ବାଣ ଯାତ୍ରାଭଳି କୌଣସି ଗୀତ ବୋଲାଯାଏ ନାହିଁ । ମାତ୍ର ପ୍ରାପ୍ତବୟସ୍କ ବ୍ୟକ୍ତିମାନେ ଦିନସାରା ଉପବାସରହି ବାଣ ଶେଷ ହେବାପରେ ଜଳପାନ କରିଥାଆନ୍ତି । ନାଲିଗାମୁଛା ଉଡ଼ାଇ ନାଚକରିବା ପ୍ରଥା ଏଠାରେ ମଧ୍ୟ ଅନୁସୃତ ହୋଇଥାଏ । ଏହିପରି ଏକ ପ୍ରଥାର ପ୍ରଚଳନ ମୂଳରେ କି କାରଣ ରହିଛି ତାହା ସଠିକ ଭାବେ କହିନହେଲେ ମଧ୍ୟ ସମ୍ଭବତଃ ପୁରୀ ଜିଲ୍ଲାରେ ନାଲିଗାମୁଛା ସାଧାରଣ ଲୋକଙ୍କର ଏକ ପ୍ରଧାନ ଅଙ୍ଗବସ୍ତ୍ର ହୋଇଥିବାରୁ ତାକୁ ପର୍ବପର୍ବାଣୀରେ ବ୍ୟବହାର କରି ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରିଥାଆନ୍ତି ବୋଲି

Digitized by srujanika@gmail.com

ଅନୁମାନ କରାଯାଇପାରେ ।

## ଧଉଳି ରଜଯାତ୍ରା

ଧଉଳିରେ ଅନୁଷ୍ଠିତ ରଜଯାତ୍ରା ପିପିଲି ଅଞ୍ଚଳରେ ଅନ୍ୟ ଏକ ସାର୍ବଜନୀନ ଯାତ୍ରା । ଏହା ଦୟାନଦୀର ପୂର୍ବ ଭାଗରେ ଓ ଧଉଳି ମୁଣ୍ଡିଆର ପଶ୍ଚିମ ପାର୍ଶ୍ୱରେ ଅବସ୍ଥିତ । ଗଣେଶ ମନ୍ଦିର ନିକଟରେ ପ୍ରତିବର୍ଷ ରଜ ପର୍ବରେ ଏହି ଯାତ୍ରା ଅନୁଷ୍ଠିତ ହୋଇଥାଏ । ମାତ୍ର ଏଠାକୁ କୌଣସି ଠାକୁର ଆସନ୍ତି ନାହିଁ । ରଜ ସଂକ୍ରାନ୍ତି ଦିନ ଭୁବନେଶ୍ୱରଠାରୁ ବନମାଳୀପୁର ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଅଞ୍ଚଳରୁ ଶତଶତ ନରନାରୀ ଧଉଳି ଆସି ଐତିହାସିକ ହସ୍ତୀ ଦେଖି ମୁଣ୍ଡିଆ ଉପରକୁ ଉଠନ୍ତି । ତାପରେ ଶିବମନ୍ଦିର ଓ ଶାନ୍ତିସ୍ତୂପ ଦର୍ଶନ କରିବାପରେ ଗଣେଶ ମନ୍ଦିର ନିକଟକୁ ଆସି ପ୍ରଣିପାତ କରି ଥାଆନ୍ତି । ଶାନ୍ତିସ୍ତୂପ ନିର୍ମିତ ହେବାପରେ ଏହି ଯାତ୍ରାରେ ଅଧିକ ଜନସମାଗମ ହେବାର ଦେଖାଯାଉଛି । ତନ୍ମଧ୍ୟରୁ ପୁରୁଷଙ୍କ ତୁଳନାରେ ସ୍ତ୍ରୀ ଓ ପିଲାମାନଙ୍କ ସଂଖ୍ୟା ଅଧିକ । ଗଣେଶଙ୍କ ନିକଟରେ ଭୋଗ କରାଯାଉଥିବା ଚୂଡ଼ାଘଷା ବେଶ୍ ସୁସ୍ୱାଦୁ ହୋଇଥାଏ ।

## ବିଶ୍ୱନାଥ ମୁଣ୍ଡିଆ ରଜ ସଂକ୍ରାନ୍ତି ଯାତ୍ରା

ଡେଲାଙ୍ଗ ନିକଟରେ ବିଶ୍ୱନାଥ ମୁଣ୍ଡିଆର ଅଗ୍ରଭାଗରେ ଥିବା ବିଶ୍ୱନାଥ ମନ୍ଦିର ନିକଟରେ ପ୍ରତ୍ୟେକ ସଂକ୍ରାନ୍ତିଦିନ ଏକ ପ୍ରକାର ଯାତ୍ରା ଅନୁଷ୍ଠିତ ହୋଇ ଜନସମାଗମ ହେଉଥିଲେ ମଧ୍ୟ ପ୍ରତିବର୍ଷ ରଜସଂକ୍ରାନ୍ତି ଦିନ ଏଠାରେ ଏକ ବିରାଟ ଧରଣର ଯାତ୍ରା ହୋଇଥାଏ । ସୂର୍ଯ୍ୟୋଦୟଠାରୁ ଆରମ୍ଭ ହୋଇ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଏହି ଯାତ୍ରା ଲାଗିରହେ । ବିଶ୍ୱନାଥ ଠାକୁର ମହା ପ୍ରତାପୀ ଓ କୌଣସି ବ୍ୟକ୍ତି ଯାହା ମାନସିକ କରନ୍ତି ତାହା ଫଳବତୀ ହୁଏ ବୋଲି ଲୋକଙ୍କ ମଧ୍ୟରେ ବିଶ୍ୱାସ ଜନ୍ମିଥିବାରୁ ଫଳପ୍ରାପ୍ତ ବ୍ୟକ୍ତି ସେହି ରଜ ସଂକ୍ରାନ୍ତି ଦିନ ସେଠାରେ ରୋଷେଇ କରି ସମସ୍ତଙ୍କୁ ଭୋଗରେ ଆପ୍ୟାୟିତ କରୁଥିବାରୁ ଦେଖାଯାଏ । ଇତିମଧ୍ୟରେ ମୋତେ ସେଠାକୁ ଯିବାର ସୁଯୋଗ ମିଳିଥିଲା । ମୁଣ୍ଡିଆ ଉପରେ ପାଣିର ସୁବିଧା ନାହିଁ । ରୋଷେଇ ଓ ଭୋଗରାଗ ପାଇଁ ପାଣିର କି ସୁବିଧା କରାଯାଏ ବୋଲି ପ୍ରଶ୍ନ ପଚାରି ବୁଝିଲି ଯେ ରଜସଂକ୍ରାନ୍ତିର ଯାତ୍ରାଦିନ ନିକଟରେ ଥିବା ଆକୋଇ ଜଗଦଳପୁର ଓ ମୋଟରୀ ପ୍ରଭୃତି ଗ୍ରାମର ସ୍ୱେଚ୍ଛାସେବୀମାନେ ତଳୁ ଜଳନେଇ ଯାତ୍ରୀମାନଙ୍କୁ ଯୋଗାଇ ଥାଆନ୍ତି । ଅନ୍ୟ ସଂକ୍ରାନ୍ତି ଦିନ ପାଉଣା ଦେଲେ ତଳୁ ଲୋକମାନେ ଜଳବୋହି ନେଇ ଯୋଗାଇଥାନ୍ତି । ସେଠାରେ ରଜସଂକ୍ରାନ୍ତି ଦିନ

Digitized by srujanika@gmail.com

ଠାକୁରଙ୍କ ନିକଟରେ ଏକ ଯଜ୍ଞ ଅନୁଷ୍ଠିତ ହୁଏ। ଧଉଳି ଯାତ୍ରାପରି ଏହି ରଜସଂକ୍ରାନ୍ତି ଯାତ୍ରାରେ ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନଙ୍କର ଅଧିକ ସମାଗମ ହୋଇଥାଏ। ପିଲାମାନଙ୍କୁ ଧରି ବନ୍ଧୁର ପଥରେ ଉପରକୁ ଯିବା ତାଙ୍କ ପକ୍ଷେ କଷ୍ଟସାଧ୍ୟ ହୋଇଥିଲେ ମଧ୍ୟ ସମ୍ଭବତଃ ଆଧ୍ୟାତ୍ମିକ ଭାବନା ତାଙ୍କର ମନୋବଳକୁ ସୁଦୃଢ଼ କରାଇଥାଏ।

## ଘୋରଡ଼ିଆ ଦୟଣା ଚୋରି ଯାତ୍ରା

ଘୋରଡ଼ିହା ଦୟଣା ଚୋରି ଯାତ୍ରା କେବଳ ଡେଲାଙ୍ଗ - ପିପିଲି ଓ ପୁରୀ ଜିଲ୍ଲାରେ କାହିଁକି ସମଗ୍ର ଓଡ଼ିଶାରେ ଏକ ପ୍ରସିଦ୍ଧ ଯାତ୍ରା ରୂପେ ସୁବିଦିତ। ଏହା ଡେଲାଙ୍ଗ ଥାନା ଅନ୍ତର୍ଗତ ଇତିହାସ ପ୍ରସିଦ୍ଧ ଘୋରଡ଼ିଆ ଗ୍ରାମରେ ଅନୁଷ୍ଠିତ ହୋଇଥାଏ। ୧୭୧୬ରୁ ୧୭୨୦ ପର୍ଯ୍ୟନ୍ତ ରାଜୁତି କରୁଥିବା ଖୋର୍ଦ୍ଧାର ଗଜପତି ହରେକୃଷ୍ଣ ଦେବ ଉକ୍ତ ଗ୍ରାମଟି ବସାଇଥିବାର ପ୍ରକ୍ଷିପ୍ତି ରହିଥିବାରୁ ଯାତ୍ରାଟି ପ୍ରତିବର୍ଷ ଚୈତ୍ର ଚତୁର୍ଦ୍ଦଶୀରେ ଆରମ୍ଭ ହୋଇ ୩ ଦିନ ଧରି ହେଉଥିଲା। ମାତ୍ର ଏବେ ଏହା ୪ ଦିନ ହେଉଛି। ଏହା ଘୋରଡ଼ିଆ-ଘନିପୁରର ବିଗ୍ରହ ରାଧାମୋହନ ଦେବଙ୍କ ଯାତ୍ରା। ମାତ୍ର ଗ୍ରାମର ପୂର୍ବଭାଗରେ ବିରାଜମାନ କରିଥିବା ବିଗ୍ରହ ରାଧାକାନ୍ତ ଦେବ ଏଠାକୁ ନିମନ୍ତ୍ରିତ ହୋଇ ଆସନ୍ତି। ସେ ରାଧାମୋହନ ଦେବଙ୍କର ଧାନଭାଇ ବୋଲି ଲୋକଙ୍କର ବିଶ୍ୱାସ। ଚତୁର୍ଦ୍ଦଶୀଦିନ ଦୁଇଟି ବଡ଼ ବଡ଼ ସୁସଜ୍ଜିତ ବିମାନରେ ଉଭୟ ରାଧାକାନ୍ତ ଦେବ ଓ ରାଧାମୋହନ ଦେବଙ୍କୁ ଏକ ବିରାଟ ପଟୁଆରରେ ମେଳଣ ପଡ଼ିଆକୁ ଅଣାଯାଇଥାଏ। ପୂର୍ବେ ସେମାନଙ୍କୁ ଆଣିବାପାଇଁ ୧୨୦ ଜଣ ବେହେରା ନିଯୁକ୍ତ ହେଉଥିଲେ। ସେମାନେ କାନ୍ଧରେ ବିମାନ ଦୁଇଟିକୁ ଆଣିଥାଆନ୍ତି। ଏବେ ଦୁଇ ଠାକୁରଙ୍କୁ ଚକ ଲାଗିଥିବା ଦୁଇଟି କୁଞ୍ଜରେ ମେଳଣ ପଡ଼ିଆକୁ ନିଆଯାଉଛି। ସମ୍ଭବତଃ ଏତେ ସଂଖ୍ୟକ ଲୋକ କାନ୍ଧେଇବା ପାଇଁ ମିଳୁନଥିବାରୁ କୁଞ୍ଜର ବ୍ୟବସ୍ଥା କରାଯାଇଛି। ସେ ଯାହାହେଉ ରାଧାକାନ୍ତ ଦେବ ମେଳନ ପଡ଼ିଆରେ ଆରମ୍ଭରୁ ଯାତ୍ରା ଶେଷ ହେବା ପର୍ଯ୍ୟନ୍ତ ରହିଥାଆନ୍ତି। ମାତ୍ର ରାଧାମୋହନ ଦେବ ପ୍ରତ୍ୟହ ଧୂପ ପାଇଁ ନିଜ ଦେଉଳକୁ ବିରାଜମାନକରି ପୁଣି ସଂଧ୍ୟା ସମୟରେ ମେଳଣ ସ୍ଥଳକୁ ଯାଆନ୍ତି।

ଏହି ଯାତ୍ରାର ବିଶେଷ ଆକର୍ଷଣ ହେଉଛି ତଘା। ଠାକୁରଙ୍କ କୁଞ୍ଜ ସମ୍ମୁଖରେ ଦୁଇଟି ତଘା ନିଆଯାଇଥାଏ। ପ୍ରତ୍ୟେକ ତଘାଟି ୪ ଚକ ବିଶିଷ୍ଟ। ଏହାର ଉଚ୍ଚତା ପ୍ରାୟ ୪୦ ଫୁଟରୁ ଅଧିକ। ଠିକ୍ ୧୨ ଟି ଛତିର ଆକାର ହେଉଛି ପ୍ରତ୍ୟେକ ତଘାର ଆକୃତି। ଛତିଗୁଡ଼ିକ ସୂତା ସାହାଯ୍ୟରେ ଖୋଲେ।

Digitized by srujanika@gmail.com

ତନ୍ମଧ୍ୟରୁ ଏବେ ୫ଟି ଛତି ଖୋଲାଯାଉଛି। ତଘାର ଶିଖରଦେଶରେ ଦୁଇଟି ମୟୂର ବସାଯାଇଥାଏ ଓ ସେ ଦୁଇଟିକୁ ସୂତାରଶି ଦ୍ୱାରା ନାଚକରାଯାଏ। ଏହି ବିଶାଳକାୟ ତଘାକୁ ତିଆରି କରିବାପାଇଁ ୧୦ ଜଣ କାରିଗରଙ୍କୁ ପ୍ରାୟ ୧ ମାସ ଲାଗେ।

ପଟୁଆରରେ ଯେ କେବଳ ତଘା ଯାଏ ତା ନୁହେଁ, ଏଥି ସହିତ ନାଗା, କଳଘୋଡ଼ା ମଧ୍ୟ ଯାଇଥାଆନ୍ତି। ଏହି ପଟୁଆର ମେଳଣ ପଡ଼ିଆରେ ପହଞ୍ଚିବାପରେ ଅନ୍ୟ ଦୁଇଟି ଛୋଟ ବିମାନରେ ବିଗ୍ରହ ଦୁଇଟି ଦୟାନଦୀ ପାର ହୋଇ ଗଙ୍ଗା ଯମୁନା ତୋଟାକୁ ଦୟଣା ବୃକ୍ଷ ଚୋରି କରିବାକୁ ଯାଆନ୍ତି। ସେମାନେ ଦୟାଣ ଚୋରି କରନ୍ତି, ମାତ୍ର ମାଳୀ ବିଚାରା ବନ୍ଧା ହୋଇ ଥାଏ। ସେଥିପାଇଁ ଏହିଯାତ୍ରା ଦୟଣାଚୋରୀ ଯାତ୍ରା ନାମରେ କଥିତ। ବ୍ୟବସାୟ ଦୃଷ୍ଟିରୁ ଯାତ୍ରା ପ୍ରାୟ ୪ ସପ୍ତାହ ଧରି ବସେ। ଏବେ ଏହା ବଳଦ ବ୍ୟବସାୟର ମୁଖ୍ୟ କେନ୍ଦ୍ର ହୋଇପଡ଼ିଛି।

## ପିପିଲିର ପ୍ରମୁଖ ମେଳଣ

ପିପିଲି ଅଞ୍ଚଳ ମେଳଣ ଯାତ୍ରାପାଇଁ ଇତିହାସ ପ୍ରସିଦ୍ଧ। ଓଡ଼ିଶାର ଅନ୍ୟ ଅଞ୍ଚଳରେ ଏତେ ସଂଖ୍ୟକ ମେଳଣ ଯାତ୍ରା ଅନୁଷ୍ଠିତ ହେବାର ଦେଖାଯାଏ ନାହିଁ। ତନ୍ମଧ୍ୟରୁ ଏଠାରେ ୬ଟି ପ୍ରମୁଖ ମେଳଣ ଉପରେ ବର୍ଣ୍ଣନା ଦିଆଯାଉଛି। ସେଗୁଡ଼ିକ ହେଲା ହରିରାଜପୁର ମେଳଣ, ମନୋହରୀ ମେଳଣ, ମଉଳୀବେଗ ଭାଗବତ ମେଳଣ, ଅଠରଭାଗ ମେଳଣ, କୁଜଙ୍ଗର ମେଳଣ ଓ ଷଷ୍ଠଶ ମେଳଣ।

### ହରିରାଜପୁର ମେଳଣ

ହରିରାଜପୁର ମେଳଣ ସମଗ୍ର ଓଡ଼ିଶାରେ କେତେକ ମୁଷ୍ଟିମେୟ ମେଳଣ ମଧ୍ୟରୁ ଅନ୍ୟତମ। ଏହାର ପ୍ରସିଦ୍ଧି ଓଡ଼ିଶାସାରା ପରିବ୍ୟାପ୍ତ। ମୋ ଘର ବାଲେଶ୍ୱର ଜିଲ୍ଲାରେ ହୋଇଥିଲେ ମଧ୍ୟ ପିଲାଦିନେ ମୁଁ ଏହି ମେଳଣର ଖ୍ୟାତି ବିଷୟରେ ଅବଗତ ହୋଇଥିଲି। ହରିରାଜପୁର ଗ୍ରାମଟି ଦକ୍ଷିଣ ପୂର୍ବ ରେଳପଥର ଖୋର୍ଦ୍ଧାରୋଡ଼ ଷ୍ଟେସନଠାରୁ ପିପିଲି ଜଟଣୀ ରାସ୍ତାର ୨ କି.ମି. ଦୂରରେ ଅବସ୍ଥିତ। ଏହା ଏବେ ପୁରୀ ଓ ଭୁବନେଶ୍ୱର ପ୍ରଭୃତି ସ୍ଥାନକୁ ସବୁଦିନିଆ ରାସ୍ତାଦ୍ୱାରା ସଂଯୁକ୍ତ ହୋଇଛି। ଏହି ମେଳଣ ମୁଖ୍ୟତଃ ହରିରାଜପୁରର ଠାକୁର ଶ୍ରୀ ଶ୍ରୀ ସୋମନାଥ ଦେବଙ୍କ ପାଇଁ ଉଦ୍ଦିଷ୍ଟ। ଏହି ମେଳଣ ପଞ୍ଚୁଦୋଳ ଯାତ୍ରା ନାମରେ କଥିତ। ୧୬୨୧ରୁ ୧୬୪୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଖୋର୍ଦ୍ଧାରେ ରାଜୁତି କରୁଥିବା ଗଜପତି

Digitized by srujanika@gmail.com

ନରସିଂହଦେବଙ୍କ ସମୟରୁ ଏହି ମେଳଣ ଆରମ୍ଭ ହୋଇଥିବାର ବିଶ୍ୱାସ କରାଯାଏ। ୧୬୩୭ ଖ୍ରୀଷ୍ଟାବ୍ଦରେ ଏହା ଆରମ୍ଭ ହୋଇଥିବାର ଜନଶ୍ରୁତି ମଧ୍ୟ ରହିଛି।

ଦିବ୍ୟସିଂହ ଚମ୍ପତିଙ୍କ ଦ୍ୱାରା ଲିଖିତ ଶ୍ରୀ ସୋମନାଥ ପୁସ୍ତକରୁ ଏହି ଯାତ୍ରାର ଆରମ୍ଭ ବିଷୟରେ ଏକ ଜନଶ୍ରୁତି ରହିଥିବାର ଜଣାଯାଏ। (୧) ଥରେ ହରିରାଜପୁର ଗ୍ରାମର ସ୍ୱର୍ଗତ ବାବାଜୀ ଗୋବର୍ଦ୍ଧନ ଦାଶ ଓ ଖରୁଡ଼ା ଗ୍ରାମର ବିଲଶାଳୀ ବ୍ୟକ୍ତି ନିତେଇ ସାହୁ ରଥଯାତ୍ରା ଦେଖି ଫେରୁଥିବା ବାଟରେ ସ୍ଥିରକରି ଥିଲେ ଯେ ସେମାନେ ସୋମନାଥ ଦେବଙ୍କ ପାଇଁ ଏକ ମେଳଣ କରିବେ। ସେତେବେଳେ ସେମାନଙ୍କ ପାଖରେ ମାତ୍ର ୧ ଟଙ୍କା ୪ ଅଣା ପାଇସା ଥାଏ। ତାରି ବିନିମୟରେ କେତୋଟି ଛୋଟ ଛୋଟ ଆଟିକା କିଣି ହରିରାଜପୁରର ସମସ୍ତଙ୍କ ଘରେ ଦେଇ କହିଥିଲେ ଯେ ସେମାନେ ରୋଷେଇ ପୂର୍ବରୁ ସେଥିରେ ଦୁଇଓଳି ମୁଠିଏ ଚାଉଳ ପକାଇବେ ଓ ପ୍ରତି ସପ୍ତାହରେ ତାହା ସଂଗ୍ରହ କରାଯିବ। ତାହାହିଁ କରାଗଲା। ସେହି ଚାଉଳର ବିକ୍ରୟ ଅର୍ଥରେ ଚତୁଃପାର୍ଶ୍ୱରେ ବିରାଜିତ ୫ଟି ବିଗ୍ରହଙ୍କୁ ଆଣି ଏକ ମେଳଣ ଆରମ୍ଭ କରାଗଲା। ତାକୁହିଁ କୁହାଗଲା ପଞ୍ଚୁଦୋଳ ଯାତ୍ରା ଓ ସେଠାକୁ ଅଣାଯାଇଥିବା ୫ଟି ବିଗ୍ରହ ହେଲେ ହରିରାଜପୁରର ଶ୍ରୀ ସୋମନାଥ ଦେବ, ବୁଢ଼ାପଡ଼ା ଗ୍ରାମର ଶ୍ରୀ ସୋମନାଥ ଦେବ, କଣ୍ଟିଆର ଶ୍ରୀ ବାଲୁକେଶ୍ୱର ଦେବ, ଛଣଘରର ଶ୍ରୀ ଗଡ଼େଶ୍ୱର ଦେବ ଓ ଭିଁସର ଗ୍ରାମର ଶ୍ରୀ ଶ୍ରୀ ନୀଳକଣ୍ଠେଶ୍ୱର ଦେବ। ସେହି ଦୃଷ୍ଟିରୁ ଦେଖିଲେ ହରିରାଜପୁର ମେଳଣର ପ୍ରତିଷ୍ଠାତା ହେଉଛନ୍ତି ବାବାଜୀ ଗୋବର୍ଦ୍ଧନ ଦାସ ଓ ନିତେଇ ସାହୁ। ହରିରାଜପୁରର ଏହି ପଞ୍ଚୁଦୋଳ ଯାତ୍ରା ପ୍ରଥମେ ୧୬୩୭ ମସିହା ଚୈତ୍ରମାସ କୃଷ୍ଣ ପକ୍ଷର ପଞ୍ଚମୀଦିନ ଆରମ୍ଭ ହୋଇଥିଲା ଭିଁସର ଗ୍ରାମରେ। ଏଠାକୁ ଉପରୋକ୍ତ ୫ଟି ବିଗ୍ରହ ବିମାନରେ ବିରାଜମାନ କରୁଥିଲେ। ମାତ୍ର ୧୯୫୦ ମସିହାଠାରୁ ଏହି ବିମାନର ସଂଖ୍ୟା ୭୫କୁ ବୃଦ୍ଧିପ୍ରାପ୍ତ ହୋଇଛି। ବିମାନ ଓ ଏଥିସହିତ ଜନସମାଗମର ଅଭିବୃଦ୍ଧି ପାଇଁ ଯାତ୍ରାଟି ସେହି ମସିହାଠାରୁ ଭିଁସର ଗ୍ରାମରୁ ବର୍ତ୍ତମାନ ମେଳଣ ହେଉଥିବା ସ୍ଥଳକୁ ସ୍ଥାନାନ୍ତରିତ ହୋଇଛି। ଶ୍ରୀ ଦିବ୍ୟସିଂହ ଚମ୍ପତିଙ୍କ ଲେଖାରୁ ଜଣାଯାଏ ଯେ ୧୯୮୩ ମସିହାରେ କୁଦିଆରୀ ଗ୍ରାମର କେତେକ ଉଦ୍ୟୋକ୍ତା ଦଶ ଦୋଳ ଯାତ୍ରା ଆରମ୍ଭ କରିଥିଲେ। ତେଣୁ ଉଭୟ ଗ୍ରାମବାସୀଙ୍କ ମଧ୍ୟରେ ତିକ୍ତତା ସୃଷ୍ଟି ହୋଇଥିଲା। ମାତ୍ର ସେହି ୧୯୮୩ ମସିହା ମାର୍ଚ୍ଚ ୨୭ ତାରିଖ ଦିନଉଭୟ ଗ୍ରାମର ୫ ଜଣ ଲେଖାଏଁ ଭଦ୍ରବ୍ୟକ୍ତିଙ୍କୁ ନେଇ ଆପୋଷ ମିଳାମିଶା

(୧)ଦିବ୍ୟସିଂହ ଚମ୍ପତି : ଶ୍ରୀ ସୋମନାଥ, ପୃ.୯

Digitized by srujanika@gmail.com

ନିମନ୍ତେ ଏକ ଶାନ୍ତି କମିଟି ଗଠନ କରାଯାଇଥିଲା। ଫଳରେ ତା'ପରଠାରୁ ଯାତ୍ରା ସୁରୁଖୁରୁରେ ସମ୍ପାଦିତ ହୋଇଆସୁଛି।

ଏହି ପଞ୍ଚୁଦୋଳ ଯାତ୍ରାରେ ଆତସବାଜୀ ପ୍ରତୀଯୋଗିତା ଏକ ମୁଖ୍ୟ ସ୍ଥାନ ଗ୍ରହଣ କରିଥାଏ। ରାତିରେ ବାଣ ମରାଯିବା ସ୍ଥାନଟି ମୁଖରିତ ହୋଇଉଠେ। ଉତ୍ସବ ମୁଖର ପରିବେଶରେ ସ୍ଥାନଟି ମଧ୍ୟ ମହିମାନ୍ୱିତ ହୁଏ। ଅବଶ୍ୟ ଭୁବନେଶ୍ୱରରେ ଏତେ ବର୍ଷ ରହି ମଧ୍ୟ ମୁଁ ଏହି ଅନୁପମ ସୌନ୍ଦର୍ଯ୍ୟ ଉପଭୋଗ କରିପାରି ନାହିଁ।

ଯାତ୍ରାଟି ପୁରୀ ଜିଲ୍ଲାର ପ୍ରାୟ ୧ ମାସ ଧରି ଏକ ମୁଖ୍ୟ ବ୍ୟବସାୟ କେନ୍ଦ୍ରରେ ପରିଣତ ହୁଏ। ଏଥିରେ ବାହାରୁ ବହୁ ବ୍ୟବସାୟୀ ଯୋଗ ଦିଅନ୍ତି। କାଠ ବାଉଁଶ ଠାରୁ ଆରମ୍ଭ କରି ପଥର ଜିନିଷ ସମେତ ବହୁ କୃଷିଉପକରଣ ଓ ଗୃହୋପକରଣ ଜିନିଷ ଏଠାରେ ବିକ୍ରୟ ହୁଏ। ବର୍ତ୍ତମାନ ବଳଦ ବ୍ୟବସାୟ ଏହି ମେଳଣର ମୁଖ୍ୟ ବ୍ୟବସାୟ ହୋଇଛି।

## ମନୋହରା ମେଳଣ

ପିପିଲି ଅଞ୍ଚଳର ମନୋହରା ମେଳଣ ଅନ୍ୟ ଏକ ଜନପ୍ରିୟ ଯାତ୍ରା। ଏହା ମଙ୍ଗଳପୁର ପଞ୍ଚାୟତ ଅନ୍ତର୍ଗତ ମନୋହରା ଗ୍ରାମରେ ଅନୁଷ୍ଠିତ ହୋଇଥାଏ। ପ୍ରତିବର୍ଷ ବୈଶାଖ ମାସ କୃଷ୍ଣ ପକ୍ଷ ଦଶମୀତିଥିରୁ ଏହାର ଆରମ୍ଭ। ଏହା ଦେଢ଼ଶ ବର୍ଷରୁ ଅଧିକ ପୁରାତନ ବୋଲି ଜଣାଯାଏ। ଏହାର ପ୍ରତିଷ୍ଠାତା ହେଉଛନ୍ତି ଉକ୍ତ ଗ୍ରାମର ସ୍ୱର୍ଗତ ଗୌରାଙ୍ଗ ମହାନ୍ତି। ତାଙ୍କର ବ୍ୟକ୍ତିଗତ ଠାକୁର ଉକ୍ତ ମେଳଣର ଥାନପତି ହୁଅନ୍ତି। ମଙ୍ଗଳପୁର ପଞ୍ଚାୟତର ପ୍ରାୟ ୩୦ ବର୍ଷ ପୂର୍ବେ ଏହି ମନୋହରା ମେଳଣ ପିପିଲି ଡେଲାଙ୍ଗ ଅଞ୍ଚଳରେ ଏକ ପ୍ରମୁଖ ମେଳଣ ରୂପେ ପ୍ରସିଦ୍ଧି ଲାଭ କରିଥିଲା। କାଠ ବାଉଁଶର ଗୃହୋପକରଣ ଓ ପଥର ଜିନିଷ ଥିଲା ମୁଖ୍ୟ ବ୍ୟବସାୟ ସାମଗ୍ରୀ। ପରେ ପରେ ଗୃହପାଳିତ ପଶୁ ବିକ୍ରୟ ହେଲେ। ମାତ୍ର ଗତ ୧୦ ବର୍ଷ ହେଲା ଏହି ମେଳଣର ପ୍ରସିଦ୍ଧି ନିଷ୍ପ୍ରଭ ହୋଇ ପଡ଼ିଛି। ୪୦ଟି ବିଗ୍ରହ ପରିବର୍ତ୍ତେ ଏବେ ମାତ୍ର ୧୪ଟି ବିଗ୍ରହ ଯୋଗ ଦେଉଛନ୍ତି। ଏଥି ସହିତ ବ୍ୟବସାୟ ମଧ୍ୟ ହ୍ରାସ ପାଇଛି। ଗୃହପାଳିତ ପଶୁଙ୍କର ବିକ୍ରୟ ସମ୍ପୂର୍ଣ୍ଣ ରୂପେ ବନ୍ଦ ହୋଇଯାଇଛି।

Digitized by srujanika@gmail.com

## ମଉଜୀବେଗ ଭାଗବତ ମେଳଣ

ରୂପଦେଈପୁର ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ମଉଜିବେଗ ଗ୍ରାମର ଭାଗବତ ମେଳଣ ଏକଦା ଏକ ବିଶିଷ୍ଟ ମେଳଣର ରୂପ ନେଇଥିଲା। ଏହାର ପ୍ରତିଷ୍ଠାତା ଥିଲେ ସ୍ୱର୍ଗତ ମହାଜନ ସତ୍ୟବାଦୀ ସାହୁ, ଗଦାଧର ସାହୁ, ମନମୋହନ ସାହୁ ଓ ଶ୍ୟାମ ସୁନ୍ଦର ସାହୁ। ଏହା ପ୍ରତିବର୍ଷ ବୈଶାଖ ମାସ ଶୁକ୍ଳପଞ୍ଚମୀ ତିଥିରେ ହୁଏ। ମେଳଣଟି ଦୁଇ ଦିନ ଧରି ବସେ ଓ ଏଥିରେ ବଳଙ୍ଗା ଅଞ୍ଚଳରୁ ୫୦ଟି ବିଗ୍ରହ ଯୋଗ ଦେଇଥାନ୍ତି।

ଏହି ମେଳଣରେ ନାଗାନାଚ ଏକ ଆକର୍ଷଣୀୟ ସ୍ଥାନ ଅଧିକାର କରିଥିଲା। ଏହା ମଧ୍ୟ କାଠ, ବାଉଁଶ ଆଦି ଗୃହପୋକରଣର ମୁଖ୍ୟ ବ୍ୟବସାୟ କେନ୍ଦ୍ର ରୂପେ ପ୍ରସିଦ୍ଧି ଲାଭ କରିଥିଲା। ମାତ୍ର ଏହି ପୁରାତନ ମେଳଣଟି ଏବେ ବନ୍ଦ ହୋଇଯାଇଛି। ଭାଗବତ ବିଗ୍ରହ ସାହୁ ପରିବାରର ନିଜସ୍ୱ ହୋଇଥିବାରୁ ତାଙ୍କର ସମ୍ପତ୍ତି ଭାଇମାନଙ୍କ ମଧ୍ୟରେ ଭାଗ ଭାଗ ହେବା ଫଳରେ ଅର୍ଥାଭାବରୁ ମେଳଣଟି ବନ୍ଦ ହୋଇଯାଇଥିବାର ଜଣାଯାଏ।

## ଅଠରଭାଗ ମେଳଣ

ପିପିଲି ବ୍ଲକ୍‌ରେ ଅଠରଭାଗ ମେଳଣ ଅନ୍ୟ ଏକ ଲବ୍ଧପ୍ରତିଷ୍ଠ ଯାତ୍ରା ଭାବେ ବିବେଚିତ। ଏହା ପୋପରଙ୍ଗା ପଞ୍ଚାୟତ ଅନ୍ତର୍ଗତ ଅଠରଭାଗ ଗ୍ରାମରେ ଅନୁଷ୍ଠିତ ହୋଇଥାଏ। ପିପିଲି ବଜାରଠାରୁ ଦୁଇ କିଲୋମିଟର ଦୂରରେ ପିପିଲି-ଜଟଣୀ ରାସ୍ତା କଡ଼ରେ ଏହି ଗ୍ରାମର ଅବସ୍ଥିତି। ଗ୍ରାମର ନାମାନୁସାରେ ଏହା ଅଠରଭାଗ ମେଳଣ ନାମରେ କଥିତ।

ମେଳଣଟି ପ୍ରାୟ ଦୁଇଶହ ବର୍ଷର ପୁରାତନ ବୋଲି ଜଣାଯାଏ। ଏହା ଅକ୍ଷୟ ତୃତୀୟାର ତିନିଦିନ ପରେ ଅର୍ଥାତ୍ ବୈଶାଖ ମାସ ଶୁକ୍ଳ ଷଷ୍ଠୀ ତିଥିରେ ଅନୁଷ୍ଠିତ ହୁଏ। ଏହା ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ଛାଟେଶ୍ୱରୀଙ୍କ ମନ୍ଦିର ସମ୍ମୁଖରେ ବସେ। ଏଥିରେ ୨୫ଟି ବିମାନ ଯୋଗ ଦିଅନ୍ତି। ପ୍ରଥମେ ଏହା ଦୁଇଦିନ, ପରେ ୩ ଦିନ ଓ ବର୍ତ୍ତମାନ ୪ ଦିନ ଯାତ୍ରା ଲାଗୁଛି। ୩୦ ବର୍ଷ ପୂର୍ବେ ଏହି ମେଲଣ ବେଶ ଜାକଜମକରେ ହେଉଥିଲା। ଏହି ଯାତ୍ରା ମାସକ ପାଇଁ କାଠ, ବାଉଁଶ, ଗୃହପାଳିତ ପଶୁ ଓ କୃଷିପୋକରଣର ଏକ ପ୍ରଧାନ ବ୍ୟବସାୟ କେନ୍ଦ୍ର ହୋଇପଡ଼ିଥିଲା। ମାତ୍ର ଗାଁ ନିକଟରେ ଅନ୍ୟ କେତୋଟି ମେଳଣ ଅନୁଷ୍ଠିତ ହେବାପରେ ଏହାର ପ୍ରସିଦ୍ଧି ହ୍ରାସପାଇବା ସଂଗେ ସଂଗେ ବ୍ୟବସାୟ ମଧ୍ୟ ମାନ୍ଦା ପଡ଼ିଛି।

Digitized by srujanika@gmail.com

## କୁଞ୍ଜର ମେଳଣ

ପିପିଲି ଅଞ୍ଚଳର କୁଞ୍ଜର ମେଳଣ ଏକ ଉଚ୍ଚକୋଟୀର ଯାତ୍ରା ରୂପେ ଖ୍ୟାତ। ଏହା ଗୋବିନ୍ଦପୁର ପଞ୍ଚାୟତ ଅନ୍ତର୍ଗତ କୁଞ୍ଜର ଗ୍ରାମରେ ଅନୁଷ୍ଠିତ ହେଉଥିବାରୁ ଗ୍ରାମର ନାମାନୁସାରେ ଏହା କୁଞ୍ଜର ମେଳଣ ନାମରେ କଥିତ।

ଏହି ମେଳଣ ପ୍ରାୟ ଦୁଇଶହ ବର୍ଷରୁ ଅଧିକ ପୁରାତନ ବୋଲି ଜନଶ୍ରୁତି ରହିଛି।ବୈଶାଖ ମାସ କୃଷ୍ଣପକ୍ଷ ଦ୍ୱିତୀୟା ତିଥିରେ ଗ୍ରାମର ଉତ୍ତର ଭାଗରେ ଅବସ୍ଥିତ ଶ୍ରୀ ନଟବର ମହାପାତ୍ରଙ୍କର ଏକ ଆମ୍ରକୁଞ୍ଜରେ ଏହା ଅନୁଷ୍ଠିତ ହୋଇଥାଏ। ଏହି ଯାତ୍ରାର ପ୍ରତିଷ୍ଠାତା ହେଉଛନ୍ତି ସ୍ୱର୍ଗତ ଧ୍ରୁବ ମହାପାତ୍ର, ଅନନ୍ତ ମହାପାତ୍ର ଓ ଲକ୍ଷ୍ମଣ ମହାପାତ୍ର। ପରେ ପରେ ଉକ୍ତ ଗ୍ରାମର ଧନୀ ମହାନ୍ତି, ବୈଷ୍ଣବ ପ୍ରଧାନ ଓ ଭାଗବତ ଦାସ ଏହାର ପରିଚାଳନା ଦାୟିତ୍ୱ ନେଇଥିଲେ।

ପ୍ରଥମେ ଉକ୍ତ ମେଳଣକୁ ୧୫ଟି ବିଗ୍ରହ ଆସୁଥିଲେ। ଏବେ ସେମାନଙ୍କର ସଂଖ୍ୟା ୫୨କୁ ବୃଦ୍ଧିପ୍ରାପ୍ତ ହୋଇଛି। ପ୍ରାଥମିକ ଅବସ୍ଥାରେ ଏହା ଏକ କଣ୍ଢେଇ ମେଳଣ ଥିବାର ଜଣାଯାଏ। କିଛିଦିନ ପରେ ଏହା ଭାଗବତ ମେଳଣରେ ରୂପାନ୍ତରିତ ହୋଇଥିଲା। କଣ୍ଢେଇ ମେଳଣ ସମୟରେ ଏହା ଗୋଟିଏ ଦିନ, ପରେ ଦୁଇଦିନ ଓ ଭାଗବତ ମେଳଣ ହେବାଠାରୁ ତିନିଦିନ ଓ ଏବେ ଚାରିଦିନ ପର୍ଯ୍ୟନ୍ତ ଏହି ଯାତ୍ରା ଲାଗି ରହୁଛି। ବିଗ୍ରହ ଗୁଡିକ କୌଶଲ୍ୟାପୁରଠାରୁ ପିପିଲି ଶାସନ ପର୍ଯ୍ୟନ୍ତ ଗ୍ରାମଗୁଡିକରୁ ଆସି ଏହି ଯାତ୍ରାରେ ଯୋଗ ଦିଅନ୍ତି। ଜମାଣ ରାତିରେ ବାଣ ପ୍ରତିଯୋଗୀତା ଯାତ୍ରାର ଏକ ମୁଖ୍ୟ ଓ ଚିତ୍ତାକର୍ଷକ ଅଂଶ ହୋଇଛି। ଅନ୍ୟାନ୍ୟ ମେଳଣ ପରି ଏଠାରେ ମଧ କାଠ, ବାଉଁଶ ଆଦି ଗୃହୋପକରଣର ବ୍ୟବସାୟ ଚାଲେ। ବର୍ତ୍ତମାନ ଏହି ମେଳଣରେ ଗୃହପାଳିତ ପଶୁଙ୍କର ବ୍ୟବସାୟ ମୁଖ୍ୟ ବ୍ୟବସାୟ ରୂପେ ପରିଣତ ହୋଇଛି।

## ଷଷ୍ଠଣ ମେଳଣ

ଷଷ୍ଠଣ ନାମରେ କଥିତ ଦାଣ୍ଡମୁକୁନ୍ଦପୁର ଷଷ୍ଠଭାଗରେ ଏକ ଭାଗବତ ମେଳଣ ଅନୁଷ୍ଠିତ ହେଉଛି। ମେଳଣଟି ଜ୍ୟେଷ୍ଠମାସ କୃଷ୍ଣ ପକ୍ଷ ତୃତୀୟା ତିଥିରେ ପଡ଼ିଥାଏ। ଗ୍ରାମର ପୂର୍ବଦିଗରେ ବିରାଜମାନ କରିଥିବା ଗୌରୀ ଠାକୁରାଣୀଙ୍କ ପଡ଼ିଆରେ ଏହା ଅନୁଷ୍ଠିତ ହୁଏ। ଏହା ମଧ୍ୟ ଦୁଇଶହ ବର୍ଷରୁ ଉର୍ଦ୍ଧ୍ୱ ପୁରାତନ ବୋଲି ଜନଶ୍ରୁତି ରହିଛି। ପ୍ରଥମେ ବଳି ପ୍ରଧାନ ଓ ଭାଗବତ ପ୍ରଧାନ ଓ ତାପରେ ବାଞ୍ଛା ମୁଦୁଲୀ ଓ ଡମା ଦାସଙ୍କର ଆନ୍ତରିକ ଉଦ୍ୟମରେ ମେଳଣଟି ସୁରୁଖୁରୁରେ ଚାଲିଥିଲା। ଏବେ ଗ୍ରାମବାସୀଙ୍କ ଚାନ୍ଦାରେ ଯାତ୍ରାଟି ଚାଲିଛି। ନିକଟବର୍ତ୍ତୀ ଗ୍ରାମରୁ ପ୍ରାୟ ୩୫ଟି ବିଗ୍ରହ ଏଥିରେ ଯୋଗ ଦିଅନ୍ତି। ପ୍ରାୟ ୫୦ ବର୍ଷ ତଳେ

Digitized by srujanika@gmail.com

ଏହି ଯାତ୍ରାରେ ସ୍ୱର୍ଗତ ବଂଶୀଧର ସ୍ୱାଇଁ, ଶତ୍ରୁଘ୍ନ ପ୍ରଧାନ, ବାଳକୃଷ୍ଣ ମହାନ୍ତି, କୃଷ୍ଣ ଚନ୍ଦ୍ର ପରିଡ଼ା, ବଂଶୀଧର ପ୍ରଧାନ, ସପନି ଘଡ଼େଇ, ଉଦୟନାଥ ଦାସ ଓ ରାମ ଚନ୍ଦ୍ର ଦାସଙ୍କ ପ୍ରଚେଷ୍ଟାରେ ଗୃହପାଳିତ ପଶୁଙ୍କର ବ୍ୟବସାୟ ଆରମ୍ଭ ହୋଇଥିଲା। ବର୍ଷାଋତୁ ଆରମ୍ଭରେ ମେଳଣଟି ପଡୁଥିବାରୁ, ପ୍ରତିକୂଳ ପାଗ ଓ ଡାଲୁଅ ଧାନ ଚାଷର ପ୍ରସାର ହେତୁ ବର୍ତ୍ତମାନ ଏହି ମେଳଣର ବ୍ୟବସାୟ ହ୍ରାସ ପାଇଛି।

## ଅନ୍ୟାନ୍ୟ ସମ୍ପ୍ରଦାୟ ଦ୍ୱାରା ପାଳିତ ପର୍ବପର୍ବାଣି

କେବଳ ଉପରୋକ୍ତ ଯାତ୍ରା ଓ ପର୍ବପର୍ବାଣି ପାଇଁ ଯେ ପିପିଲି ଇତିହାସ ପୃଷ୍ଠାରେ ପ୍ରସିଦ୍ଧି ଲାଭ କରିଛି, ତା ନୁହେଁ, ଅନ୍ୟ ସମ୍ପ୍ରଦାୟ ଦ୍ୱାରା ପାଳିତ କେତୋଟି ପର୍ବପର୍ବାଣୀରେ ପିପିଲି ମୁଖରିତ ହୋଇ ଆସୁଛି। ସେଗୁଡ଼ିକ ସଂକ୍ଷେପରେ ନିମ୍ନରେ ସୂଚୀତ ହୋଇଛି।

ପିପିଲିରେ ବାସକରୁଥିବା ମୁସଲମାନ ସମ୍ପ୍ରଦାୟ ବହୁବର୍ଷ ଧରି ତାଜିଆ ତିଆରି କରି ଆସୁଥିଲେ। ସେଥିରେ ହିନ୍ଦୁମାନେ ମଧ୍ୟ ଯୋଗ ଦେଉଥିବାର ଜଣାଯାଏ। ମାତ୍ର ଗତ ୧୭ ବର୍ଷ ହେଲା ତାହା ବନ୍ଦ ହୋଇଯାଇଛି। ତଥାପି ସେମାନେ ଇଦ୍ ଓ ଅନ୍ୟାନ୍ୟ ପର୍ବ ପାଳନ କରିଥାଆନ୍ତି। ନରସିଂହପୁର ଗ୍ରାମର ମୁସଲମାନ ଅଧିବାସୀ ଏପରି ଏକ ପର୍ବପାଳନ କରୁଥିବା ଅବକାଶରେ ମୁଁ ସେଠାରେ ଉପସ୍ଥିତ ଥିଲି ଓ ମୋତେ ସେମାନଙ୍କ ଆନନ୍ଦ ଉଲ୍ଲାସରେ ଭାଗନେବାର ସୁଯୋଗ ମିଳିଥିଲା। ସେଠାରେ ୬୨ ବର୍ଷ ବୟସ୍କ ମୋବାରକ ଖାଁଙ୍କ ସହ ସାକ୍ଷାତକାରରେ ତାଙ୍କର ପର୍ବପର୍ବାଣୀରେ ହିନ୍ଦୁଭାଇମାନେ ଯୋଗ ଦେଇ ସେଗୁଡ଼ିକୁ କିପରି ଅଧିକ ଉତ୍ସବ ମୁଖର କରିଥାଆନ୍ତି ତାହା ସେ ପ୍ରକାଶ କରିଥିଲେ।

ସେହିପରି ପିପିଲିର ବାସକରୁଥିବା ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ଭାଇଭଉଣୀମାନେ ସେଠାରେ ଅବସ୍ଥିତ ଗୀର୍ଜାରେ ତାଙ୍କର ପର୍ବ ପାଳନ କରିଥାଆନ୍ତି। ବିଶେଷତଃ ବଡ଼ଦିନଟି ମହାସମାରୋହରେ ପାଳିତ ହୋଇଥାଏ। ସେଦିନ ଗୀର୍ଜାର ସାଜସଜ୍ଜା ବେଶ୍ ଆକର୍ଷଣୀୟ ଓ ମନୋମୁଗ୍ଧକର ହୁଏ। ହିନ୍ଦୁମାନେ ମଧ୍ୟ ଉକ୍ତ ଉତ୍ସବରେ ଯୋଗଦେଇ ପରସ୍ପର ମଧ୍ୟରେ ଭ୍ରାତୃଭାବ ନିଦର୍ଶନ ଦେଖାଇଥାନ୍ତି।

ଏତଦ୍ ବ୍ୟତୀତ କେତୋଟି ନିର୍ଦ୍ଦିଷ୍ଟ ଗ୍ରାମରେ ଗୋଟିଏ ଗୋଟିଏ ହିନ୍ଦୁ ସମ୍ପ୍ରଦାୟର ଅଧିବାସୀମାନେ କେତୋଟି ପର୍ବ କରିଥାଆନ୍ତି। ତନ୍ମଧ୍ୟରୁ ଅଠରଭାଗ, ଆରୁହା, ଜଗନ୍ନାଥପୁର ଓ ଦାଣ୍ଡମୁକୁନ୍ଦପୁରର ଗୋପାଳଙ୍କ ଦ୍ୱାରା ଅନୁସୃତ ନଉଡ଼ି ଖେଳ ଉଲ୍ଲେଖଯୋଗ୍ୟ। ଦୋଳପୂର୍ଣ୍ଣିମା ଠାରୁ ୫ ଦିନ ସେମାନେ ବାଡ଼ିଖେଳି ଆନନ୍ଦ ଉଲ୍ଲାସରେ କଟାଇଥାଆନ୍ତି। ସେହିପରି ଜଗନ୍ନାଥପୁର ଓ ଆରୁହା ଗ୍ରାମରେ

Digitized by srujanika@gmail.com

ମହାବିଷୁବ ସଂକ୍ରାନ୍ତି ଦିନ ନିଆଁପାଟୁଆ ଯାତ୍ରା ବେଶ ଜାକଜମକରେ ପାଳନ କରାଯାଇଥାଏ। ସେଦିନ ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ନିଆଁରେ ଚାଲି ଅଧିଷ୍ଠାତ୍ରୀଦେବୀଙ୍କର କୃପାଲାଭ କରିବା ସଙ୍ଗେ ସଙ୍ଗେ ସାମାଜିକ ଜୀବନକୁ ସୁନ୍ଦର ଓ ସରସ କରିଥାଆନ୍ତି।

ଏହିପରିଭାବେ ଯୁଗେ ଯୁଗେ ପିପିଲି ଅଞ୍ଚଳର ଅଧିବାସୀ ବହୁ ଯାତ୍ରା ଓ ପର୍ବପର୍ବାଣୀ ପାଳନକରି ପରସ୍ପର ମଧ୍ୟରେ ଭାତୃଭାବ, ସଂହତି, ପ୍ରତିଯୋଗିତା ମନୋଭାବ ରକ୍ଷା କରିବା ସଂଗେ ସଂଗେ ନିଜର ସାମାଜିକ ଓ ଅର୍ଥନୈତିକ ଜୀବନକୁ ଋଦ୍ଧିମନ୍ତ କରିଅଛନ୍ତି। ଦୂର ଦୂରାନ୍ତକୁ ଯାଇ ପାରୁନଥିବା ଚାଷୀ, ନିମ୍ନ ମଧ୍ୟବିତ୍ତ ପରିବାରର ଲୋକମାନେ ବର୍ଷସାରା ଅର୍ଥସଂଚୟ କରି ଏହି ସବୁ ଯାତ୍ରାରୁ ବର୍ଷକ ପାଇଁ ଗୃହ ଓ କୃଷି ଉପକରଣ ଜିନିଷମାନ କ୍ରୟ କରିବା ସମେତ ପୁଅ ଝିଅମାନଙ୍କର ବିବାହ ଓ କର୍ଣ୍ଣବେଧ ଆଦି ସାମାଜିକ ଦାୟିତ୍ୱ ତୁଲାଇଥାଆନ୍ତି। ସେହି ସ୍ଥାନଗୁଡ଼ିକ ମଧ୍ୟ ବ୍ୟବସାୟର କେନ୍ଦ୍ର ବିନ୍ଦୁ ହୋଇଥାଏ। ସେହିସବୁ ଦୃଷ୍ଟିରୁ ବିଚାର କଲେ ପର୍ବପର୍ବାଣୀ ଓ ଯାତ୍ରାର ଭୂମିକା ଲୋକମାନଙ୍କ ସାମାଜିକ ଓ ଅର୍ଥନୈତିକ ଜୀବନରେ ବେଶ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ। ସେ ଦିଗରୁ ଇତିହାସ ପୃଷ୍ଠାରେ ପିପିଲିର ସ୍ଥାନ ମହତ୍ତ୍ୱପୂର୍ଣ୍ଣ।

## ନାଟ୍ୟକଳା

ଜୀବନକୁ ସରସ ସୁନ୍ଦର ଓ ଉପଭୋଗ୍ୟ କରିବାପାଇଁ ନାଟ୍ୟକଳା ଏକ ବଳିଷ୍ଠ ମାଧ୍ୟମରୂପେ ପରିଗଣିତ ହୋଇଥାଏ। ଏହା ମଧ୍ୟ ସଂସ୍କୃତିର ଏକ ପ୍ରଧାନ ଅଙ୍ଗ। ଖ୍ରୀଷ୍ଟପୂର୍ବ ୫ମ ଶତାବ୍ଦୀରେ ପ୍ରଥମେ ପ୍ରାଚୀନ ଗ୍ରୀସ୍‌ର ଏଥେନୀୟମାନେ ଏହି ନାଟ୍ୟକଳାର ବିକାଶ ଘଟାଇ ସମଗ୍ର ବିଶ୍ୱର ସାଂସ୍କୃତିକ ବିଭବକୁ ବର୍ଣ୍ଣାଢ୍ୟ କରିଥିଲେ। ସେ ଯାହାହେଉ ଏ ଦିଗରେ ପିପିଲି ଭୂ-ଖଣ୍ଡର ଅବଦାନ ମଧ୍ୟ କୌଣସି ଗୁଣରେ ନ୍ୟୂନ ନୁହେଁ। ନାଟ୍ୟକଳାକୁ ଦୁଇଭାଗରେ ବିଭକ୍ତ କରାଯାଇଥାଏ। ଯଥା ଅପେରା ବା ଯାତ୍ରା ଓ ଥିଏଟର। ପରଦା ନଥାଇ ଖୋଲା ରଙ୍ଗ ମଞ୍ଚରେ ଅଭିନୟକୁ ଅପେରା କୁହାଯାଉଥିବା ସ୍ଥଳେ ପରଦା ବ୍ୟବହୃତ ତିନିପଟ ରୁଦ୍ଧ ରଙ୍ଗମଞ୍ଚକୁ ଥିଏଟର କୁହାଯାଏ। ପ୍ରଥମେ ଦେଖାଯାଉ ଅପେରା କଥା।

## ଅପେରା ବା ଯାତ୍ରା

### ଉତ୍ତରାୟଣୀ ଅପେରା

ଅପେରା ବା ଯାତ୍ରା ପ୍ରଦର୍ଶନ ପାଇଁ ଅତୀତରେ ପିପିଲି ଭୂଖଣ୍ଡ ପ୍ରସିଦ୍ଧି ଲାଭ କରିଥିଲା। ଗତ ୫୦ ବର୍ଷଧରି ଏଠାରେ ଗଠିତ ଉତ୍ତରାୟଣୀ

Digitized by srujanika@gmail.com

ଅପେରା' ଓଡ଼ିଶାର ଯାତ୍ରା ଜଗତରେ ଚହଳ ସୃଷ୍ଟି କରିଛି।

ଉତ୍ତରାୟଣୀ ଅପେରା ବହୁ ଉତ୍‌ଥାନ ପତନର ବନ୍ଧୁର ପଥ ଦେଇ ଗତିକରି ଉତ୍କର୍ଷତାର ଚରମ ସୀମାରେ ଉପନୀତ ହୋଇଛି। ୧୯୩୬ ମସିହା ବିଜୟାଦଶମୀ ଦିନ ଏହି ଯାତ୍ରାର ଜନ୍ମ ଯଶୁଆପୁର ଗ୍ରାମରେ। ଏହାର ସ୍ରଷ୍ଟା ଥିଲେ ସ୍ୱର୍ଗତ ଜଗନ୍ନାଥ ମହାନ୍ତି। ସେତେବେଳେ ଏହାର ନାମ ଥିଲା 'ଯଶୁଆପୁର ରାଶ'। ମାତ୍ର ୨୧ ଜଣ କଳାକାରଙ୍କୁ ନେଇ ଏହି ଦଳ କେତେକ ଗୀତିନାଟ୍ୟ ଅଭିନୀତ କରି ପିପିଲି ଅଞ୍ଚଳରେ ବେଶ୍ ଲୋକପ୍ରିୟ ହୋଇ ପାରିଥିଲା। ମଞ୍ଚସ୍ଥ କରୁଥିବା ଗୀତିନାଟ୍ୟ ମଧ୍ୟରୁ 'ବାଲ୍ୟଲୀଳା' ଓ 'ମାନଭଂଜନ' ଗୀତିନାଟ୍ୟର ନାମ ଉଲ୍ଲେଖଯୋଗ୍ୟ।

୧୯୪୦ ମସିହାରେ ଯଶୁଆପୁର ରାଶ 'ସେବାବତୀ' ଥିଏଟରରେ ପରିଣତ ହୋଇଥିଲା। ଜଗନ୍ନାଥ ମହାନ୍ତି ନିଜ ଭାଉଜଙ୍କର ନାମାନୁସାରେ ଏହାର ନାମ ପରିବର୍ତ୍ତନ କରିଥିଲେ। ବ୍ୟବସାୟିକ ହୋଇ ଏହି ସେବାବତୀ ଥିଏଟର୍ସଟି ଦୀର୍ଘ ୭ ବର୍ଷଧରି ଭ୍ରମ୍ୟମାଣ ଅପେରା ଭାବେ ବହୁ ସ୍ଥାନରେ ଗୀତିନାଟ୍ୟ ପ୍ରଦର୍ଶନ କରି ବେଶ୍ ପ୍ରଶଂସା ଭାଜନ ହୋଇ ପାରିଥିଲା। ଏହା ଦ୍ୱାରା ପରିବେଷିତ ବିଶେଷତଃ ବୈଷ୍ଣବ ପାଣି ଓ ବାଳକୃଷ୍ଣ ମହାନ୍ତିଙ୍କ ରଚିତ ଗୀତିନାଟ୍ୟମାନ ବେଶ୍ ଜନମନ ରଂଜନ କରି ପାରିଥିଲା।

୧୯୪୭ ମସିହା ବେଳକୁ 'ସେବାବତୀ ଥିଏଟର୍ସ'ର ମାନ ଓ ଅଭିନୟ ପ୍ରଦର୍ଶନ ଚାତୁରୀରେ ପରିବର୍ତ୍ତନ ଘଟିଥିଲା। ଯଶୁଆପୁରର ଗ୍ରାମ-ଦେବତୀ ନାରାୟଣୀଙ୍କ ନାମାନୁସାରେ ସେହି ଯାତ୍ରାଦଳର ନାମ ରଖାଯାଇଥିଲା 'ନାରାୟଣୀ ଗଣନାଟ୍ୟ'। ଏଥିରେ ଗୀତିନାଟ୍ୟ ଓ ଯାତ୍ରାକୁ ମିଶାଇ ଏକ ନୂତନ ଢାଞ୍ଚାରେ ଯାତ୍ରା ପ୍ରଦର୍ଶିତ ହେଉଥିଲା। ବିଶେଷତଃ ମଞ୍ଚରେ ଆଲୋକ ସଜ୍ଜା କରାଇ ଦିବସ, ରାତ୍ରି, ଅନ୍ଧାର, ଆଲୁଅ ଓ ଯୁଦ୍ଧ କ୍ଷେତ୍ର ଆଦିର ପ୍ରଦର୍ଶନ ନାରାୟଣୀ ଗଣନାଟ୍ୟକୁ ଭୂୟସୀ ପ୍ରଶଂସା ଆଣି ଦେଇଥିଲା। ଏହା କ୍ରମାଗତ ଭାବେ ଦୀର୍ଘ ୮ ବର୍ଷଧରି ଉଚ୍ଚକୋଟୀର ଯାତ୍ରା ପ୍ରଦର୍ଶନ କରିଥିଲା।

୧୯୫୫ ମସିହାରେ ଏହି ନାରାୟଣୀ ଗଣନାଟ୍ୟରେ କିଛି ପରିବର୍ତ୍ତନ ସଂଘଟିତ ହୋଇଥିଲା। ଏହାକୁ ଯଶୁଆପୁରରୁ ସାତଶଙ୍ଖକୁ ସ୍ଥାନାନ୍ତରିତ କରାଯାଇ ସେଠାକାର ଅଧିଷ୍ଠାତ୍ରୀ ଦେବୀ ଉତ୍ତରାୟଣୀଙ୍କ ନାମାନୁସାରେ ତାର ନାମ ରଖାଯାଇଥିଲା 'ଉତ୍ତରାୟଣୀ ଅପେରା'। ଏବେ ମଧ୍ୟ ଏହା ସେହି ନାମରେ ପରିଚିତ। ୧୯୫୫ରୁ ୧୯୬୮ ପର୍ଯ୍ୟନ୍ତ ଏହାର ପରିଚାଳନା ଦାୟିତ୍ୱ ନ୍ୟସ୍ତଥିଲା ଭାଗବତ ରାୟ ଓ ଲକ୍ଷ୍ମୀଧର ମହାନ୍ତିଙ୍କ ହାତରେ। ମାତ୍ର ୧୯୬୮ ମସିହା ବେଳକୁ ଏହାର ଦାୟିତ୍ୱ ପୁଣି ଫେରିଆସିଥିଲା ଜଗନ୍ନାଥ ମହାନ୍ତିଙ୍କ ହାତକୁ। ବାର୍ଦ୍ଧକ୍ୟାବସ୍ଥା ଓ ସ୍ୱାସ୍ଥ୍ୟଗତ କାରଣରୁ ସେ ଏହି ଦାୟିତ୍ୱ ହସ୍ତାନ୍ତର କରିଥିଲେ ତାଙ୍କର ଜ୍ୟେଷ୍ଠପୁତ୍ର ନରେନ୍ଦ୍ର

Digitized by srujanika@gmail.com

ମହାନ୍ତିଙ୍କୁ। ସେ ମଧ୍ୟ ଏବେ ଏହାର ପରିଚାଳକ ଅଛନ୍ତି। ୧୯୫୫ରୁ ୧୯୭୫ ପର୍ଯ୍ୟନ୍ତ ଏହି ଉତ୍ତରାୟଣୀ ଅପେରା ନାଟକ ପରିବେଷଣ କରି ଓଡ଼ିଶାର ପୁରପଲ୍ଲୀରେ ବେଶ୍ ସୁଖ୍ୟାତି ଅର୍ଜନ କରି ପାରିଥିଲା। ଏହା ତିନିପ୍ରକାର ନାଟକ ମଞ୍ଚସ୍ଥ କରୁଥିଲା, ଯଥା ପୌରାଣିକ, ଐତିହାସିକ ଓ ସାମାଜିକ। ବିଶେଷତଃ ପୌରାଣିକ ନାଟକ 'ଭୀଷ୍ମ ପ୍ରତିଜ୍ଞା', ଐତିହାସିକ ନାଟକ 'ଛତ୍ରପତି ଶିବାଜୀ', ଭାରତର ଶେଷ ସ୍ୱାଧୀନତା ଓ ସାମାଜିକ ନାଟକ 'ଗୋଟିଏ ପଇସା' ଦର୍ଶକଙ୍କ ମନରେ ଏପରି ରେଖାପାତ କରିଥିଲା ଯେ, ଏବେ ମଧ୍ୟ ତାର ସ୍ମୃତି ଉଦ୍‌ଜୀବିତ ହୋଇ ରହିଛି।

୧୯୭୬ ମସିହା ଠାରୁ ଉତ୍ତରାୟଣୀ ଅପେରାର ବୈଶିଷ୍ଟ୍ୟ ବୃଦ୍ଧି ପାଇଛି। ତନ୍ମଧ୍ୟରୁ ଯୁଗ୍ମ ମଞ୍ଚରେ ଅଭିନୟ କୌଶଳ ପ୍ରଦର୍ଶନ ଅନ୍ୟତମ। ସେହିଠାରୁ ଅର୍ଥାତ୍ ୧୯୭୬ରୁ ପରିଚାଳକ ନଗେନ୍ଦ୍ର ମହାନ୍ତି ମଧ୍ୟ ନିଜେ ନାଟକ ରଚନା କରି ତାହା ପ୍ରଦର୍ଶନ କରୁଥିଲେ। ତାଙ୍କ ଦ୍ୱାରା ଲିଖିତ 'ଦୂରେ ଚାନ୍ଦ ଝୁରେ ଫୁଲ', 'କାଗଜଫୁଲ', 'ଆକାଶ କଇଁଆ ଚିଲିକାମାଛ' ଓ 'ଅଳିଭା ଅଶ୍ରୁ' ଆଦି ନାଟକ ତାଙ୍କ ଅପେରାର ଲୋକପ୍ରିୟତା ବୃଦ୍ଧି କରାଇଥିଲା। କେବଳ ସେତିକି ନୁହେଁ ଜଗନ୍ନାଥ ମହାନ୍ତିଙ୍କ କନିଷ୍ଠ ପୁତ୍ର ସୁରେନ୍ଦ୍ର ମହାନ୍ତି ପିପିଲି ଅଞ୍ଚଳର କଥାବସ୍ତୁ ଉପରେ ଆଧାରିତ ଦୁଇଟି ନାଟକ ରଚନା କରି ଉକ୍ତ ସ୍ଥାନର ମହତ୍ତ୍ୱ ପ୍ରତିପାଦନ କରିଥିଲେ। ସେହି ଦୁଇଟି ନାଟକ ହେଉଛି ଦାଣ୍ଡମୁକୁନ୍ଦପୁରରେ ସଂଘଟିତ ଘଟଣା ଉପରେ ଆଧାରିତ 'ଭକ୍ତ ସାଲବେଗ' ଓ ମହମ୍ମଦ ତକିଖାଁଙ୍କର ପିପିଲି ଆକ୍ରମଣ ଉପରେ ଆଧାରିତ 'କାଳିଆ ଆଖିରେ ଲୁହ'।

ଏବେ ମଧ୍ୟ ଓଡ଼ିଶା ଓ ଓଡ଼ିଶା ବାହାରେ ମଧ୍ୟପ୍ରଦେଶର ଛତିଶଗଡ଼ ଅଞ୍ଚଳ, ବଙ୍ଗଳା ଓ ବିହାରରେ ଥିବା ବିଚ୍ଛିନ୍ନାଞ୍ଚଳରେ ଉତ୍ତରାୟଣୀ ଅପେରା ବେଶ୍ ଜନପ୍ରିୟ। ୧୯୮୯ର ଯାତ୍ରା ଉତ୍ସବରେ ଏହି ଅପେରା ଶିଶୁକଳାକାର ଓ ନୃତ୍ୟ ପ୍ରଦର୍ଶନ ପାଇଁ ପୁରସ୍କୃତ ହୋଇଥିଲା। ନ୍ୟାସନାଲ ସ୍କୁଲ ଅଫ୍ ଡ୍ରାମା ଦ୍ୱାରା ଓଡ଼ିଶାର ବାଲେଶ୍ୱର ଠାରେ ଆୟୋଜିତ କର୍ମଶାଳାକୁ ଓଡ଼ିଶାର ଏହି ଏକମାତ୍ର ଅପେରା ନିମନ୍ତ୍ରିତ ହେବାର ଗୌରବ ଅର୍ଜନ କରି ପାରିଥିଲା

## ଅନ୍ୟାନ୍ୟ ଅପେରାଦଳ

ଉତ୍ତରାୟଣୀ ଅପେରା ବ୍ୟତୀତ ପିପିଲି ଅଞ୍ଚଳରେ ପୁରାତନ ଯାତ୍ରା ହିସାବରେ ପିପିଲି ବ୍ଲକର ଆରୁହା, ଶିଉବା ଓ ଡେଲାଙ୍ଗ ବ୍ଲକର ହୁମର ଓ ମନୋହରାର ଯାତ୍ରାଦଳ ପ୍ରସିଦ୍ଧି ଲାଭ କରିଥିଲା। ଏହି ଦଳଗୁଡ଼ିକ ୧୯୪୫ରୁ ୧୯୫୫ ମସିହା ପର୍ଯ୍ୟନ୍ତ ବେଶ୍ ଖ୍ୟାତି ଅର୍ଜନ କରିଥିଲା। ପିପିଲି

Digitized by srujanika@gmail.com

ଅଞ୍ଚଳସ୍ଥ ଜୟପୁର ଓ ପୋପରଙ୍ଗା ଗ୍ରାମରେ ରାମଲୀଳା ଲୋକପ୍ରିୟତା ଅର୍ଜନ କରିଥିଲା । ଏବେ ପୋପରଙ୍ଗା ଗ୍ରାମର ରାମଲୀଳାକୁ ଆଧୁନିକତା ରୂପ ଦେଇ ପ୍ରଦର୍ଶନ କରାଯାଉଛି ।

## ଥିଏଟର

ଅପେରା ବ୍ୟତୀତ ଥିଏଟର ମଧ୍ୟ ପିପିଲି ଅଞ୍ଚଳର ସାଂସ୍କୃତିକ ଜଗତକୁ ଦୀର୍ଘ ତିରିଶ ବର୍ଷ (୧୯୪୦ରୁ ୧୯୭୦) ଧରି ରୁଦ୍ଧିମନ୍ତ କରିଥିଲା । ରୂପଦେଇପୁର ପଞ୍ଚାୟତ ଅନ୍ତର୍ଗତ ବଳଙ୍ଗା ଗ୍ରାମର ବନମାଳୀ ପତିଙ୍କ ଦ୍ୱାରା ପ୍ରତିଷ୍ଠିତ ରାଧାକୃଷ୍ଣ ଥିଏଟର ଥିଲା ଏ କ୍ଷେତ୍ରରେ ଓଡ଼ିଶାରେ ପ୍ରଥମ । ଏହାର ପ୍ରଭାବ ପାଇଁ ପିପିଲି ଅଞ୍ଚଳର ଏକାଧିକ କଳାକାରଙ୍କର ଆବିର୍ଭାବ ହୋଇ ସେମାନେ ଓଡ଼ିଶାର ଜଣେ ଜଣେ ପ୍ରତିଷ୍ଠିତ ମଞ୍ଚ ଅଭିନେତା ଭାବେ ସୁନାମ ଅର୍ଜନ କରିପାରିଛନ୍ତି । ତନ୍ମଧ୍ୟରୁ କାଶୀନାଥ ସାହୁ ଅନ୍ୟତମ । ସେ ମାତ୍ର ସାତବର୍ଷ ବୟସରେ ରାଧାକୃଷ୍ଣ ଥିଏଟରରେ ଅଭିନୟ ଆରମ୍ଭ କରି ନିଜର ପ୍ରତିଭା ପାଇଁ ଖ୍ୟାତି ଲାଭ କରିପାରିଛନ୍ତି । ସେହି ଥିଏଟର ଦଳର ପ୍ରସିଦ୍ଧି ଲାଭ କରିଥିବା ଅନ୍ୟତମ ଅଭିନେତା ଥିଲେ ଦୁର୍ଗାଦାସପୁର ଗ୍ରାମର କୁଞ୍ଜବିହାରୀ ପାତ୍ର । ପୁନଶ୍ଚ ମଙ୍ଗଳପୁର ପଞ୍ଚାୟତ ଅନ୍ତର୍ଗତ ଠଣ୍ଠଣା ଗ୍ରାମର ମଧୁସୂଦନ ସାହୁ ନାମକ ଜନୈକ ବ୍ୟକ୍ତି ସେହି ରାଧାକୃଷ୍ଣ ଥିଏଟରର ଓସ୍ତାଦ (ମାଷ୍ଟର) ଭାବେ କାର୍ଯ୍ୟ କରିଥିଲେ । ପିପିଲି ଭୂଖଣ୍ଡ ଅନ୍ତର୍ଗତ ଗୋବିନ୍ଦପୁର, ତେଇଶିପୁର, ଦାଣ୍ଡମୁକୁନ୍ଦପୁର, ନୂଆ ଶାସନ ଓ ରୂପଦେଇପୁର ପ୍ରଭୃତି ଗ୍ରାମମାନଙ୍କରେ ଥିଏଟର ଅଭିନୀତ ହୋଇ ସେଠାକାର କଳାକାରମାନେ ନାଟ୍ୟକଳାକୁ ପରିପୁଷ୍ଟ କରିଥିଲେ । ସେମାନଙ୍କ ମଧ୍ୟରୁ ଲକ୍ଷ୍ମୀନାରାୟଣପୁର ଗ୍ରାମର ଦିବାକର ଦାସ, ସଙ୍ଗଲାଇ ଗ୍ରାମର କୃଷ୍ଣଚନ୍ଦ୍ର ପଣ୍ଡା, ଆରୁହା ଗ୍ରାମର ରଘୁନାଥ ବରାଳ, ଉରରା ଗ୍ରାମର ଦୁର୍ଗା ତ୍ରିପାଠୀ, କୁଞ୍ଜର ଗ୍ରାମର ସୁଦର୍ଶନ ପ୍ରଧାନ ଓ ତଇଶିପୁରର ରାମଚନ୍ଦ୍ର ଦାସଙ୍କ ନାମ ଉଲ୍ଲେଖଯୋଗ୍ୟ । ସେହିପରି ମହିଳା କଳାକାରଙ୍କ ମଧ୍ୟରୁ ସୁଧାଂଶୁ ବାଳା ମହାନ୍ତି (ପଟ୍ଟନାୟକ) ଶୈଳବାଳା ମହାନ୍ତି, ବିଳାସ କୁମାରୀ ମହାପାତ୍ର (ମହାରଣା) ଅଭିନୟ ପାଇଁ ନିଜ ନିଜ ପ୍ରତିଭାରେ ମହିମାନ୍ୱିତା । ଉପରୋକ୍ତ କଳାକାରମାନଙ୍କ ମଧ୍ୟରୁ ୮୧ ବର୍ଷ ବୟସ୍କ କାଶୀନାଥ ସାହୁ ଜଣେ ସୁପ୍ରତିଷ୍ଠିତ କଳାକାର ଓ ସେ ପିପିଲି ଭୂଖଣ୍ଡର ଗର୍ବ ଓ ଗୌରବ । ନିଜର ସଫଳ ଅଭିନୟ ପାଇଁ ସେ ୧୯୭୬ ମସିହାରେ କଳା ବିକାଶ କେନ୍ଦ୍ର, ୧୯୭୮ ମସିହାରେ ଓଡ଼ିଶା ନାଟକ ଶତବାର୍ଷିକୀ ଉତ୍ସବ, ୧୯୭୯ ମସିହାରେ ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ପୁରସ୍କୃତ ହେବା ସଙ୍ଗେ ସଙ୍ଗେ ପ୍ରଶଂସା ପତ୍ର ଲାଭ କରିଛନ୍ତି ।

Digitized by srujanika@gmail.com

## ପାଲା

ପିପିଲି ଭୂଖଣ୍ଡରେ ପାଲାର ସେପରି କିଛି ଉଲ୍ଲେଖନୀୟ ବିକାଶ ଘଟିଥିବାର ଦେଖାଯାଏ ନାହିଁ। ସମ୍ଭବତଃ ଏ ଅଞ୍ଚଳର ଅଧିବାସୀମାନେ ଅପେରା ଓ ଥିଏଟର ପ୍ରତି ଅଧିକ ଆକର୍ଷିତ ହୋଇ ପାଲା ଶିଖିବା ଦିଗରେ ଆଗ୍ରହ ପ୍ରକାଶ କରି ନାହାନ୍ତି। ମାତ୍ର ପାଲା ଦେଖି ଆନନ୍ଦ ଉପଭୋଗ କରିବାରେ ଏ ଅଞ୍ଚଳର ଲୋକେ ପାଲା ପ୍ରତିଯୋଗିତା କରାଇଥାନ୍ତି। ଭଲ ଭଲ ଗାୟକ ଆଣି ବାଦୀପାଲା କରାଇବାରେ ଗୋବିନ୍ଦପୁର, ହଳଦିବସନ୍ତ, ସିଉଳା, ହରିଅନ୍ତା, କଣ୍ଡାପଡ଼ା, ନୂଆଶାସନ ଓ ଡେଲାଙ୍ଗ ଷ୍ଟେସନବଜାରର ମଞ୍ଚଗୁଡ଼ିକ ଏହି ଅଞ୍ଚଳରେ ପ୍ରସିଦ୍ଧ। ଏବେ ମଧ୍ୟ କେତେକ ଗ୍ରାମରେ ପ୍ରତିବର୍ଷ ନିୟମିତ ବାଦୀପାଲା ଅନୁଷ୍ଠିତ ହୋଇ ଆସୁଛି। ଶତ ତାରକା ଥାଇ ମଧ୍ୟ ଗୋଟିଏ ଚନ୍ଦ୍ର ଅନ୍ଧାରକୁ ଦୂରକଲା ଭଳି ସୁରଙ୍ଗପୁର ଗ୍ରାମର ବଳଭଦ୍ର ପଣ୍ଡା ନିଜର ପ୍ରତିଭା ବଳରେ ଓଡ଼ିଶାର ଜଣେ ସ୍ୱନାମଧନ୍ୟ ପାଲାଗାୟକ ହୋଇ ପାରିଛନ୍ତି। ଭାଗବତର କଥାବସ୍ତୁ ଉପରେ ତାଙ୍କର ଗଭୀର ଜ୍ଞାନ ଥିବାର ଜଣାଯାଏ। ତାଙ୍କ ବ୍ୟତୀତ ନିଜଗଡ଼ କୁରୁକିର କାଳିନ୍ଦୀ ପାତ୍ର, ମାଧିପୁରର ରାଜକିଶୋର ସାହୁ, ଖେଲାରର ପ୍ରଫୁଲ୍ଲ ମହାରଣା, ଦେଉଳୀର କାଶୀନାଥ ଜେନା, କଞ୍ଚର ଗାମର ଲିଙ୍ଗରାଜ ଚଇନି , ଉଭରା ଗ୍ରାମର ଦୁର୍ଗା ତ୍ରିପାଠୀ ଓ ବାରିମୂଳ ଗ୍ରାମର ହରିହର ସାମନ୍ତରାୟ ଖ୍ୟାତି ଅର୍ଜନ କରିଛନ୍ତି।

## ପାଇକ ଆଖଡ଼ା

ପିପିଲି-ଡେଲାଙ୍ଗ ଏକ ପାଇକ ଅଧ୍ୟୁଷିତ ଅଞ୍ଚଳ ହୋଇଥିବାରୁ ଅତୀତରେ ଏଠାରେ ପାଇକ ଆଖଡ଼ାର ଆଶାନୁରୂପ ବିକାଶ ଘଟିଥିଲା। ମାତ୍ର ଏବେ ଏ ଦିଗରେ ଏହାର ଉନ୍ନତି ପାଇଁ କେହି ବିଶେଷ ଭାବେ ଦୃଷ୍ଟି ଦେବାର ଜଣାଯାଉ ନାହିଁ। ପାଇକ ଆଖଡ଼ା ଉପରେ ଏକ ବର୍ଣ୍ଣନା ଦେବା ପୂର୍ବରୁ ପାଇକ ସଂପ୍ରଦାୟ ଉପରେ କିଞ୍ଚିତ୍ ଆଲୋକପାତ କରିବା ପ୍ରାସଙ୍ଗିକ ହେବ।

ପାଇକ ଶବ୍ଦଟି ସଂସ୍କୃତ ଶବ୍ଦ 'ପଦାତିକ'ର ଅପଭ୍ରଂଶ ହୋଇଥିବାର ଜଣାଯାଏ। ସେମାନଙ୍କୁ ଇଂରାଜୀରେ Foot Soldier ବୋଲି କୁହାଯାଏ। ସେମାନେ କେବଳ ସ୍ଥଳ ଭାଗରେ ଯୁଦ୍ଧ କରିଥାନ୍ତି। ମାତ୍ର ଓଡ଼ିଶାରେ 'ପାଇକ' କହିଲେ କେବଳ ମାତ୍ର ହିନ୍ଦୁ ଓ କରଦ (ଗଡ଼ଜାତ) ରାଜ୍ୟର ସୈନ୍ୟଙ୍କୁ ବୁଝାଇଥାଏ। ଅତୀତରେ ପ୍ରତ୍ୟେକ ରାଜା ନିଜ ନିଜର ରାଜ୍ୟକୁ ଶତ୍ରୁ ଆକ୍ରମଣରୁ ରକ୍ଷାକରିବା ସଙ୍ଗେ ସଙ୍ଗେ ଆଭ୍ୟନ୍ତରୀଣ ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବା ପାଇଁ ଏକ ସେନାବାହିନୀର ଆବଶ୍ୟକତା ଉପଲବ୍ଧି କରିଥିଲେ। ତେଣୁ ସେମାନେ ନିଜ ନିଜ ରାଜ୍ୟର ଲୋକଙ୍କୁ ନିଯୁକ୍ତି ଦେଇ ଏକ ସେନାବାହିନୀ ଗଠନ କରିଥିଲେ। ସେହି ସେନାବାହିନୀର

Digitized by srujanika@gmail.com

ଲୋକଙ୍କୁ ପାଇକ ବୋଲି କୁହାଯାଉଥିଲା। ଏହି ପାଇକମାନେ ଯେ କେବଳ ଯୁଦ୍ଧ କରୁଥିଲେ ତା ନୁହେଁ- ସେମାନଙ୍କ ମଧ୍ୟରୁ କିଛି ରାଜ୍ୟର କେତେକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ, ରାଜବାଟୀ, ଅସ୍ତ୍ରାଗାର, କୋଷାଗାର ଓ କାରାଗାର ଆଦିର ନିରାପତ୍ତା ରକ୍ଷା କରୁଥିଲେ। ସେମାନେ କେବେ ଯୁଦ୍ଧ ନକରି ଏହି ପ୍ରକାର କାର୍ଯ୍ୟହିଁ କରୁଥିଲେ।

ଏହି ପାଇକ ସଂପ୍ରଦାୟର ସୃଷ୍ଟି କେବେ ତାହା ସଠିକ ଭାବେ କହି ହେବନାହିଁ। ତଥାପି ଏହା ଏକାଦଶ ଶତାବ୍ଦୀର ଗଙ୍ଗବଂଶ ରାଜତ୍ୱରେ ସୃଷ୍ଟି ହୋଇ ପାରିଥାଏ। ଅବଶ୍ୟ ତା ପୂର୍ବରୁ ରାଜାମାନେ ଯେ ଯୁଦ୍ଧ କରୁନଥିଲେ କି ତାଙ୍କର କୌଣସି ସୈନ୍ୟବାହିନୀ ନଥିଲା ତା ନୁହେଁ, ମାତ୍ର ଗଙ୍ଗ ବଂଶର ରାଜାମାନେ ଏକ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ଦିଗରେ ବ୍ରତୀ ହୋଇଥିବାରୁ. ବିଧିବଦ୍ଧ ଭାବେ ଏକ ଶକ୍ତିଶାଳୀ ସେନାବାହିନୀ ଗଠନର ଅବଶ୍ୟକତା ଉପଲବ୍ଧି କରିଥିଲେ। ଏଥିସହିତ ସେମାନେ ସୈନ୍ୟଙ୍କର ନିଯୁକ୍ତି, ଶୃଙ୍ଖଳା, ଆଚରଣ ବିଧି ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ। ସେଥିପାଇଁ ନିଜ ରାଜ୍ୟର ଲୋକଙ୍କୁ ନେଇ ଏକ ସୈନ୍ୟବାହିନୀ ଗଠନ କରି ତାହାର ନାମ ରଖିଥିଲେ ପାଇକ। ଏ ସଂପର୍କରେ ଆମେ କହ୍ନାଇ ଚମ୍ପତି ରାୟଙ୍କ ଲିଖିତ ସମରଶାସ୍ତ୍ର (ପାଇକ ଖେଦା) ପୁସ୍ତକରେ କିଛି ସୂଚନା ପାଇଥାଉଁ। ସେ ଉକ୍ତ ପୁସ୍ତକର ରଚନା ୧୬୨୨ ଖ୍ରୀଷ୍ଟାବ୍ଦରେ ଆରମ୍ଭକରି ୧୬୨୪ ଖ୍ରୀଷ୍ଟାବ୍ଦରେ ସମାପ୍ତ କରିଥିଲେ।

ଏବେ ଦେଖାଯାଉ ପାଇକମାନଙ୍କର ନିଯୁକ୍ତି। ସେ ବିଷୟରେ କହ୍ନାଇ ଚମ୍ପତି ରାୟ ଏକ ବର୍ଣ୍ଣନା ଦେଇଛନ୍ତି। ସେମାନଙ୍କୁ ନିର୍ବାଚନ କରୁଥିଲେ ଗ୍ରାମର ଭୋଇମୂଳ ଓ ନିଯୁକ୍ତି ଦେଉଥିଲେ ନିଜେ ରାଜା। ଏଥିପାଇଁ ବିଧିବଦ୍ଧ ନିୟମ ପ୍ରଣୟନ କରାଯାଇଥିଲା। ବ୍ରାହ୍ମଣ ବ୍ୟତୀତ ଅନ୍ୟ ଯେ କୌଣସି ଜାତିରୁ ପାଇକଙ୍କୁ ନିଯୁକ୍ତି ଦିଆଯାଉଥିଲା। ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଚଷା ବା ଖଣ୍ଡାୟତ। ୨୦ ବର୍ଷ ବୟସ ନ ହେଲେ ଜଣେ ପାଇକ ହୋଇ ପାରୁ ନଥିଲା କି ୪୦ ବର୍ଷ ପାର ହେଲେ ପାଇକ ଭାବେ ରହିପାରୁ ନଥିଲା। ୨୦ ବର୍ଷ ହେବା ପୂର୍ବରୁ ଯୁବକମାନେ ଆଖଡ଼ାରେ ଯୋଗ ଦେଉଥିଲେ। ଏସବୁର ବର୍ଣ୍ଣନା ଦିଆଯାଇଛି ପାଇକ ଖେଦାରେ। ସଂପୃକ୍ତ ପଂକ୍ତିଗୁଡ଼ିକ ଏଠାରେ ଉଦ୍ଧାର କରାଗଲା।

"ବ୍ରାହ୍ମଣ ପଣ୍ଡା ଆବର ସାଆନ୍ତ ଶାସନି
ଭୀମ ସମବୀର ହେଉ ପାଇକ ନଘେନି।"

* * * * *

Digitized by srujanika@gmail.com

''ଦିକୋଡ଼ି ପୂରିବା ପରେ ଯୁଦ୍ଧକୁ ନଯିବ,
ଏଣୁ ଉଣା ହେଲେ (୨୦ ବର୍ଷ) ଗ୍ରାମେ ଆଖଡ଼ା କରିବ।''

* * * * * *

''ଚାରିଗ୍ରାମେ ସାରଯେହୁ ସେହି ଭୋଇମୂଳ,
ଗ୍ରାମ ପାଇକମାନଙ୍କ ସେହି ଜାଣ ମୂଳ।''(୨)

ପାଇକମାନଙ୍କର ପୋଷାକ କଅଣ ଥିଲା, ତା'ର ଏକ ବର୍ଣ୍ଣନା ମଧ୍ୟ ପାଇକ ଖେଦାରେ ଦିଆଯାଇଛି। ସେମାନେ ଏକ ସ୍ୱତନ୍ତ୍ର ପ୍ରକାରର ପୋଷାକ ପରିଧାନ କରିଥିଲେ। ଶୀଘ୍ର ଗତିକରିବା ସଂଙ୍ଗେ ସଂଙ୍ଗେ ନିଜକୁ ନିରାପଦ ରଖିବା ପାଇଁ ଏଗୁଡ଼ିକ ଉଦ୍ଦିଷ୍ଟ ଥିଲା।କେତେକ କ୍ଷେତ୍ରରେ ସେମାନେ ଜଂଘଠାରୁ ବକ୍ଷ ପର୍ଯ୍ୟନ୍ତ ଲୁହାଚେନ୍‌ରେ ତିଆରି ଏକ ଆବରଣ ଓ ତା'ଉପରେ ଏକ ଗେଞ୍ଜି ଓ ମଥାରେ ଟୋପି ପିନ୍ଧୁଥିଲେ। ଗେଞ୍ଜି ଓ ଟୋପି ବାଘ ବା ହେଟା ବାଘ ଛାଲରେ ତିଆରି କରାଯାଉଥିଲା। କମରରେ ମଧ୍ୟ ସେମାନେ ପଶୁ-ଲାଙ୍ଗୁଡ଼ରେ ଏକ ପଟି ପିନ୍ଧୁଥିଲେ। ଏତଦ୍ ବ୍ୟତୀତ ସେମାନେ କାଣି କଛାମରା ଏକ ଲୁଗା ପରିଧାନ କରୁଥିଲେ। ତାକୁ କୁହାଯାଉଥିଲା କାଛଟା। ସମ୍ଭବତଃ ପାଇକମାନେ ବ୍ୟବହାର କରୁଥିବା କାଛଟାରୁ 'ପାଇକଛା' ଶବ୍ଦ ଉଦ୍ଭବ ହୋଇଛି। ଏତଦ୍ ବ୍ୟତୀତ ସେମାନେ କେତୋଟି ଅଳଂକାର ବ୍ୟବହାର କରୁଥିବାର ଜଣାଯାଏ।

ଏବେ ଦେଖାଯାଉ ଯୁଦ୍ଧ କ୍ଷେତ୍ରରେ ପାଇକମାନେ କାହାଦ୍ୱାରା ପରିଚାଳିତ ହେଉଥିଲେ ଓ ସେମାନଙ୍କର ପ୍ରକାର ଭେଦ କଅଣ ଥିଲା। ପ୍ରତ୍ୟେକ ରାଜ୍ୟରେ ମୁଖ୍ୟ ସେନାପତି ଥିଲେ ନିଜେ ରାଜା। ମାତ୍ର ଯୁଦ୍ଧରେ ସାମରିକ କାର୍ଯ୍ୟ ଚଳାଇବା ପାଇଁ ଅନ୍ୟଜଣେ ଉଚ୍ଚ ପଦସ୍ଥ କର୍ମଚାରୀ ଥିଲେ। ତାକୁ କୁହାଯାଉଥିଲା ବକ୍ସି କେତେକ ରାଜ୍ୟରେ ତାକୁ 'ସର୍ଦ୍ଦାର' କୁହାଯାଉଥିଲା। ସାମରିକ କ୍ଷେତ୍ରରେ ତାଙ୍କ ସ୍ଥାନ ଥିଲା ରାଜାଙ୍କ ପରେ। ବକ୍ସିଙ୍କ ଅଧୀନରେ ଅନ୍ୟ କେତେ ଜଣ ସାମରିକ କର୍ମଚାରୀ ରହିଥିଲେ। ଠିକ୍ ତାଙ୍କ ତଳେ ଥିବା କର୍ମଚାରୀ, ଦଳ ବେହେରା କଥିତ ହୋଇଥିଲେ। ତାଙ୍କ ତଳେ ଥିଲେ ଦଳେଇ ଓ ତାଙ୍କ ତଳେ ଥିଲେ ନାୟକ ଏବଂ ସର୍ବନିମ୍ନରେ ଥିଲେ ପାଇକ। ଦଳବେହେରା ଥିଲେ ଗୋଟିଏ ପ୍ରଗଣାରେ ଥିବା ସମସ୍ତ ଗଡ଼ ବା ଦୁର୍ଗର ମୁଖ୍ୟ। ଗଡ଼ରେ ବହୁ ସଂଖ୍ୟକ ପାଇକ ରହୁଥିଲେ। ସେହିପରି ଗୋଟିଏ ଗଡ଼ର ଅଧିକାରୀ ଥିଲେ ଦଳେଇ। ନାୟକ ଥିଲେ ଗୋଟିଏ ଗାଁରେ ଥିବା ସମସ୍ତ ପାଇକଙ୍କର ମୁଖ୍ୟ। ଯୁଦ୍ଧ କରୁଥିବା

(୨)ବନ୍ଧୁର ଚମ୍ପତିରାୟ :ପାଇକଖେଦା,ପୃ.୫-୭

Digitized by srujanika@gmail.com

ପାଇକମାନଙ୍କ ମଧ୍ୟରେ ସ୍ୱତନ୍ତ୍ର ଭାବରେ ଏକ ପ୍ରକାରର ପାଇକ ରହୁଥିଲେ। ତାଙ୍କୁ କୁହାଯାଉଥିଲା 'ଛେକା ପାଇକ'। ସେମାନେ ଜଙ୍ଗଲରେ ଲୁଚିରହି ହଠାତ୍ ଆକ୍ରମଣ କରିଥାନ୍ତି। ସେମାନଙ୍କୁ ଏକ ପ୍ରକାର 'ଗରିଲା ବାହିନୀ' କୁହାଯାଇପାରେ।

ପରିଶେଷରେ ଦେଖିବା ପାଇକ ଆଖଡ଼ା। ପୂର୍ବରୁ କୁହାଯାଇଛି ୨୦ ବର୍ଷ ପୂର୍ବରୁ ଜଣେ ପାଇକ ଆଖଡ଼ାରେ ଯୋଗଦେଇ ବିଭିନ୍ନ ପ୍ରକାରର ଯୁଦ୍ଧ ବିଦ୍ୟା, ଖେଳ ଓ କସରତ ଆଦି ଶିକ୍ଷାଯାଇଥାଏ। ୪୦ ବର୍ଷପରେ ଜଣେ ପାଇକ କାର୍ଯ୍ୟରୁ ଅବ୍ୟାହତ ନେଇ ସେହି ଆଖଡ଼ାଘରେ ଅନ୍ୟମାନଙ୍କୁ ଶିକ୍ଷା ଦେଇଥାଏ। ପ୍ରତ୍ୟେକ ପାଇକ ଗ୍ରାମରେ ଗୋଟିଏ ଗୋଟିଏ ଆଖଡ଼ାଘର ବା ଯାଗାଘର ଥାଏ। ପ୍ରତ୍ୟେକ ଆଖଡ଼ା ଘରେ ୨୦ରୁ ୨୫ ଜଣ ପାଇକ ଶିକ୍ଷାଲାଭ କରିଥାନ୍ତି। ଆଖଡ଼ାର ମୁଖ୍ୟଙ୍କୁ ଗୁରୁ କୁହାଯାଏ। ପ୍ରତିଗ୍ରାମର ପାଇକଙ୍କ ସଂଖ୍ୟା ଉଭୟ ଆଖଡ଼ାର ଗୁରୁ ଓ ନାୟକଙ୍କ ନିକଟରେ ରହିଥାଏ। ଏହି ପୃଷ୍ଠଭୂମିରେ ପିପିଲି ଭୂଖଣ୍ଡର ପାଇକ ଓ ସେମାନଙ୍କର ଆଖଡ଼ା ବିଷୟରେ ଆଲୋଚନା କରିବା।

ପିପିଲି-ଡେଲାଙ୍ଗ ଅଞ୍ଚଳରେ ପାଇକ ଅଧ୍ୟୁଷିତ ଗ୍ରାମଗୁଡ଼ିକ ମଧ୍ୟରୁ ମଠସାହି, ବଳରାମପୁର, କେଶଦା, ତେଲଙ୍ଗିପୁର, ଆରୁହା, ମାଧିପୁର, ଅଠରଭାଗା, ସିଉଳା ଦରଡ଼ା, ଉକାଣିପଡ଼ା, ପାଟଣାଣୀପୁର, ଖୋରାପଦା, ରଥିପୁର, କୁସୁମାଟି, ଛଣଘର, କୁଦିଆରୀ, ଭିଁସର, ହରିରାଜପୁର, ବେରୁଆଁ, ବାଇରଙ୍ଗ, ଗଙ୍ଗପଡ଼ା, ବୁଢ଼ାପଡ଼ା, ବଡ଼ତରଡ଼ା, ଗୁଣ୍ଡଳ, ଅନନ୍ତପୁର, ଓ୍ୟାଉପଦା, ବାରିମୂଳ, ଡିଗିରିଆ, ସଢ଼ାଙ୍ଗୋଇ, ନାରଣ କ୍ଷେତା, ତୋଟାପଡ଼ା, ଶୁଆବରେଇ, ଲେମ୍ବାଉପଡ଼ା ଓ କନ୍ତିଆର ନାମ ଉଲ୍ଲେଖ ଯୋଗ୍ୟ। ଗୋବିନ୍ଦପୁର ପଞ୍ଚାୟତରେ ପାଇକସାହି ଓ ମଙ୍ଗଳପୁର ପଞ୍ଚାୟତରେ ପାଇକପଡ଼ା ନାମରେ ଦୁଇଟି ଗ୍ରାମ ଏବେ ମଧ୍ୟ ଅଛି। ଉପରୋକ୍ତ ପାଇକ ଗ୍ରାମ ମଧ୍ୟରେ ଖୋରାପଦା ଥିଲା ଦଳ ବେହେରାଙ୍କ ଗ୍ରାମ। ସୁଦାମ ମହାରଥୀ ଉକ୍ତ ଦଳବେହେରା ପଦବୀରେ ଅଧିଷ୍ଠିତ ହୋଇଥିଲେ। ତାଙ୍କପୁତ୍ର ଗୋକୁଳାନନ୍ଦ ମହାରଥୀ ଉକ୍ତ କାର୍ଯ୍ୟ କରୁ ନଥିଲେ ମଧ୍ୟ ବଂଶ ପରମ୍ପରାନୁକ୍ରମେ ସେ ଦଳ ବେହେରା ନାମରେ କଥିତ ହେଉଥିଲେ। ତାଙ୍କରି ପୁତ୍ର ହେଉଛନ୍ତି ବର୍ତ୍ତମାନ ପିପିଲି-ଡେଲାଙ୍ଗ ନିର୍ବାଚନ ମଣ୍ଡଳୀର ବିଧାୟକ ତଥା ଜନତା ଦଳର ଉପମୁଖ୍ୟ ସଚେତକ ପ୍ରଦୀପ ମହାରଥୀ। ସେହି ଦଳ ବେହେରା। ଦଳେଇ ନାୟକ ଓ ପାଇକମାନେ କାଳକ୍ରମେ ବିଭିନ୍ନ ପଦ-ପଦବୀ ଧାରଣ କରିଥିବାର ଜଣାଯାଏ। ତନ୍ମଧ୍ୟରୁ ମହାରଥୀ, ମତଗଜେନ୍ଦ୍ର, ଗଜେନ୍ଦ୍ର, ବଳବନ୍ତ ରାୟ, ବଳୀୟାର ସିଂ, ଦକ୍ଷିଣ କବାଟ, ଉତ୍ତର କବାଟ, ପାଲଟା ସିଂ, କୁନ୍ଦମାସିଂ, ମାନସିଂ, ରଣସିଂହ, ପାଟଣାଣୀ, ଛୋଟରାୟ, ରାଉତ, ଜେନା, ଚମ୍ପତି, ବୈରିଶଲ୍ୟ, ମହନ୍ତ, ଭୁଜବଳ, ବିଶ୍ୱାଳ, ସୁବୁଦ୍ଧି, ବରାଳ, ମଙ୍ଗରାଜ, ଦଳେଇ, ଦଳ ବେହେରା,

Digitized by srujanika@gmail.com

ଖଟୋଇ, ଷଣ୍ଢ, ପାତ୍ର, ଶ୍ରୀଚନ୍ଦନ ଓ ହରିଚନ୍ଦନ ଆଦି ପଦବୀର ନାମ ଉଲ୍ଲେଖ ଯୋଗ୍ୟ। ସେମାନଙ୍କର କାର୍ଯ୍ୟ ପୁସ୍ତକର ସ୍ୱଳ୍ପ କଳେବର ଦୃଷ୍ଟିରୁ ଏଠାରେ ବର୍ଣ୍ଣନା କରିବା ସମ୍ଭବପର ହେଉନଥିବାରୁ ମାତ୍ର କେତେକଙ୍କର କାର୍ଯ୍ୟ ଏଠାରେ ଦିଆଯାଇପାରେ। ଦଳ ବେହେରା ଯୁଦ୍ଧ ପରିଚାଳନା କରିବା ବ୍ୟତୀତ ଗ୍ରାମର ଶିକ୍ଷା, ସ୍ୱାସ୍ଥ୍ୟ, ଗ୍ରାମର ଶାନ୍ତି ଶୃଙ୍ଖଳା ସ୍ଥାପନ, ବିବାଦ ସମାଧାନ ଓ ଗ୍ରାମବାସୀଙ୍କର ଆର୍ଥିକ ତଥା ନୈତିକ ଆଦି ସର୍ବବିଧ ଉନ୍ନତି ନିମନ୍ତେ ଗ୍ରାମବାସୀଙ୍କଠାରେ ଦାୟୀ ରହି ରାଜସ୍ୱ ଆଦାୟ କରୁଥିଲେ। ସେହିପରି ପାଲଟାସିଂ ଗ୍ରାମର ଶାନ୍ତି ଶୃଙ୍ଖଳା ରକ୍ଷା, ରଣସିଂ ଗ୍ରାମର ଶାରୀରିକ ସାମର୍ଥ୍ୟ ଯୁବ ଗୋଷ୍ଠୀଙ୍କୁ ଆଖଡ଼ାରେ ଯୁଦ୍ଧବିଦ୍ୟା ଶିକ୍ଷାଦେବା କାର୍ଯ୍ୟରେ ନିଯୁକ୍ତ ଥିଲେ। ପୁନଶ୍ଚ ଦୁର୍ଗ ରକ୍ଷା ନିମନ୍ତେ ପଶ୍ଚିମ କବାଟ, ନୌସେନାରୂପେ ମଙ୍ଗରାଜ, ଅଶ୍ୱସେନାରୂପେ ରାଉତ, ରାଉତରାୟ, ଗଜସେନା ରୂପେ ମହନ୍ତ, ପାଟଶାଣୀ, ରଥ ବାହିନୀ ରୂପେ ମହାରଥୀ ଓ ଅନ୍ୟ ସବୁ ଉପାଧି ପଦାତିକ ବାହିନୀକୁ ବୁଝାଉଥିବାର ଅନୁମାନ କରାଯାଏ।(୩)

ଅତୀତରେ ପିପିଲି ଭୂଖଣ୍ଡସ୍ଥ ପ୍ରତ୍ୟେକ ପାଇକ ଗ୍ରାମରେ ଗୋଟିଏ ଗୋଟିଏ ଆଖଡ଼ା ଥିଲା। ବର୍ତ୍ତମାନ ତାହା ପ୍ରାୟ ବିଲୁପ୍ତ ଅଳ୍ପ କେତୋଟି ଗ୍ରାମରେ ଏହାର ସଙ୍କେତ ଦେଖିବାକୁ ମିଳେ। ସେ ଗ୍ରାମଗୁଡ଼ିକ ହେଲା- ଦରଡ଼ା, ଶିଉଳା, ଗଙ୍ଗପଡ଼ା, ଶଡ଼ାଙ୍ଗେଇ, ଜଗନ୍ନାଥପୁର, ପାଣିଦୋଳ, ନୂଆଶାସନ, ମଠସାହି, ଅନନ୍ତପୁର, କଣ୍ଟି ଓ ଗୁଜଳ।

## ଶିକ୍ଷା

ସଂସ୍କୃତିର ଅନ୍ୟ ଏକ ପରିପୂରକ ହେଉଛି ଶିକ୍ଷା। ଏ ଦିଗରେ ପିପିଲି ଭୂଖଣ୍ଡ ମଧ୍ୟ ଓଡ଼ିଶାର ଅନ୍ୟ ଅଞ୍ଚଳ ତୁଳନାରେ ପଛରେ ପଡ଼ିନାହିଁ। ଅବଶ୍ୟ ଏଠାରେ ପ୍ରଥମେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହୋଇଥିଲା ୧୮୪୯ ମସିହାରେ। ତା ପୂର୍ବରୁ ଗାଁ ଗାଁରେ ମାଟି ବଂଶ ଅବଧାନମାନେ ଚାଟଶାଳୀ ଖୋଲି ପିଲାମାନଙ୍କୁ ଶିକ୍ଷା ଦେବା ଦିଗରେ ବ୍ରତୀ ହୋଇଥିଲେ। ଏ ଦିଗରେ ସେମାନଙ୍କର ଅବଦାନ ସ୍ୱୀକାର୍ଯ୍ୟ। ସେ ଯାହାହେଉ ୧୮୩୯ ମସିହାରେ ଚାର୍ଲସ ଲେସି ନାମରେ ଜଣେ ଖ୍ରୀଷ୍ଟିୟାନ ପାଦ୍ରୀ ପିପିଲିକୁ ଆସି ଏକ ସୁ-ସମାଚାର କେନ୍ଦ୍ର ଖୋଲିବା ପରେ ଗୋଟିଏ ଶିକ୍ଷାନୁଷ୍ଠାନର ଆବଶ୍ୟକତା ଉପଲବ୍ଧି କରିଥିଲେ। ତେଣୁ ୧୮୪୯ ମସିହାରେ ସେ ଗୋଟିଏ ପ୍ରାଥମିକ (Primary) ବିଦ୍ୟାଳୟ ସ୍ଥାପନ କରିଥିଲେ ଏବଂ ତାହାହିଁ ହେଉଛି ପିପିଲି ଭୂଖଣ୍ଡରେ ପ୍ରଥମ ଶିକ୍ଷାନୁଷ୍ଠାନ।ଏହା ସେତେବେଳେ ସଣ୍ଡେ ସ୍କୁଲ (Sunday School) ନାମରେ କଥିତ ହୋଇଥିଲା। ତା'ପରେ

(୩) ଦିବ୍ୟସିଂହ ଚମ୍ପୂ : ଶ୍ରୀ ସୋମନାଥ, ପୃ.୮-୯

Digitized by srujanika@gmail.com

ମିସ୍ ପାକର ଉଇଲିଅମ୍ ବେଲୀ ନାମରେ ଜଣେ ପାଦ୍ରୀ ପିପିଲି ଆସିବାପରେ ପ୍ରାଥମିକ ବିଦ୍ୟାଳୟଟିକୁ ଏକ ବାଳିକା ପ୍ରାଥମିକ ବିଦ୍ୟାଳୟରେ ପରିଣତ କରିଥିଲେ। ଦୀର୍ଘ ୯୪ ବର୍ଷର ଘାତ ପ୍ରତିଘାତ ମଧ୍ୟରେ ଗତିକରି ୧୯୪୩ ମସିହାରେ ଏହା ଏକ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ରୂପ ନେଇଥିଲା। ତାପର ବର୍ଷ ୧୯୪୪ ମସିହା ଜାନୁୟାରୀ ୧୯ ତାରିଖ ଦିନ ଏହା ମଧ୍ୟଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇ ତା'ର ନାମ ରଖାଯାଇଥିଲା 'ମିଶନ ମଧ୍ୟଇଂରାଜୀ ବିଦ୍ୟାଳୟ'।
ସେତେବେଳେ ଏଥିରେ ୮୦ ଜଣ ଛାତ୍ର ଅଧ୍ୟୟନ କରୁଥିଲେ। ଏହା ୧୯୪୫ ମସିହାରେ ଏକ ସରକାରୀ ଅନୁଷ୍ଠାନ ରୂପେ ସ୍ୱୀକୃତି ପ୍ରାପ୍ତ ହୋଇଥିଲା। ସେହିପରି ଉକୁନ୍ଦେଶ୍ୱର ଦେଉଳି ଗ୍ରାମରେ ପ୍ରତିଷ୍ଠିତ ଚମ୍ପାଦେଇ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଏକ ପୁରାତନ ଶିକ୍ଷାନୁଷ୍ଠାନ। ପରେ ପରେ ଦାଣ୍ଡମୁକୁନ୍ଦପୁରଠାରେ ୧୯୨୫ ମସିହାରେଗୋପବନ୍ଧୁ ଦାସଙ୍କ ପ୍ରଚେଷ୍ଟାରେ ଏକ ମଧ୍ୟ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇ ୧୯୪୪ ମସିହାରେ ଏହାକୁ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କରାଯାଇଥିଲା। ବର୍ତ୍ତମାନ ଏହା ଗୋପବନ୍ଧୁ ମେମୋରିଆଲ ହାଇସ୍କୁଲ ନାମରେ ପରିଚିତ। ଏହା ପିପିଲି ବ୍ଲକ୍‌ରେ ସର୍ବପ୍ରଥମ ସରକାରୀ ହାଇସ୍କୁଲ। ଏହା ୧୯୬୯ ମସିହା ମାର୍ଚ୍ଚ ୧ ତାରିଖଠାରୁ ସମ୍ପୂର୍ଣ୍ଣ ରୂପେ ସରକାରୀ ହୋଇଛି। ଏହା ପୂର୍ବରୁ ଗୋବିନ୍ଦପୁରଠାରେ ଏକ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା ୧୮୮୩ ମସିହାରେ। ପୂର୍ବରୁ ଏହି ଦାଣ୍ଡମୁକୁନ୍ଦପୁରଠାରେ ପ୍ରତିଷ୍ଠିତ ରାମଚଣ୍ଡୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ପୀତବାସ ୟୁ.ଜି.ଏମ.ଇ. ସ୍କୁଲରେ ପରିଣତ ହୋଇଛି। ଏଠାକାର ବଦାନ୍ୟ ବ୍ୟକ୍ତି ପୀତବାସ ପଣ୍ଡା ବିଦ୍ୟାଳୟ ପାଇଁ ଜମିଦାନ କରିଥିବାରୁ ତାଙ୍କରି-ସ୍ମୃତି ଉଦ୍ଦେଶ୍ୟରେ ଏହା ନାମିତ। ୧୯୮୦ ମସିହାରେ ଏଠାରେ ଏକ ବାଳିକା ଉଚ୍ଚଇଂରାଜୀ ବିଦ୍ୟାଳୟ ସ୍ଥାପିତ ହୋଇଛି।

ପ୍ରକୃତ ପକ୍ଷେ ପିପିଲି ଅଞ୍ଚଳର ଶିକ୍ଷାର ବିକାଶ ଘଟିଛି ସ୍ୱାଧୀନତା ପ୍ରାପ୍ତିଠାରୁ। ଏ ଦିଗରେ ସ୍ଥାନୀୟ ବିଧାୟକମାନଙ୍କର ଆନ୍ତରିକ ପ୍ରଚେଷ୍ଟା ନିହିତ। ଅବଶ୍ୟ ୧୯୫୧ ମସିହାରେ ନିର୍ବାଚିତ ବିଧାୟକ ଜୟକୃଷ୍ଣ ମହାନ୍ତି ଗମନାଗମନ ଓ ପାନୀୟ ଜଳର ଆବଶ୍ୟକତା ଅଧିକ ଜରୁରୀ ବୋଲି ଉପଲବ୍ଧି କରି ସେ ଦିଗରେ ମନୋନିବେଶ କରିବା ଫଳରେ ଶିକ୍ଷାକ୍ଷେତ୍ରରେ ବିଶେଷ କିଛି ଉନ୍ନତି ପରିଲକ୍ଷିତ ହୋଇପାରି ନଥିଲା। ତଥାପି କେତେଜଣ ଶିକ୍ଷାନୁରାଗୀ ବ୍ୟକ୍ତିଙ୍କ ଉଦ୍ୟମ କ୍ରମେ ଡେଲାଙ୍ଗ ସ୍ଥିତ ବେରବୋଇଠାରେ ୧୯୫୦ରେ ଏକ ନିମ୍ନ ମୌଳିକ ବିଦ୍ୟାଳୟ ଓ ୧୯୪୫ରେ ମହତାବ ହାଇସ୍କୁଲ ସ୍ଥାପିତ ହୋଇଛି।

୧୯୫୮ ମସିହାରେ ବର୍ତ୍ତମାନର ଜବାହର ବିଦ୍ୟାପୀଠ ଜନ୍ମ ନେଇଥିଲା ଅଷ୍ଟମ ଶ୍ରେଣୀରେ ମାତ୍ର ୧୩ ଜଣ ଛାତ୍ରଙ୍କୁ ନେଇ। ସେତେବେଳେ ପିପିଲିର ବିଧାୟକ ଥିଲେ ରାମଚନ୍ଦ୍ର ପଟ୍ଟନାୟକ। ୧୯୬୭ ମସିହାରେ ବନମାଳୀ ପଟ୍ଟନାୟକ

Digitized by srujanika@gmail.com

ପିପିଲିରୁ ନିର୍ବାଚିତ ହୋଇ ଶିକ୍ଷାମନ୍ତ୍ରୀ ହୋଇଥିଲେ। ତେଣୁ ତାଙ୍କ ସମୟରେ ପିପିଲିର ଶିକ୍ଷାକ୍ଷେତ୍ରରେ ଅଶେଷ ଉନ୍ନତି ସାଧିତ ହୋଇଥିଲା। ବହୁ ଶିକ୍ଷାନୁଷ୍ଠାନ ସରକାରୀ ସ୍ୱୀକୃତି ଲାଭ କରିବା ସଙ୍ଗେ ସଙ୍ଗେ ପିପିଲି ବ୍ଲକ୍‌ରେ ୬ଟି ହାଇସ୍କୁଲ ଉନ୍ନୋଚିତ ହୋଇଥିଲା। ତା'ପରେ ବିପିନି ବିହାରୀ ଦାଶ ପିପିଲିର ବିଧାୟକ ଥିବା ସମୟରେ ତାଙ୍କ ଉଦ୍ୟମରେ ଅନ୍ୟ ଚାରିଗୋଟି ହାଇସ୍କୁଲ ଓ ୧୦ ଗୋଟି ୟୁ.ଜି.ଏମ୍.ଇ ସ୍କୁଲ ସ୍ଥାପିତ ହୋଇଥିଲା। ସେହି ସମୟରେ ମଧ୍ୟ ଜବାହର ବିଦ୍ୟାପୀଠ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇଥିଲା। ଶ୍ରୀମତୀ କିରଣଲେଖା ମହାନ୍ତି ପିପିଲିର ବିଧାୟିକା ଥିବା ସମୟରେ ୧୯୭୮ରୁ ୮୦ ମସିହା ମଧ୍ୟରେ ପିପିଲି ଅଞ୍ଚଳରେ ୪ ଗୋଟି ନୂତନ ହାଇସ୍କୁଲ ପ୍ରତିଷ୍ଠା କରାଯାଇଥିଲା। ୧୯୮୨ ମସିହାରେ ଡେଲାଙ୍ଗରେ ଗୋଟିଏ କଲେଜ ପ୍ରତିଷ୍ଠା ହୋଇ ପାରିଛି।

ମହାବିଦ୍ୟାଳୟ ମଧ୍ୟରୁ ପିପିଲି ମହାବିଦ୍ୟାଳୟ ଏହି ନିର୍ବାଚନ ମଣ୍ଡଳୀରେ ସର୍ବପୁରାତନ। ୧୯୭୮ ମସିହା ଅକ୍ଟୋବର ୧୬ ତାରିଖ ଦିନ ଏହି ଅନୁଷ୍ଠାନର ଶୁଭାରମ୍ଭ ହୁଏ ଜବାହର ବିଦ୍ୟାପୀଠରେ ମାତ୍ର ୪୫ ଜଣ ଛାତ୍ର ଛାତ୍ରୀଙ୍କୁ ନେଇ। ବିଧାୟିକା ଶ୍ରୀମତୀ କିରଣଲେଖା ମହାନ୍ତିଙ୍କ ସମୟରେ ଏହାର ଶୁଭାରମ୍ଭ ହୋଇଥିଲେ ମଧ୍ୟ ଶ୍ରୀ ବିପିନ ବିହାରୀ ଦାଶ ବିଧାୟକ ଥିବା ସମୟରେ ୧୯୮୦ ମସିହାରେ ଏହା ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ୱୀକୃତି ଲାଭ କରିଥିଲା। ଦିବାକର ଶତପଥୀ, ଗୋବିନ୍ଦ ଚନ୍ଦ୍ର ବୈଠାରୁ ଓ ଅଧ୍ୟାପକ ଶ୍ରୀଧର ସେନାପତି ଯଥାକ୍ରମେ ଏହାର ପ୍ରଥମ ସଭାପତି, ସମ୍ପାଦକ ଓ ଅଧ୍ୟକ୍ଷ ଥିଲେ। ପରେ ପରେ ଚୌଧୁରୀ ନଟବର ସାହୁ, ବିପିନ ବିହାରୀ ଦାଶ, ଗଙ୍ଗାଧର ମିଶ୍ର କ୍ରମାନ୍ୱୟରେ ଏହାର ସଭାପତି ଭାବେ ଓ ପୂର୍ଣ୍ଣଚନ୍ଦ୍ର ମିଶ୍ର, ଅର୍ଜୁନ ମହାନ୍ତି, ବିକ୍ରମ ସିଂହ ଓ ଡକ୍ଟର ଉସିମ୍ ଉଦ୍ଦିନ୍ ଅହମ୍ମଦ କ୍ରମାନ୍ୱୟରେ ଏହାର ସଂପାଦକ ରୂପେ କାର୍ଯ୍ୟ କରୁଥିଲେ। ବର୍ତ୍ତମାନ ଶ୍ରୀ ନିରାକାର ପାଣିଗ୍ରାହୀ ଏହି ମହାବିଦ୍ୟାଳୟର ଅଧ୍ୟକ୍ଷ ଅଛନ୍ତି ଓ ଏଠାରେ ୧୯୨୦ ଜଣ ଛାତ୍ର ଛାତ୍ରୀ କଳା, ବିଜ୍ଞାନ ଓ ବାଣିଜ୍ୟ ଶ୍ରେଣୀରେ ଅଧ୍ୟୟନ କରୁଛନ୍ତି।

୧୯୮୫ ପରେ ଯୁବ ବିଧାୟକ ପ୍ରଦୀପ ମହାରଥୀଙ୍କ ଉଦ୍ୟମରେ ୬ଟି ନୂଆ ହାଇସ୍କୁଲ ପ୍ରତିଷ୍ଠିତ ହୋଇ ପାରିଛି। ସେହି ମହାରଥୀଙ୍କ ପ୍ରଚେଷ୍ଟା ଫଳରେ ପିପିଲି ବ୍ଲକ୍ ଅନ୍ତର୍ଗତ କଣ୍ଟି ପଞ୍ଚାୟତରେ ଗୋଟିଏ ଆଦିବାସୀ ହଷ୍ଟେଲ, ପିପିଲି ନିର୍ବାଚନ ମଣ୍ଡଳୀରେ ଦୁଇଟି ଧନ୍ଦାମୂଳକ ବା ଭୋକେସନାଲ କଲେଜ ଓ ପିପିଲିଠାରେ ଗୋଟିଏ ଆଇନ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ପାରିଛି। ଏବେ ପିପିଲି ବ୍ଲକ୍‌ରେ ସର୍ବମୋଟ ୧୧୩ଟି ପ୍ରାଥମିକ ବିଦ୍ୟାଳୟ, ୩୪ଟି ଏମ୍.ଇ. ସ୍କୁଲ, ୧୮ଟି ହାଇସ୍କୁଲ୍, ୫ଟି ମହାବିଦ୍ୟାଳୟ ଓ ବାଳିକାମାନଙ୍କ ପାଇଁ ଗୋଟିଏ ସି.ଟି. ଟ୍ରେନିଂ ସ୍କୁଲ୍ ସ୍ଥାପିତ ହୋଇ ଓଡ଼ିଶାର ଶିକ୍ଷା ବ୍ୟବସ୍ଥାକୁ ଋଦ୍ଧିମନ୍ତ କରି ପାରିଛି।

Digitized by srujanika@gmail.com

# ସାହିତ୍ୟ

ପିପିଲି ଯେ କେବଳ ଶିକ୍ଷାକ୍ଷେତ୍ରରେ ଆଶାତୀତ ଉନ୍ନତି କରିଛି ତା'ନୁହେଁ, ସାହିତ୍ୟ କ୍ଷେତ୍ରରେ ଏହାର ଅବଦାନ ମଧ୍ୟ କୌଣସି ଗୁଣରେ ନ୍ୟୂନ ନୁହେଁ। ଗଙ୍ଗବଂଶର ପ୍ରଖ୍ୟାତ ନରପତି ଦ୍ୱିତୀୟ ନରସିଂହ ଦେବଙ୍କ ରାଜତ୍ୱରେ ଦାଣ୍ଡମୁକୁନ୍ଦପୁର ଠାରେ ଶମ୍ଭୁକର ବାଜପେୟୀ ଓ ତାଙ୍କ ପୁତ୍ର ବିଦ୍ୟାକର ବାଜପେୟୀ ନାମରେ ଦୁଇଜଣ ବିରାଟ ପଣ୍ଡିତଙ୍କର ଆବିର୍ଭାବ ହୋଇଥିଲା। ଶମ୍ଭୁକରଙ୍କ ଦ୍ୱାରା ଲିଖିତ 'ଶ୍ରାଦ୍ଧ ପଦ୍ଧତି', 'ବିବାହ ପଦ୍ଧତି', ବିଦ୍ୟାକରଙ୍କ ଦ୍ୱାରା ଲିଖିତ 'ନିତ୍ୟାଚାର ପଦ୍ଧତି' ଗୋଟିଏ ଗୋଟିଏ ଅମୂଲ୍ୟ କୃତି।(୪)। ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗକୁ ନୂଆ ଶାସନ ଗ୍ରାମର ଦୀନବନ୍ଧୁ ମହାପାତ୍ର ନାମକ ଜଣେ ବ୍ୟକ୍ତି ସଙ୍ଗୀତ ସାଧନା ପାଇଁ 'ଭକ୍ତ ଭଜନ ଚଉତିଶା', 'ସଙ୍ଗୀତ ରସାବଳୀ' ନାମକ ଦୁଇଟି ଭଜନ ପୁସ୍ତକ ରଚନା କରିଥିଲେ। ସେମାନଙ୍କର ପରବର୍ତ୍ତୀ ସମୟରେ ଅନ୍ୟ କେହି ସାରସ୍ୱତ ସାଧକ ଭକ୍ତ ଅଞ୍ଚଳରେ ଜନ୍ମ ଗ୍ରହଣ କରିଥିବାର ଜଣାଯାଏ ନାହିଁ। ମାତ୍ର ବିଂଶ ଶତାବ୍ଦୀରେ କେତେଜଣ ସାରସ୍ୱତ ସାଧକଙ୍କର ଆବିର୍ଭାବ ହୋଇଛି। ତନ୍ମଧ୍ୟରୁ ହରିଚରଣ ଗିରିଙ୍କ ନାମ ଉଲ୍ଲେଖ ଯୋଗ୍ୟ। ସେ ଜଣେ ଶିଶୁ ସାହିତ୍ୟିକ ରୂପେ ସୁବିଦିତ। ସେ ସର୍ବମୋଟ ୩୫ ଖଣ୍ଡ ପୁସ୍ତକର ପ୍ରଣେତା। ତାଙ୍କର ପ୍ରଥମ ପୁସ୍ତକ 'ପ୍ରଣୟ' ୧୯୨୮ ମସିହାରେ ପ୍ରକାଶିତ ହୋଇଥିଲା। 'କନ୍ୟାସୁନା', 'ସ୍ୱାସ୍ଥ୍ୟରକ୍ଷାରେ ପ୍ରାକୃତିକ ଚିକିତ୍ସା', 'ଯୌଗିକ ପନ୍ଥା', 'ଏକାଙ୍କିକା ସମାରୋହ', 'ଯୋଗାସନ ଓ ସ୍ୱାସ୍ଥ୍ୟ', 'ପ୍ରାଣାୟାମ ଓ ସୂର୍ଯ୍ୟ ନମସ୍କାର', 'ଯୌଗିକ ଗୃହ ଚିକିତ୍ସା', 'ସ୍ୱାମୀ ଶିବାନନ୍ଦ ସରସ୍ୱତୀ' ଓ 'ଯୌତୁକ ଜିଜ୍ଞାସା' ଆଦି ଅନ୍ୟ କେତୋଟି ତାଙ୍କର ସଫଳ କୃତି। ୧୯୯୨ରେ ପ୍ରକାଶିତ 'ଯୌତୁକ ଜିଜ୍ଞାସା' ତାଙ୍କର ଶେଷ ପୁସ୍ତକ। ତାଙ୍କର ସାରସ୍ୱତ ସାଧନା ପାଇଁ ସେ ୧୯୭୨ରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇ ଅଛନ୍ତି। ଏତଦ୍ ବ୍ୟତୀତ ଏ ଅଞ୍ଚଳର ଅଧ୍ୟାପକ ଶ୍ରୀଧର ସେନାପତିଙ୍କ ଦ୍ୱାରା ଲିଖିତ 'ଅନେକ ଆଲୋକର ଛାଇ' ଭିକାରୀ ଧଳଙ୍କ ଦ୍ୱାରା ଲିଖିତ 'ସମୟର ସ୍ୱର', 'ସବୁଦିନ ଏକା ଏକା', ଅଧ୍ୟାପକ ଦିବାକର ମାନସିଂହ ଦ୍ୱାରା ଲିଖିତ 'ଏଇ ଆଖି କେତେ ଲୁହ', 'ଧୂସର ବଳୟ' ଓ 'ବିଭକ୍ତ ପୃଥିବୀ' ଗୋଟିଏ ଗୋଟିଏ ମହାର୍ଘ କୃତି। ଅଧ୍ୟାପକ ଲକ୍ଷ୍ମଣ କୁମାର ପରିଡ଼ାଙ୍କ ଦ୍ୱାରା ଲିଖିତ 'ଭଞ୍ଜ ସାହିତ୍ୟର ନବ ଦିଗନ୍ତ', 'ଭଞ୍ଜ ସାହିତ୍ୟ ସମୀକ୍ଷଣ', 'ନିଶ ନୁହେଁ ହସ', 'ଉତ୍କଳ ପ୍ରହେଳୀ ଓ ପହଲି, 'ସମାଲୋଚନାର ଦୃଷ୍ଟି ଦିଗନ୍ତ', 'ରାମାୟଣର ଭକ୍ତି ଭାବନା' ଆଦି ରଚନାଗୁଡ଼ିକ ବେଶ୍ ଆଦର ଲାଭ କରିଛି। ୧୯୯୨ ମସିହାରେ ଶ୍ରୀମତୀ ମଞ୍ଜୁଲତା ମହାପାତ୍ରଙ୍କ ଦ୍ୱାରା ଲିଖିତ କବିତା ପୁସ୍ତକ 'ପ୍ରତିଦାନ' ପ୍ରକାଶ ପାଇଛି। ଏହି ପୁସ୍ତକ ଜଗନ୍ନାଥ ସଂସ୍କୃତି ଓ ଚେତନା ଉପରେ ଆଧାରିତ ଓ ଉତ୍ସର୍ଗୀକୃତ। ପାଠ୍ୟ ପୁସ୍ତକ ତଥା

(୪) K.C.Panigrahi, Orissa History,P.279

Digitized by srujanika@gmail.com

ଶିଶୁ ସାହିତ୍ୟ ପ୍ରଣୟନ କ୍ଷେତ୍ରରେ ଶ୍ରୀ କାଶୀନାଥ ନାୟକଙ୍କ ଭୂମିକା ଉଲ୍ଲେଖଯୋଗ୍ୟ। ସେ ଉଚ୍ଚ ପ୍ରାଥମିକ ପିଲାଙ୍କ ପାଇଁ ୩୨ ଖଣ୍ଡ ପାଠ୍ୟ-ପୁସ୍ତକ, ଶିକ୍ଷକମାନଙ୍କ ଶିକ୍ଷାଦାନ ପାଇଁ ୫ ଖଣ୍ଡ ପୁସ୍ତକ ଓ ଲୋକକଥା, ପୌରାଣିକ କାହାଣୀ,ଗଳ୍ପ ଲହରୀ ଆଦି ୧୪ ଖଣ୍ଡ ପୁସ୍ତକ ରଚନା କରି ଅଛନ୍ତି। ଏତଦ୍ ବ୍ୟତୀତ ବହୁପତ୍ର ପତ୍ରିକାରେ ତାଙ୍କର ଲେଖା ପ୍ରକାଶିତ ହୋଇଛି। ପୁସ୍ତକ ପ୍ରଣୟନ ବ୍ୟତୀତ ସାଂପ୍ରତିକ ବିଷୟରେ ବିଭିନ୍ନ ପତ୍ର ପତ୍ରିକାରେ ଯେଉଁ କେତେ ଜଣଙ୍କର ଲେଖା ପ୍ରକାଶ ପାଉଛି ତନ୍ମଧ୍ୟରୁ ସାମ୍ବାଦିକ ରମେଶ ମହାପାତ୍ର ଓ ଅଧ୍ୟାପିକା ପ୍ରତିଭା ମିଶ୍ର (ମହାରଥୀ)ଙ୍କ ନାମ ଉଲ୍ଲେଖ ଯୋଗ୍ୟ।

## ସାଂସ୍କୃତିକ ସଂସଦ

ଅନ୍ୟ ଅଞ୍ଚଳପରି ପିପିଲି ଭୂଖଣ୍ଡରେ କେତେଗୁଡ଼ିଏ ସାଂସ୍କୃତିକ ତଥା ଯୁବ ସଂଗଠନ ପ୍ରତିଷ୍ଠିତ ହୋଇଛି। ସେଗୁଡ଼ିକ ସଂପୃକ୍ତ ଅଞ୍ଚଳରେ ସଂସ୍କୃତିକୁ ପ୍ରୋତ୍ସାହନ ଦେବା ସଙ୍ଗେ ସଙ୍ଗେ ସାମାଜିକ ସଂସ୍କାର ତଥା ସେବା କାର୍ଯ୍ୟ ଆଦି ଗଠନମୂଳକ କାର୍ଯ୍ୟକ୍ରମର ଆଭିମୁଖ୍ୟ ନେଇ ପ୍ରତିଷ୍ଠିତ ହୋଇଛି। ମାତ୍ର ତନ୍ମଧ୍ୟରୁ କେତେକ ଏ ଦିଗରେ ବ୍ରତୀ ହୋଇଥିଲେ ମଧ୍ୟ ଅନ୍ୟ କେତେକ ବିଶେଷ କିଛି କରୁଥିବାର ଜଣାଯାଏ ନାହିଁ। ପୁସ୍ତକର ସ୍ୱଳ୍ପ କଳେବର ଦୃଷ୍ଟିରୁ ସେଗୁଡ଼ିକର ବିଶଦ ବିବରଣୀ ଦିଆଯାଇ ପାରୁନାହିଁ। ତନ୍ମଧ୍ୟରୁ ଦୁଇଟି ସଂସଦ ବିଷୟରେ କିଛି ତଥ୍ୟ ଏଠାରେ ଉପସ୍ଥାପନ କରାଯାଇଛି। ସେଗୁଡ଼ିକ ହେଲା- 'ପିପିଲି ସାହିତ୍ୟ ସଂସଦ' ଓ 'ପିପିଲି ସାଂସ୍କୃତିକ ପରିଷଦ।'

### ପିପିଲି ସାହିତ୍ୟ ସଂସଦ

ପିପିଲି ଅଞ୍ଚଳର କେତେକ ସାହିତ୍ୟ ଓ ସଂସ୍କୃତି ପ୍ରେମୀଙ୍କୁ ନେଇ 'ପିପିଲି ସାହିତ୍ୟ ସଂସଦ' ନାମରେ ଏକ ସାରସ୍ୱତ ଅନୁଷ୍ଠାନ ଗଠନ କରାଯାଇଛି। ୧୯୯୧ ମସିହା ଏପ୍ରିଲ ୧୪ ତାରିଖ ମହାବିଷୁବ ସଂକ୍ରାନ୍ତି ଦିନ ଏହାର ଜନ୍ମ। ଶ୍ରୀ ବିପିନି ବିହାରୀ ମହାନ୍ତି, ଦିବାକର ମାନସିଂ ଓ ଭିକାରୀ ଧଳ ଯଥାକ୍ରମେ ଏହାର ସଭାପତି, ସଂପାଦକ ଓ ସହ ସମ୍ପାଦକ ରହିଛନ୍ତି। ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଚେତନା ଓ ଆଗ୍ରହ ସୃଷ୍ଟିକରି ଯୁବ ପ୍ରତିଭାମାନଙ୍କୁ ପ୍ରୋତ୍ସାହନ ଦେବା ଏହି ଅନୁଷ୍ଠାନର ପ୍ରଧାନ ଆଭିମୁଖ୍ୟ। ଏହି ଅନୁଷ୍ଠାନର 'ଧଉଳି' ନାମରେ ଏକ ମୁଖପତ୍ର ପ୍ରକାଶ ପାଉଛି।

### ପିପିଲି ସାଂସ୍କୃତିକ ପରିଷଦ

ପିପିଲି ବ୍ଲକର କେତେଜଣ ସମାଜ ସେବୀ, ସାହିତ୍ୟ, ସଂସ୍କୃତି ଓ କ୍ରୀଡ଼ା ପ୍ରେମୀଙ୍କୁ ନେଇ ୧୯୯୧ ମସିହା ଅଗଷ୍ଟ ୧୯ ତାରିଖ ଦିନ 'ପିପିଲି ସାଂସ୍କୃତିକ ପରିଷଦ' ନାମରେ ଏକ ଅନୁଷ୍ଠାନ ଗଢ଼ି ଉଠିଛି। ପିପିଲି ବ୍ଲକରେ

Digitized by srujanika@gmail.com

ସାହିତ୍ୟ, କ୍ରୀଡ଼ା, ସଂସ୍କୃତିର ପ୍ରୋତ୍ସାହନ, ସମାଜ ସେବା ଓ ସାମ୍ପ୍ରଦାୟିକ ସଦ୍ଭାବ ପ୍ରତିଷ୍ଠା ହେଉଛି ଏହାର ପ୍ରଧାନ ଆଭିମୁଖ୍ୟ। ପିପିଲି ବ୍ଲକ୍ ଅନ୍ତର୍ଗତ ବିଭିନ୍ନ ଗ୍ରାମ ଓ ସଂପ୍ରଦାୟର ୨୧ ଜଣ ବ୍ୟକ୍ତିଙ୍କୁ ନେଇ ପ୍ରଥମେ ଏହା ଗଠନ କରାଯାଇଥିଲା। ବର୍ତ୍ତମାନ ଏହି ଅନୁଷ୍ଠାନରେ ୪୦ ଜଣ ସଦସ୍ୟ ଅଛନ୍ତି। ପ୍ରାରମ୍ଭରୁ ଅଦ୍ୟାବଧି ଶ୍ରୀ କାଶୀନାଥ ନାୟକ, ରମେଶ ମହାପାତ୍ର, ହାଇଦର ମହମ୍ମଦ ଓ ଦେବେନ୍ଦ୍ର କୁମାର ସାହୁ ଯଥାକ୍ରମେ ଏହି ଅନୁଷ୍ଠାନର ସଭାପତି, ସଂପାଦକ ଉପସଭାପତି ଓ କୋଷାଧ୍ୟକ୍ଷ ଭାବରେ କାର୍ଯ୍ୟକରି ଆସୁଅଛନ୍ତି। ଏହାର ଅନ୍ୟାନ୍ୟ ପ୍ରତିଷ୍ଠାତା ସଦସ୍ୟମାନେ ହେଲେ ଶ୍ରୀ ବିଚିତ୍ରା ନନ୍ଦ ନାୟକ, ଡକ୍ଟର ଉସିମ୍ ଉଦ୍ଦିନ୍ ଅହମ୍ମଦ, କୃଷ୍ଣଚନ୍ଦ୍ର ପୃଷ୍ଟାଳକ, ପୂର୍ଣ୍ଣଚନ୍ଦ୍ର ପଣ୍ଡା, ମାଧବ ଚନ୍ଦ୍ର ବୈଠାରୁ, ଶ୍ରୀଧର ସେନାପତି, ଯୋଗେଶ୍ୱର ପ୍ରସାଦ ଗିରି, ଲକ୍ଷ୍ମଣ କୁମାର ପରିଡ଼ା, ସଦାଶିବ ନନ୍ଦ, କମଳା କାନ୍ତ ମହାନ୍ତି, ରମେଶ ଚନ୍ଦ୍ର ଶତପଥୀ, ହୃଦାନନ୍ଦ ପଟ୍ଟନାୟକ, କେଦାରେଶ୍ୱର ମିଶ୍ର, ବିନୟାନନ୍ଦ ପରମାଣିକ୍, ବେଣୁଧର ମହାନ୍ତି, ଲକ୍ଷ୍ମୀଧର ବେହେରା ଓ ଶ୍ରୀମତୀ ମଞ୍ଜୁଲତା ମହାପାତ୍ର। ଏହାର ଆନୁକୂଲ୍ୟରେ ଜାତୀୟ ଓ ରାଜ୍ୟ ସ୍ତରୀୟ ପର୍ବ-ପାଳନ କରାଯିବା ସଂଗେ ସଂଗେ ସ୍ୱାସ୍ଥ୍ୟ ସେବା ଶିବିର ଓ ପିପିଲି ବ୍ଲକ୍ ଅନ୍ତର୍ଗତ ସ୍କୁଲ ଛାତ୍ର ଛାତ୍ରୀମାନଙ୍କ ମଧ୍ୟରେ ବକ୍ତୃତା, ସଙ୍ଗୀତ ଓ କ୍ରୀଡ଼ା ପ୍ରତିଯୋଗିତା ଆଦିର ଆୟୋଜନ କରାଯାଇ ଆସୁଛି।

## ଧର୍ମ ଧାରା

ପିପିଲି ଏକ ସର୍ବଧର୍ମ ସମନ୍ୱୟର ପୀଠ ସ୍ଥଳୀରୂପେ ସ୍ୱାକ୍ଷର ବହନକରି ଯୁଗେ ଯୁଗେ ଓଡ଼ିଶାର ଇତିହାସକୁ ମହିମାନ୍ୱିତ କରିଛି। ଏଠାରେ ଜୈନ, ବୌଦ୍ଧ, ଶୈବ, ବୈଷ୍ଣବ, ଅଲେଖ (ମହିମା) ମୁସଲମାନ ଓ ଖ୍ରୀଷ୍ଟିୟାନ ସଂପ୍ରଦାୟର ଲୋକ ବସବାସ କରୁଥିଲେ ମଧ୍ୟ ପରସ୍ପର ମଧ୍ୟରେ ସଦ୍ଭାବ ହେଉଛି ଉକ୍ତ ସ୍ଥାନର ବୈଶିଷ୍ଟ୍ୟ। ଏ ସଂପର୍କରେ ପ୍ରାୟ ସବୁ ସମ୍ପ୍ରଦାୟର ବ୍ୟକ୍ତିଙ୍କ ସହିତ ସାକ୍ଷାତକାରରେ ସେମାନେ ଏହା ପ୍ରକାଶ କରିଥିଲେ। ବିଭିନ୍ନ ଧର୍ମ ଓ ସମ୍ପ୍ରଦାୟ ସଂପର୍କରେ ଏକ ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦାନ କରାଯାଇଛି।

### ଜୈନ ଧର୍ମ

ମହାବୀର ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀରେ ଭୁବନେଶ୍ୱର ଆସି ଧର୍ମ ପ୍ରଚାର କରିଥିବାରୁ ପିପିଲି ସମେତ ଏହାର ପାର୍ଶ୍ୱବର୍ତ୍ତୀ ଭୂଖଣ୍ଡରେ ଜୈନ ଧର୍ମର ପ୍ରଭାବ ଯେ ନିଶ୍ଚିତ ପକ୍ଷେ ପଡ଼ିଥିବ ଏଥିରେ ସନ୍ଦେହ ନାହିଁ। ମାତ୍ର ପିପିଲି ଭୂଖଣ୍ଡରେ ଜୈନ କୀର୍ତ୍ତିର କିଛି ସଂକେତ ମିଳେ ନାହିଁ। ଏବେ କେତେକ ଜୈନ ପରିବାର ବ୍ୟବସାୟ ପାଇଁ ପିପିଲି ଆସି ବସବାସ କରି ରହିଛନ୍ତି। ସେମାନେ ଅନ୍ୟ ଧର୍ମାବଲମ୍ବୀଙ୍କ ସହିତ ସୁସଂପର୍କ ସ୍ଥାପନ କରି ଭାଇ ଭାଇ ପରି ରହି ଆସୁଛନ୍ତି।

Digitized by srujanika@gmail.com

## ବୌଦ୍ଧ ଧର୍ମ

ପିପିଲି ତେଲାଙ୍ଗ ଭୂଖଣ୍ଡ ବୌଦ୍ଧ ଧର୍ମର ଏକ ପୀଠ ରୂପେ ସୁବିଦିତ। ଭୋରଶୈଳ ବୋଲି କୁହାଯାଉଥିବା ଏକ ପାହାଡ଼ରେ ବହୁ ବୌଦ୍ଧଗୁମ୍ଫା ନିର୍ମିତ ହୋଇଥିବାର ଦେଖାଯାଏ। ଏହି ସବୁ ଗୁମ୍ଫା ସୁପ୍ରସିଦ୍ଧ ବୌଦ୍ଧ ପଣ୍ଡିତ ଆଚାର୍ଯ୍ୟ ଡିଗ୍‌ନାଗ ଙ୍କ ଉଦ୍ୟମରେ ଖୋଦିତ ହୋଇଥିଲା।. ଏ ସଂପର୍କରେ ପୂର୍ବରୁ ମଧ୍ୟ ସୂଚନା ଦିଆଯାଇଛି। ଏବେ ମଧ୍ୟ ପିପିଲି ବ୍ଲକ୍‌ରେ ବହୁ ସଂଖ୍ୟକ ବୌଦ୍ଧ ଧର୍ମାବଲମ୍ବୀ ବାସ କରୁଥିବାର ଜଣାଯାଏ। ପିପିଲି ଥାନା ଅନ୍ତର୍ଗତ ରୂପଦେଈପୁର ପଞ୍ଚାୟତରେ ଅବସ୍ଥିତ ମଉଳୀବେର୍ ଗ୍ରାମରେ ରଙ୍ଗଣୀ ନାମକ ପ୍ରାୟ ୧୦୦ ଟି ବୁଣାକାର ପରିବାର ରହୁଥିବାର ଦେଖାଯାଏ। ସେମାନେ ସମସ୍ତେ ବୌଦ୍ଧ ଧର୍ମାବଲମ୍ବୀ। ବେହେରା, ସାହୁ, ଦାସ ଓ ସେନାପତି ଆଦି ସେମାନଙ୍କର ଉପାଧି। ମଉଳୀବେର୍ ବ୍ୟତୀତ ତେଇଶିପୁର ଗ୍ରାମରେ ଏହି ସଂପ୍ରଦାୟର ୧୦ଟି ପରିବାର ଓ ସରସ୍ୱତୀପୁର ପଞ୍ଚାୟତ ଅନ୍ତର୍ଗତ ନୂଆହାଟ ଗ୍ରାମରେ ୧୨ଟି ପରିବାର ବାସ କରୁଅଛନ୍ତି। ଅବଶ୍ୟ ସେହି ଗ୍ରାମ ଗୁଡ଼ିକରେ କୌଣସି ବୌଦ୍ଧ ମୂର୍ତ୍ତି ବା ଆରାଧନା ସ୍ଥଳୀ ଥିବାର ଦେଖାଯାଏ ନାହିଁ। ତଥାପି ବୁଦ୍ଧ ପୂର୍ଣ୍ଣିମା ଦିନ ବୌଦ୍ଧ ସଂପ୍ରଦାୟର ଲୋକମାନଙ୍କ ମଧରେ ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥାଏ। ଏହା ଦୁଇଦିନ ଧରି ଚାଲେ। ପ୍ରଥମ ଦିନ ବନ୍ଧୁମିଳନ ଓ ଦ୍ୱିତୀୟ ଦିନରେ ବୌଦ୍ଧ ଧର୍ମ ଉପରେ ଆଲୋଚନା କରାଯାଇଥାଏ। ସେହିଦିନ ମଧ୍ୟ ସେମାନେ ସାକ୍ଷୀଗୋପାଳସ୍ଥ ବକୁଳ ବନର ସିଦ୍ଧ ମହାବୀର ପୀଠରେ ଏକ ମହୋତ୍ସବ ପାଳନ କରିଥାଆନ୍ତି। ଓଡ଼ିଶାର ଅନ୍ୟ ଜିଲ୍ଲାରେ ବାସ କରୁଥିବା ଏହି ସଂପ୍ରଦାୟର ପରିବାର ମଧରେ ମଧ୍ୟ ଏମାନେ ବୈବାହିକ ସଂପର୍କ ସ୍ଥାପନ କରୁଥିବାର ଜଣାଯାଏ। ପିପିଲି ଭୂଖଣ୍ଡରେ ବାସ କରୁଥିବା ବୌଦ୍ଧ ଧର୍ମାବଲମ୍ବୀମାନେ ଅନ୍ୟ ସ୍ଥାନରୁ ଆସିଥିବାର ମନେହୁଏ। ସେମାନେ କେବେ ଏଠାକୁ ଆସିଛନ୍ତି ତାହା ସଠିକ ଭାବେ କହି ହେଉନଥିଲେ ମଧ ଚୈତନ୍ୟ ଦେବଙ୍କର ଆବିର୍ଭାବ ପୂର୍ବରୁ ଏମାନେ ଏଠାରେ ଯେ ବାସ କରୁଥିଲେ ଏହା ନିଶ୍ଚିତ ଭାବେ କୁହାଯାଇପାରେ। ସେ ଯାହାହେଉ ବୌଦ୍ଧ ଧର୍ମର ନିୟମାନୁଯାୟୀ ରଙ୍ଗଣୀ ପରିବାରର ଲୋକମାନେ ସଂପୂର୍ଣ୍ଣ ରୂପେ ନିରାମିଶାଷୀ। ଏପରିକି ପିଆଜ, ରସୁଣ ମଧ୍ୟ ସେମାନେ ସ୍ପର୍ଶ କରନ୍ତି ନାହିଁ। ସେମାନେ ଅତ୍ୟନ୍ତ ଶାନ୍ତିପ୍ରିୟ ଓ ଅନ୍ୟ ଧର୍ମ ପ୍ରତି ସହନଶୀଳ। ନୂଆହାଟ ଗ୍ରାମରେ ଅବସ୍ଥିତ ବୈଷ୍ଣବ ଧର୍ମର ମଦନ ମୋହନ ଦେବ ଓ ଚୈତନ୍ୟ ଦେବଙ୍କର ମଠ ତା'ର ପରିଚାୟକ। ପୁନଶ୍ଚ ରଙ୍ଗଣୀମାନେ ଗୋପାଳଜୀଉଙ୍କର ଜଳକ୍ରୀଡା ଏକାଦଶୀ, ସାକ୍ଷୀଗୋପାଳଠାରେ ପାଳନ କରନ୍ତି।

Digitized by srujanika@gmail.com

## ଶୈବ ଧର୍ମ

ପିପିଲି-ଡେଲାଙ୍ଗ ଅଞ୍ଚଳରେ ଶୈବ ଧର୍ମର ବହୁଳ ପ୍ରସାର ଦେଖାଯାଏ। ସଂଖ୍ୟାତୀତ ଶିବ-ମନ୍ଦିର ତା'ର ପରିଚାୟକ। ସେହି ଶିବ ମନ୍ଦିରଗୁଡ଼ିକ ଉପରେ ବର୍ଣ୍ଣନା ପରବର୍ତ୍ତୀ ଅଧ୍ୟାୟରେ ଦିଆଯାଇଛି। ତଥାପି ଏଠାରେ କେତୋଟି ଶିବ ମନ୍ଦିରର ନାମ ଉଲ୍ଲେଖ କରାଯାଇଛି। ସେଗୁଡ଼ିକ ହେଲା ପମସରା ପଞ୍ଚାୟତ ଅନ୍ତର୍ଗତ ହଳଦୀବସନ୍ତ ଗ୍ରାମରେ ଥିବା ଅର୍ଜ୍ଜୁନେଶ୍ୱର ଶିବ ମନ୍ଦିର, ଧଉଳି ପାହାଡ଼ ଉପରେ ଥିବା ବହିରଙ୍ଗେଶ୍ୱର ମନ୍ଦିର, ବୁଢ଼ାପଡ଼ାଠାରେ ସୋମନାଥ ମନ୍ଦିର, ହରିରାଜପୁରର ସୋମନାଥ ମନ୍ଦିର, ବିଶ୍ୱନାଥ ମୁଣ୍ଡିଆଉପରେ ବିଶ୍ୱନାଥ ମନ୍ଦିର, ଜଗନ୍ନାଥପୁର ପଞ୍ଚାୟତର ଲୋହପୁରଠାରେ ଥିବା ବିଶ୍ୱନାଥ ମନ୍ଦିର, ଗୋବିନ୍ଦପୁର ପଞ୍ଚାୟତ ଅନ୍ତର୍ଗତ ଶିଉଳା ଗ୍ରାମର ବାଲୁକେଶ୍ୱର ମନ୍ଦିର, ଘୋରଡ଼ିହା ବକ୍ରେଶ୍ୱର ମୁଣ୍ଡିଆର ପାଦ ଦେଶରେ ଥିବା ବକ୍ରେଶ୍ୱର ମନ୍ଦିର, ଦାଣ୍ଡମୁକୁନ୍ଦପୁରସ୍ଥ ନୀଳକଣ୍ଠେଶ୍ୱର ମନ୍ଦିର, ଗୋବର୍ଦ୍ଧନପୁରସ୍ଥିତ ଗଡୀଶ୍ୱର ମହାଦେବଙ୍କ ମନ୍ଦିର ଓ ସଂପୁରସ୍ଥିତ ଅଷ୍ଟଶମ୍ଭୁ ମନ୍ଦିର ପ୍ରଧାନ। ଏହି ଶିବ ମନ୍ଦିରରେ ଶୈବ ଉପାସକମାନେ ଶିବରାତ୍ରି ଓ ରଜସଂକ୍ରାନ୍ତି ପର୍ବମାନ ପାଳନ କରିଥାଆନ୍ତି।

## ବୈଷ୍ଣବଧର୍ମ

ପିପିଲି-ଡେଲାଙ୍ଗ ଅଂଚଳ ବୈଷ୍ଣବ ଧର୍ମର ଅନ୍ୟଏକ ବହୁଳ ପ୍ରସାରିତ ପୀଠ।ପୁରୀର ନିକଟବର୍ତ୍ତୀ ହୋଇଥିବାରୁ ଏଠାରେ ବୈଷ୍ଣବଧର୍ମର ପ୍ରଭାବ ବିଶେଷ ଭାବରେ ପରିଲକ୍ଷିତ ହୋଇଥାଏ। ଏହି ଅଂଚଳରେ ଉଭୟ ଗୌଡ଼ୀୟ ଓ ଉତ୍କଳୀୟ ବୈଷ୍ଣବ ସଂପ୍ରଦାୟର ଲୋକ ବାସ କରୁଥିବାର ଦେଖାଯାଏ। ଦୀର୍ଘ ଦିନଧରି ଚୈତନ୍ୟଙ୍କର ପୁରୀରେ ରହଣୀ ଏଠାରେ ଗୌଡ଼ୀୟ ସଂପ୍ରଦାୟ ସୃଷ୍ଟି କରିବାଦିଗରେ ସହାୟକ ହୋଇଛି। ଏହି ଭୂ-ଖଣ୍ଡରେ କେତେକ ଗୌଡ଼ୀୟ ମଠ ସ୍ଥାପିତ ହୋଇଥିବାର ଦେଖାଯାଏ। ତନ୍ମଧ୍ୟରୁ ନୂଆହାଟ ଗ୍ରାମରେ ସ୍ଥାପିତ ଚୈତନ୍ୟ ଦେବଙ୍କର ଦୁଇଟି ମଠର ନାମ ଉଲ୍ଲେଖ ଯୋଗ୍ୟ। ଜଣା ଅଧିକେ ପ୍ରତ୍ୟେକ ହିନ୍ଦୁ ଅଧ୍ୟୁଷିତ ଗ୍ରାମରେ ନାରାୟଣ, ବିଷ୍ଣୁ, ଗୋପୀନାଥ, ରାଧାକୃଷ୍ଣ ପୂଜିତ ହେଉଥିବାର ଦେଖାଯାଏ। ତନ୍ମଧ୍ୟରୁ ଏଠାରେ ଦୁଇଟି ପୂଜିତ ବିଗ୍ରହଙ୍କର ନାମ ଉଦ୍ଧାର କରାଯାଇପାରେ। ସେମାନେ ହେଲେ କାକୁଡିଆର ଗୋପୀନାଥଦେବ ଓ ଦାଣ୍ଡମୁକୁନ୍ଦପୁରର ଗୋପାଳଜୀଉ।

## ଶାକ୍ତ ଧର୍ମ

ପିପିଲି ମଧ୍ୟ ଏକ ଶାକ୍ତପୀଠ ରୂପେ ସୁବିଦିତ। ଏଠାରେ ଅନ୍ୟଧର୍ମ ପରି ଶାକ୍ତଧର୍ମ ଓ ଶକ୍ତି ଉପାସନା ଲୋକଙ୍କ ମଧ୍ୟରେ ବେଶ୍ ଜନପ୍ରିୟ। ଦାଣ୍ଡମୁକୁନ୍ଦପୁର ଉତ୍କଣ୍ଠେଶ୍ୱର ଦେଉଳି ମୌଜାର ଦଶବାଟୀ ଗ୍ରାମରେ ଚଣ୍ଡୀଦେବୀ ଠାକୁରାଣୀ ପୂଜିତ

Digitized by srujanika@gmail.com

ହେଉଛନ୍ତି । ସେ ହେଉଛନ୍ତି ଏକ କାଳୀ ପ୍ରତିମା । ଏତଦ୍ ବ୍ୟତୀତ ବାସୁଦେଇପୁରସ୍ଥିତ ଝାଡମଲ୍ଲୀ ଠାକୁରାଣୀ ଓ ସାତଶଙ୍ଖ ନିକଟସ୍ଥ ଉଗ୍ରରାୟଣୀଙ୍କ ସମେତ ଅନ୍ୟ ବହୁତ ସ୍ଥାନରେ ଦେବୀ ଆରାଧନା କରାଯାଉଥିବାର ଦେଖାଯାଏ । ତା'ର ସବିଶେଷ ବର୍ଣ୍ଣନା ପରବର୍ତ୍ତୀ ଅଧ୍ୟାୟରେ ଦିଆଯାଇଛି ।

## ଅଲେଖ ଧର୍ମ

ପିପିଲି ଅଞ୍ଚଳରେ ଅଲେଖ ଧର୍ମ ପ୍ରସାରିତ ହୋଇଥିବାର ଦେଖାଯାଏ । ଏଠାରେ କେତୋଟି ସ୍ଥାନରେ ଅଲେଖ ମହିମା ଆଶ୍ରମ ପ୍ରତିଷ୍ଠା କରାଯାଇଛି । ତନ୍ମଧ୍ୟରୁ କଣ୍ଟି ଗ୍ରାମପଞ୍ଚାୟତ ଅନ୍ତର୍ଗତ ପାଣିଦୋଳ ଗ୍ରାମରେ ଥିବା ମହିମା-ଆଶ୍ରମ ସର୍ବ ପୁରାତନ । ଏତଦ୍‌ବ୍ୟତୀତ ପୁବା ପଞ୍ଚାୟତ ଅନ୍ତର୍ଗତ ମଧୁପୁର, ପୋପରଙ୍ଗା ପଞ୍ଚାୟତର ମାଧିପୁର ଓ ପମସରା ପଞ୍ଚାୟତର ଭଉଳ ଗ୍ରାମରେ ଏହି ଆଶ୍ରମ ସ୍ଥାପିତ ହୋଇଛି । ମୋତେ ମାଧିପୁରସ୍ଥିତ ମହିମାଗାଦି ଦେଖିବାର ସୁଯୋଗ ମିଳିଥିଲା । ଏହା ପିପିଲିଠାରୁ ୩ କି.ମି. ଦୂରରେ ଅବସ୍ଥିତ । ଉଦୟନାଥ ଦାସଙ୍କ ସହିତ ଏକ ସାକ୍ଷାତକାରରେ ସେ କହିଲେ, ଏହି ଗାଦିର ପ୍ରତିଷ୍ଠାତା ହେଉଛନ୍ତି ଶ୍ରୀ ଆଦିଗୋବିନ୍ଦ ପରମ ସ୍ୱାମୀ । ଏହା ୧୫୦ ବର୍ଷ ପୂର୍ବରୁ ଅର୍ଥାତ ୧୮୪୨ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ହୋଇଥିଲା । ଆଦିଗୋବିନ୍ଦ ଥିଲେ ଜଣେ ସିଦ୍ଧ ପୁରୁଷ ଓ ସେ ଅଲୌକିକ କାର୍ଯ୍ୟ କରିପାରୁଥିଲେ । ହଇଜା ଲାଗିଥିବା ଗ୍ରାମ ମଧ୍ୟରେ ସେ ଚାଲିଗଲେ ହଇଜା ବନ୍ଦ ହୋଇଯାଉଥିଲା । କୌଣସି ଗ୍ରାମରେ ଅଗ୍ନି ଲାଗିଲେ ସେ ସେଠାରେ ପହଞ୍ଚିବା ମାତ୍ରେ ତାହା ନିର୍ବାପିତ ହୋଇଯାଉଥିଲା । ସର୍ପାଘାତ, ଭୂତପ୍ରେତ ଆଦିର ଉପଦ୍ରବ ଆଦି ସେ ଭଲ କରି ପାରୁଥିଲେ । ସେ ମଧ୍ୟ ପାଣି ଉପରେ ଚାଲି ପାରିବାର ଜନଶ୍ରୁତି ରହିଛି । ତାଙ୍କଠାରେ ଏହି ଅଲୌକିକ ଶକ୍ତିଥିବା ବିଷୟ ମାଧିପୁର ଗ୍ରାମର ଭୁବନେଶ୍ୱର ୨ ନମ୍ବର ୟୁନିଟସ୍ଥିତ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପ୍ରଧାନଶିକ୍ଷକ ରାଧାମୋହନ ନାୟକ ବୟୋବୃଦ୍ଧ ଲୋକଙ୍କଠାରୁ ଶୁଣିଛନ୍ତି ବୋଲି ମୋ ଠାରେ ପ୍ରକାଶ କରିଥିଲେ । ମାଧିପୁର ଗ୍ରାମର ଯଦୁମଣି ଜେନା ମଧ୍ୟ କହିଥିଲେ ଯେ· ତାଙ୍କ ପିତା ବାଞ୍ଛାନିଧି ଜେନାଙ୍କୁ ସର୍ପାଘାତ କରିଥିଲା । ମାତ୍ର ପରମ ସ୍ୱାମୀଙ୍କ କୃପାରୁ ସେ ଭଲ ହୋଇ ଯାଇଥିଲେ । ସେ ଯାହାହେଉ ମାଧିପୁରସ୍ଥିତ ମହିମା ମନ୍ଦିର ବା ଗାଦି ମଧ୍ୟରେ ପାଞ୍ଚଗୋଟି କଳସ ସ୍ଥାପିତ ହୋଇଛି । ପ୍ରତିବର୍ଷ ଚୈତ୍ର ପୂର୍ଣ୍ଣିମା ଦିନ ବିଶ୍ୱ-ଶାନ୍ତି ମହିମା ଯଜ୍ଞ ଓ ବୈଶାଖ ପୂର୍ଣ୍ଣିମା ଦିନ ବାଲ୍ୟଲୀଳା କରାଯାଇ ପିଲାମାନଙ୍କୁ ଖାଇବାକୁ ଦିଆଯାଏ ।

Digitized by srujanika@gmail.com

# ଜଗନ୍ନାଥ ଧର୍ମ

ଏହା କହିବା ନିଷ୍ପ୍ରୟୋଜନ ଯେ ଜଗନ୍ନାଥଧାମ ପୁରୀର ଅନତି ଦୂରରେ ଅବସ୍ଥିତ ପିପିଲି ଭୂଖଣ୍ଡ ଯେ ଜଗନ୍ନାଥ ଧର୍ମ ସହିତ ଓତଃପ୍ରୋତ ଭାବରେ ଜଡ଼ିତ, ଏଥିରେ ସନ୍ଦେହ ନାହିଁ। ଏହି ଅଂଚଳର ବହୁ ସ୍ଥାନରେ ଆମେ ପତିତପାବନ ବିଗ୍ରହ ପୂଜିତ ହେଉଥିବାର ଦେଖିଥାଉଁ। ଏପରିକି ରଥଯାତ୍ରା ଦିନ ଏ ଅଂଚଳର ପିଲାମାନେ ଛୋଟ ଛୋଟ ରଥ ନିର୍ମାଣ କରି ଏକ ବର୍ଣ୍ଣାଢ୍ୟ ପରିବେଶ ମଧ୍ୟରେ ସେଗୁଡ଼ି ଟାଣୁଥିବାର ଦେଖାଯାଏ। ଏଠାରେ ଏ ଅଂଚଳର ଜଗନ୍ନାଥଙ୍କର ଦୁଇଜଣ ବିଶିଷ୍ଟ ଭକ୍ତଙ୍କ ଉପରେ କିଞ୍ଚିତ ସୂଚନା ଦେବା ବିଧେୟ। ସେମାନେ ହେଉଛନ୍ତି ପିପିଲିର ଭକ୍ତ ରଘୁ ବେହେରା ଓ ବାଲିଗାଁର ଦାସିଆ ବାଉରି। ସେମାନଙ୍କ ସଂପର୍କରେ 'ଦାର୍ଢ୍ୟତା ଭକ୍ତି'ରେ ବର୍ଣ୍ଣନା ଦିଆଯାଇଛି।

## ରଘୁ ବେହେରା ଉପାଖ୍ୟାନ

ଏକଦା ପିପିଲିରେ ରଘୁ ବେହେରା ନାମରେ ଜଣେ ଧୀବର ବାସ କରୁଥିଲେ। ମୀନମାରି ପେଟ ପୋଷିବା ଥିଲା ତାଙ୍କର ବୃତ୍ତି। ଘରେ ଥିଲେ ତାଙ୍କର ସ୍ତ୍ରୀ ଓ ମା। ମାତ୍ର ତାଙ୍କର ମା ଓ ସ୍ତ୍ରୀ ମାଛ ମାରି ଭରଣ ପୋଷଣ କରିବା ସପକ୍ଷରେ ନଥିଲେ। ଦିନକର କଥା ରଘୁ ବେହେରାଙ୍କ ଜାଲରେ ବଡ଼ ରୋହୀ ମାଛଟିଏ ପଡ଼ିଲା। ତାକୁ ମାରିବାକୁ ଉଦ୍ୟତ ହେବାବେଳେ ଧୀବର ରଘୁ ଶୁଣିଲା-ମୀନ କହୁଛି 'ନାରାୟଣ ମୋତେ ରକ୍ଷାକର।' ଘରେ ମା ଓ ସ୍ତ୍ରୀ ଅସନ୍ତୁଷ୍ଟ ଏଣେ ମୀନ କହୁଛି- ନାରାୟଣ.....। ଏହାର ରହସ୍ୟ ଉଦ୍‌ଘାଟନ କରି ନପାରି ପ୍ରଥମେ ସ୍ଥିର କରିଥିଲା ଆତ୍ମହତ୍ୟା କରିବ। ମାତ୍ର ତା ପୂର୍ବରୁ ସେ ସେହି ମାଛଟି ଧରି ଜଙ୍ଗଲରେ ବସି ରହିଲା, ଶୁଣାଇ ଥିବା ସେହି ନାରାୟଣଙ୍କୁ ଦର୍ଶନ କରିବାପାଇଁ। ଏହି ସମୟରେ ତାଙ୍କ ସମ୍ମୁଖରେ ଜଣେ ବିପ୍ର ଆବିର୍ଭୂତ ହୋଇ କହିଲେ,- ସେ ହେଉଛନ୍ତି ସେହି ନାରାୟଣ। ରଘୁ ଧୀବର ଏହାର ପ୍ରମାଣ ଦେବାକୁ କହିବାରୁ ସେ ନିଜର ସ୍ୱରୂପ ପ୍ରକଟିତ କଲେ। ସେହି ଦିନଠାରୁ ରଘୁଙ୍କ ମୁଖରେ 'ନାରାୟଣ','ନାରାୟଣ' ବୋଲି ଶୁଣିବାକୁ ମିଳିଲା। ସେ ମୀନ ମାରିବା ଛାଡ଼ି ଭିକ୍ଷାବୃତ୍ତି ଅବଲମ୍ବନ କଲେ। ଦିନେ କେତେଜଣ ବାଳକ ତାଙ୍କୁ ଛଦ୍ମ ତପସ୍ୱୀ କହି ତାଙ୍କ ଚାରିପଟେ ଘେରିଯିବା ସଙ୍ଗେ ସଙ୍ଗେ ତାଙ୍କ ମଧ୍ୟରୁ ଜଣେ ଲୁହାକଣ୍ଟା ଲଗାଥିବା ଏକ ବାଡ଼ିରେ ଆଘାତ ଦେଲା। ଏଥିରେ ମର୍ମାହତ ହୋଇ ରଘୁ କହିଲେ, '-ତୋତେ ଦୀନବଂଧୁ ଦଣ୍ଡନ୍ତୁ'। ତୋ ମା ପୁତ୍ର ଶୋକରେ କାନ୍ଦୁ। ସତକୁ ସତ ସେ ପିଲାଟି ମରିଗଲା। ପରେ ପରେ ରଘୁଙ୍କର ଖ୍ୟାତି ପ୍ରସାରିତ ହେବାକୁ ଲାଗିଲା। ସେ ଯାହାକୁ ଯାହା

Digitized by srujanika@gmail.com

କହିଲେ, ତାହା ମଧ୍ୟ ଫଳିଲା । ସେ ଜଗନ୍ନାଥଙ୍କୁ ଧ୍ୟାନ କରିବାରୁ ସେ ତାଙ୍କ ପ୍ରାର୍ଥନା ଶୁଣି ପିପିଲିକୁ ଆସିଲେ । ପଣ୍ଡା ଚକ୍ଷୁରେ ଶ୍ରୀଜଗନ୍ନାଥଙ୍କୁ ନଦେଖି ରାଜାଙ୍କୁ ଏ ବିଷୟରେ ଅବଗତ କରାଇବା ପରେ ତାଙ୍କୁ ସ୍ୱପ୍ନ ହେଲା ଯେ, ଜଗନ୍ନାଥ ତାଙ୍କ ଭକ୍ତ ପିପିଲିସ୍ଥିତ ରଘୁ ଦାସଙ୍କ ଘରେ ଭୋଜନ କରୁଛନ୍ତି । ତେଣୁ ସେ ପିପିଲି ଯାଇ ରଘୁ ଦାସଙ୍କୁ ଆଣି ନୀଳାଚଳ ଧାମରେ ଅବସ୍ଥାପିତ କରାନ୍ତୁ । ଏକଥା ଶୁଣିବା ମାତ୍ରେ ରାଜା ନିଜେ ପିପିଲି ଗମନକରି ଅଶ୍ୱ ପୃଷ୍ଠରେ ତାଙ୍କୁ ପୁରୀକୁ ନେଇ ଆସିଲେ । ଦେଉଳର ଦକ୍ଷିଣ ପାର୍ଶ୍ୱରେ ଏକ ମଣ୍ଡପଘର ତିଆରି କରାଇ ତାଙ୍କର ଖାଦ୍ୟପେୟ ପାଇଁ ଖଞ୍ଜା କରିଦେଲେ । ସେହି ଦିନଠାରୁ ରଘୁ ପ୍ରଭୁଙ୍କ ପାଖରେ ଅତି ଆନନ୍ଦ ମନରେ ରହିଲେ ।

ଏ ସଂପର୍କରେ 'ଦାର୍ଢ୍ୟତା ଭକ୍ତି'ରେ ଦିଆଯାଇଥିବା କେତେକ ପଂକ୍ତି ଏଠାରେ ଉଦ୍ଧାର କରାଗଲା ।

''ପୁରୁଷୋତ୍ତମ ମହାକ୍ଷେତ୍ର
ସେ କ୍ଷେତ୍ରମାନଙ୍କେ ପବିତ୍ର,
ତହିଁକି ଦଶ କୋଶ ଠାରେ
ଶ୍ରୀନୀଳାଚଳ ପାରୁଶରେ
ପିପିଲି ଗ୍ରାମ ନାମ ତା'ର
ସେହି ଗ୍ରାମରେ ତା'ର ଘର,
ଜାତିରେ ଅଟଇ ଧୀବର,
ରଘୁ ବେହେରା ନାମ ତା'ର
ତାହାର ଘରେ ତିନି ପ୍ରାଣୀ
ମାତା ସହିତେ ତା ଘରଣୀ
ଜାଲ ପକାଇ ମୀନ ମାରି
ପ୍ରାଣ ପୋଷଇ ବିକ୍ରି କରି,
ଏମନ୍ତେ କେତେଦିନ ଅନ୍ତେ
ସୁଜ୍ଞାନ ଜନ୍ମିଲା ତା ଚିତ୍ତେ ।''

ଦିନେ ତା ଜାଲରେ ରୋହୀ ମାଛଟାଏ ପଡ଼ିଲା । ତାହା ଦେଖି ରଘୁ କହିଲା-

''ତୋତେ ନକଲେ ଆଜି ନାଶ
ମୋତେ ନମିଳିବ ଗ୍ରାସ ।''

ଏହାଶୁଣି ସେହି ମୀନ ବଦନ ବିସ୍ତାର କରି

''ଡାକିଲା ରଖ ନାରାୟଣ
ଧୀବର ଶୁଣିଲା ଶ୍ରବଣ''

Digitized by srujanika@gmail.com

ତାପରେ ରଘୁ ବନକୁ ଯାଇ ମୀନ ପାଖେ ଜଗିରହିଲା ଓ ତପକଲା। ସେହି ସମୟରେ-

''ବିପ୍ର ସ୍ୱରୂପ ଗୋଟି ଧରି
ଧୀବର ଆଗେ ବିଜେ କରି
ବୋଇଲେ ଶୁଣରେ ତପସ୍ୱୀ
କି ତପ କରୁ ଏଠି ବସି,
କି ଜାତି ଗୋତ୍ର ଅଟେ ତୋର
କି ନାହିଁ ତୋ'ର ଘର ଦ୍ୱାର ?''

ଧୀବର ସବୁକଥା ଶୁଣି କହିଲା-

''ଏ ଘୋର ବନସ୍ଥରେ ପଶି
ମୀନକୁ ଜଗିଅଛି ବସି,
ଯେ ନାମ ଶୁଣାଇଲା ମୋତେ
ତାହାକୁ ଦେଖିବା ନିମନ୍ତେ।

* * * * *

''ଏମନ୍ତ ବୋଲି ନାରାୟଣ
ନାମ ଭଜନ କଲା ପୁଣ।''

ବିପ୍ର ଉତ୍ତରରେ କହିଲେ, ''ମୁଁ ନାରାୟଣ।'' ରଘୁ କହିଲେ, ''ଯଦି ତାହା ହୋଇଥାଏ ମୋତେ ଦେଖା ଦିଅ।''

''ତା ଶୁଣି ପ୍ରଭୁ ଦେବରାଜ,
ତକ୍ଷଣେ ହେଲେ ଚତୁର୍ଭୁଜ
ପ୍ରତ୍ୟକ୍ଷ ଉଭା ପୀତବାସ
ଦେଖି ଉଠିଲେ ରଘୁଦାସ।''

ତା'ପରେ ରଘୁଦାସ ଭିକ୍ଷାବୃତ୍ତି କଲା। ସେହି ସମୟରେ ଦିନେ

''ଏକ ବାଳକ ତହିଁଥିଲା।
ପଛରେ ଗୋଡ଼ାଇଣ ଗଲା।
ଲୌହ କଣ୍ଟକ- ଲଗା ବାଡ଼ି
ଧରି ନିତମ୍ବେ ଦେଲା ମାରି।''

ରଘୁକହିଲେ,-

''ତୋତେ ଦଣ୍ଡନ୍ତୁ ଦୀନବନ୍ଧୁ
ତୋ ମାତା ପୁତ୍ର ବୋଲି କାନ୍ଦୁ।''

ପିଲାଟି ମରିଗଲା।

ଦିନେ ରଘୁଦାସ ନୀଳାଚଳବାସୀଙ୍କୁ ଧ୍ୟାନ କରିବାରୁ

Digitized by srujanika@gmail.com

"ପଣ୍ଡାଏ ପୂଜାରେ ବସିଲେ
ପ୍ରଭୁ ଚକ୍ଷୁରେ ନ ଦିଶିଲେ ।
ନୃପତି ପାଶେ ଜଣାଇଲେ
ପ୍ରଭୁ ଯେ ମଣୋହି ନକଲେ ।"

ସେଦିନ ରାଜାଙ୍କୁ ଜଗନ୍ନାଥ କହିଲେ

"ଆମ୍ଭେ ଯେ ପିପିଲି ଗ୍ରାମରେ
ଧୀବର ରଘୁ ଦାସ ଘରେ ।
ଭୋଜନ କରୁଅଛୁ ବସି
ତେଣୁଟି ଚକ୍ଷୁରେ ନଦିଶି ।

* * * * *

ତେଣୁଟି କହୁଅଛି ତୋତେ
ଯାଇ ପିପିଲି ପରିଯନ୍ତେ
ମୋର ଦାସକୁ ଘେନିଆସ
ଦିଅ ତୁ କ୍ଷେତ୍ରବାସେ ବାସ ।
ତେବେ ମୁଁ କରିବି ଭୋଜନ
ଏମନ୍ତ କହି ଅନ୍ତର୍ଦ୍ଧାନ ।"

ରାଜା ତାଙ୍କୁ ପୁରୀକୁ ଅଣାଇ-

"ଦକ୍ଷିଣ ପାରୁଶରେ ଭଲେ
ମଣ୍ଡପ ଘର ବନାଇଲେ
ତହିଁ ଦାସଙ୍କୁ ଦେଲେ ସ୍ଥାନ,
ଖଂଜିଲେ ଖଂଜା ବରତନ,
ଦାସେ ରହିଲେ ପ୍ରଭୁପାଶେ
ଅତ୍ୟନ୍ତ ମନର ହରଷେ ।(୫)

ଏହି ରଘୁ ବେହେରାଙ୍କ ସମୟକାଳ ବିଷୟରେ କେଉଁଠାରେ ଉଲ୍ଲେଖ ନାହିଁ । ତଥାପି ପାରିପାର୍ଶ୍ୱିକ ଅବସ୍ଥାନକୁ ବିଚାର କରି ସେ ଗଜପତି ବଂଶର କେଉଁ ନରପତିଙ୍କ ସମୟର ହୋଇ ପାରିଥାଆନ୍ତି । ବିଶେଷତଃ ପ୍ରତାପରୁଦ୍ରଙ୍କ ରାଜତ୍ୱ ବହୁ ବୈଷ୍ଣବ ଓ ସାଧୁ ସନ୍ଥଙ୍କର ଆବିର୍ଭାବ ସମୟ ହୋଇଥିବାରୁ ରଘୁ ବେହେରା ସେହି ସମୟର ବୋଲି ଅନୁମାନ କରାଯାଇପାରେ । ଅର୍ଥାତ୍ ୧୫୩୦ ଖ୍ରୀଷ୍ଟାବ୍ଦରୁ ୧୫୪୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ତାଙ୍କର ଆବିର୍ଭାବ ହୋଇଥିଲା । ମାତ୍ର ଏହା ଅତ୍ୟନ୍ତ ପରିତାପର ବିଷୟ ଯେ ଜଗନ୍ନାଥଙ୍କର ଏତେ ବଡ଼ ଭକ୍ତଙ୍କର ଜନ୍ମସ୍ଥାନରେ

(୫) ଦାର୍ଢ୍ୟତା ଭକ୍ତି :ପ୍ରଥମ ଭାଗ,ପୃ.୮୬-୮୭

Digitized by srujanika@gmail.com

ତାଙ୍କର ସ୍ମୃତିରକ୍ଷା ପାଇଁ କିଛି କରାଯାଇ ନାହିଁ। କେବଳ ମାତ୍ର ଭୁବନାନନ୍ଦ ପୋଖରୀ ନିକଟସ୍ଥ ଏକ ବରଗଛକୁ 'ରଘୁ ବେହେରା ବରଗଛ' ବୋଲି କୁହାଯାଉଛି। ପିପିଲି ଅଂଚଳର ବୁଦ୍ଧିଜୀବୀ ଓ ଧର୍ମପରାୟଣ ବ୍ୟକ୍ତିଙ୍କୁ ବିନମ୍ର ନିବେଦନ ଯେ ଏ ଦିଗରେ ସେମାନେ କିଛି ପଦକ୍ଷେପ ଗ୍ରହଣ କରନ୍ତୁ। ଅବଶ୍ୟ ଏହା ସୁଖର ବିଷୟ ଯେ ପୁରୀ ମନ୍ଦିରର ପଶ୍ଚିମ ଦ୍ୱାରରେ ଅବସ୍ଥିତ ନୀଳାଦ୍ରି ବିହାରର ପ୍ରଦର୍ଶନୀ କକ୍ଷରେ ଚିତ୍ର-ମାଧ୍ୟମରେ ରଘୁ ବେହେରା ଉପାଖ୍ୟାନ ପ୍ରଦର୍ଶିତ ହୋଇଛି।

## ଦାସିଆ ବାଉରୀ ପୀଠ

ଜଗନ୍ନାଥ ଧର୍ମର ଅନ୍ୟଜଣେ ପ୍ରତୀକ ଦାସିଆ ବାଉରୀ ଓ ତାଙ୍କର ସମାଧି ପାଇଁ ପିପିଲି ଭୂଖଣ୍ଡ ମହିମାନ୍ୱିତ। ସେ ବିଷୟରେ କିଞ୍ଚିତ ସୂଚନା ଦେବା ବିଧି ସମ୍ମତ।

ଭୁବନେଶ୍ୱର ଆଡୁ ପୁରୀ ରାସ୍ତାରେ ଗଲେ ଡାହାଣ ପାର୍ଶ୍ୱରେ ୩ କିଲୋମିଟର ଦୂରରେ ଅବସ୍ଥିତ ପିପିଲି ଥାନା ଅନ୍ତର୍ଗତ ବାଲିଗାଁ ନାମକ ଏକ ଅଖ୍ୟାତ ପଲ୍ଲୀରେ ଦାସିଆଙ୍କ ଜନ୍ମ ଏକ ଖଦାଳ ପରିବାରରେ। ଏହି ଗ୍ରାମଟି ମଧ୍ୟ ଡେଲାଙ୍ଗ ଷ୍ଟେସନ ଠାରୁ ତିନି କିଲୋମିଟର ଦୂର। ଖଦାଳମାନେ ବାଉରି ନାମରେ ମଧ୍ୟ କଥିତ। ଯୁଗଳ କିଶୋର ନାୟକଙ୍କ ଦ୍ୱାରା ପ୍ରଣିତ "ପରମ ଭକ୍ତ ଦାସିଆ ବାଉରି" ପୁସ୍ତକରୁ ଜଣାଯାଏ- ତାଙ୍କ ପିତାଙ୍କ ନାମ ଚେମା ଓ ମାତାଙ୍କ ନାମ ବାଉଲି ଓ ସ୍ତ୍ରୀଙ୍କ ନାମ ମାଳିଆ।(୬)। ବାଲ୍ୟ କାଳରେ ଦାସିଆ ତାଙ୍କ ମା'ଙ୍କୁ ହରାଇଥିଲେ। ତାଙ୍କର କୁଳ ବ୍ୟବସାୟ ଥିଲା, ତନ୍ତରେ ବସ୍ତ୍ର ବୟନ। ସେହି ବସ୍ତ୍ରକୁ ତେଇଶିପୁର ହାଟରେ ବିକ୍ରୟ କରି ସେମାନେ ଭରଣ ପୋଷଣ କରୁଥିଲେ। ଦାସିଆ ବାଉରୀପୀଠ ସଂପର୍କରେ ପତ୍ୟକ୍ଷ ଜ୍ଞାନ ଲାଭ ପାଇଁ ମୁଁ ରମେଶ ମହାପାତ୍ର ଓ କାଶୀନାଥ ନାୟକଙ୍କ ସହ ୧୯୯୨ ମସିହା ଜାନୁୟାରୀ ୧୯ ତାରିଖରେ ସେଠାକୁ ଯାଇଥିଲି। ଦେଖିଲି ଯେ ଗାଁଟି ବହୁ ପୁରାତନ। ତାହା ସେଠାରେ ଥିବା ଏକ ପୁରାତନ କୂପର ଅବସ୍ଥିତିରୁ ଜଣାଯାଏ। ନିକଟରେ ରତ୍ନଚିରା ନଦୀ। ଅବଶ୍ୟ ଏବେ ତାହା ପୋତିହୋଇ କେନାଲରେ ପରିଣତ ହୋଇଛି। ସମ୍ଭବତଃ ରତ୍ନଚିରା ନଦୀର ବାଲୁକାରାଶି ଉପରେ ଗାଁଟି ଅବସ୍ଥିତ ଥିବାରୁ ତା'ର ନାମକରଣ ହୋଇଛି ବାଲିଗାଁ। ଦାସିଆ ଅତି ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରିଥିବାରୁ ସେ ଓ ତା'ର ସ୍ତ୍ରୀ ତନ୍ତରେ ଲୁଗାବୁଣି ଦିନ କାଟୁଥିଲେ। ରତ୍ନଚିରା ନଦୀ କୂଳରେ ଥିବା କୁଣ୍ଡାଝରା ଅଶ୍ୱତ୍ଥ ଗଛ ଥିଲା ଦାସିଆଙ୍କର ଲୀଳାଭୂମି। ଦାସିଆ ନିକଟବର୍ତ୍ତୀ ଜଣେ ବ୍ୟକ୍ତିଙ୍କ ଘରକୁ ଯାଇ ହରିବଂଶ ଓ ଅନ୍ୟାନ୍ୟ ପୁରାଣମାନ ଶୁଣୁଥାଏ। ଫଳରେ ସେ ଧର୍ମଭାବାପନ୍ନ

(୬) ଯୁଗଳ କିଶୋର ନାୟକ: ପରମଭକ୍ତ ଦାସିଆ ବାଉରୀ(ବେ[illegible]-୧୯୮୪),ପୃ ୩

Digitized by srujanika@gmail.com

ହୋଇ ପଡ଼ିଲା। ପୁଣ୍ୟର ବିଚାର ତା ମନ ମଧ୍ୟରେ ପ୍ରବେଶ କଲା। ସ୍ୱଭାବତଃ ତା' ମନ ଥିଲା ନିର୍ମଳ, ହୃଦୟ ଥିଲା ପବିତ୍ର, ଜୀବନ ଥିଲା ସରଳ ଓ କଳଙ୍କ ଶୂନ୍ୟ। ତେଣୁ ତା' ପ୍ରାଣରେ ଭଗବତ୍ ଚିନ୍ତା ଉଦ୍ରେକ ହେଲା। ସେ ଚିନ୍ତାକଲା ପୁରୀ ଯାଇ ରଥରେ ଜଗନ୍ନାଥଙ୍କୁ ଦର୍ଶନ କରିବ। ଯାତ୍ରାଦିନ ସେ ପୁରୀ ଗଲା। ଘରେ ରହିଲା ତା'ର ସ୍ତ୍ରୀ ମାଳିଆ। ରଥରେ ଠାକୁର ଦର୍ଶନ କରିବା ପରେ ତାଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ବହି ପଡ଼ିଥିଲା। ଫେରି ଆସିଲେ ଭକ୍ତି ଗଦ୍‌ଗଦ୍ ଚିତ୍ତରେ ଗାଁକୁ। କ୍ରମେ କ୍ରମେ ଜଗନ୍ନାଥଙ୍କ ପ୍ରତି ଆସକ୍ତି ବଢ଼ି ଚାଲିଲା। ଦିନକର କଥା, ତାଙ୍କ ସ୍ତ୍ରୀ ନୂଆ ହାଣ୍ଡିରେ ଗାଁ ପାଖରେ ଥିବା ପୋଖରୀରୁ କଳମ ଶାଗ ଆଣି ଭାଜି ଥିଲେ ଓ ଅରୁଆ ଚାଉଳ ଜାଉ ରାନ୍ଧିଲେ। ଦାସିଆ ଖାଇବାକୁ ଯାଇ ଦେଖନ୍ତି ଧଳା ଧଳା ଜାଉ ମଧ୍ୟରେ କଳା କଳା ଦୁଇଟି ଆଖି। ସମ୍ଭବତଃ ଶାଗ ତାଙ୍କୁ ଆଖିପରି ଦିଶିଥିଲା। ସେ ଭାବିଥିଲେ ତାହା ଜଗନ୍ନାଥଙ୍କର ଆଖି। ଏହା ମଧ୍ୟ ସମୟ ସମୟରେ ହୋଇଥାଏ। କାହା ପ୍ରତି ଜଣକର ଅଟଳ ବିଶ୍ୱାସ ଥିଲେ ଯେ କୌଣସି ଜିନିଷ ଦେଖିଲେ ତାହା ତାଙ୍କର ଅଙ୍ଗ ବୋଲି ପ୍ରତୀୟମାନ ହୁଏ। ସେ ଯାହାହେଉ ଦାସିଆ ସେ ଜାଉ ନଖାଇ ପାଗଳପରି ନାଚିବାକୁ ଲାଗିଲେ। ସ୍ତ୍ରୀ ଏକଥା ଦେଖି ସ୍ତମ୍ଭୀଭୂତ। ଏହା ସେ ଗ୍ରାମବାସୀଙ୍କ ନିକଟରେ ପ୍ରକାଶ କରିବାରୁ ସେମାନେ ଦାସିଆକୁ ବୁଝାଇଲେ। ପୁଣିଥରେ ଶାଗ ନପକାଇ ଭାତ ରନ୍ଧାଗଲା ଓ ଦାସିଆ ଖାଇଲେ।

କିଛିଦିନ ପରେ ଦାସଙ୍କର ପୁନରାୟ ଆଗ୍ରହ ହେଲା ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ। ଏହା ଚିନ୍ତାକରି ଶୋଇଛନ୍ତି। ଏଥର ନିଜେ ଜଗନ୍ନାଥ ରତ୍ନ ସିଂହାସନ ତ୍ୟାଗକରି ଦାସିଆକୁ ରାତିରେ ଦେଖାଦେଲେ। ଦାସ ଦେଖିଲେ ଯାହାଙ୍କୁ ସେ ରଥରେ ଉପବିଷ୍ଟ ହୋଇଥିବାର ଦେଖିଥିଲେ, ସେହି ଲୀଳାମୟ ଜଗନ୍ନାଥ ତାଙ୍କରି ସମ୍ମୁଖରେ। ଏହା ମଧ୍ୟ ବହୁବାର ଘଟିଥିବାର ଉପାଖ୍ୟାନ ଧର୍ମଗ୍ରନ୍ଥରେ ବର୍ଣ୍ଣିତ। କାରଣ ଭଗବାନ ଦେଖାଇ ଦେବାକୁ ଚାହାନ୍ତି ପ୍ରକୃତରେ ସେ ଭକ୍ତର ଦାସ। ଏହି ଘଟଣା ଘଟିବାରେ କିଛିଦିନ ବିତିଗଲା। ଦାସ ଏକ ଶ୍ରୀଫଳ ଜଗନ୍ନାଥଙ୍କୁ ଦେବାପାଇଁ ମନସ୍ଥକରି ତାହା ସେ ପ୍ରହରାଜପୁର ଗ୍ରାମର ମଧୁପାତ୍ରଙ୍କ ହସ୍ତରେ ଅର୍ପଣ କରି କହିଲେ, ''ଗରୁଡ଼ ପଛରେ ଠିଆ ହୋଇ ଏହି ଶ୍ରୀଫଳକୁ ଜଗନ୍ନାଥଙ୍କ ଆଡ଼କୁ ବଢ଼ାଇ କହିବ ଯେ- ଏହାକୁ ବାଲିଗାଁ ଦାସ ଦେଇଛି। ସେ ଯଦି ହାତ ବଢ଼ାଇ ନିଅନ୍ତି ତେବେ ଦେବ। ନଚେତ୍ ଫେରସ୍ତ ଆଣିବ।'' ଏହା କେବେ ସମ୍ଭବ ନୁହେଁ ବୋଲି କହି ମଧୁ ମହାପାତ୍ର ତାଙ୍କୁ ନିବର୍ତ୍ତାଇଲେ। ମାତ୍ର ଦାସିଆ ଜିଦ୍ ଧରିବାରୁ ସେ ଶ୍ରୀଫଳ ନେଇ ତାହାହିଁ କରିଥିଲେ ଓ ଜଗନ୍ନାଥ ତାଙ୍କୁ ହାତ ବଢ଼ାଇ ନେଇଥିଲେ।

ଏ ସମ୍ବନ୍ଧରେ ରାମଦାସଙ୍କ ବିରଚିତ 'ଦାର୍ଢ୍ୟତା ଭକ୍ତି'ରେ ଥିବା କେତେକ

Digitized by srujanika@gmail.com

ପଂକ୍ତି ଏଠାରେ ଉଦ୍ଧାର କରାଗଲା ।

"କ୍ଷେତ୍ରକୁ ଛଡ଼ା ବେନି କୋଶ
ବାଲି ଗ୍ରାମରେ ତା'ର ବାସ,
ଜାତିରେ ଅଟଇ ଖଦାଳ
ନଜାଣେ ପାପ ପୁଣ୍ୟବଳ,
ନାମତ ଦାସିଆ ବାଉରି
ସବର ଜାତି ତୁଲେ ସରି
ନାହିଁ ତା ପୁତ୍ର ପୁତ୍ରୀ ଧନ,
ଅତି ଦରିଦ୍ର ତା ଜୀବନ,
ପତ୍ନୀ ସହିତେ ବେନି ପ୍ରାଣୀ
ଦିନ ବଞ୍ଚନ୍ତି ଲୁଗା ବୁଣି
ନିତ୍ୟେ ଶୁଣଇ ହରିବଂଶ,
ବୁଝଇ ପାପ ପୁଣ୍ୟ ମିଶ ।"

ଥରେ ଦାସିଆ ଚିନ୍ତାକଲା ଦିନେ ଯାଇ ପ୍ରଭୁଙ୍କୁ ଦର୍ଶନ କରିବ । ତେଣୁ

"ପ୍ରବେଶ ହେଲା କ୍ଷେତ୍ରବାସେ,
ଶ୍ରୀନନ୍ଦୀଘୋଷର ପାରୁଶେ
କଲା ଶ୍ରୀମୁଖକୁ ଅନାଇ,
ବେନି ନୟନୁ ଧାର ବହି ।"

ଦିନେ ଦାସିଆର ପତ୍ନୀ-

"ନୂଆହାଣ୍ଡିରେ ରାନ୍ଧି କରି
ରଖି ଯେଥିଲା ତା'ର ନାରୀ
ସୁରଙ୍ଗ ଦିଶେ ହାଣ୍ଡି ଧାର,
ମଧ୍ୟେ ଧବଳ ପେଜ ସର
ତା ମଧ୍ୟେ ଶାଗ ଦିଶେ କଳା,
ବୋଲେ ଏ ଶ୍ୱେତ ପଦ୍ମ ତୋଳା ।"

ତେଣୁ ସେ ଖାଇଲେ ନାହିଁ । ଦିନେ ରାତିରେ ଚିନ୍ତାକଲେ ସେ ଭାବଗ୍ରାହୀଙ୍କ ଦର୍ଶନ କରିବେ । ତେଣୁ-

"ତା ମନ ଜାଣି ଭଗବାନ
ତେଜିଲେ ରତ୍ନ ସିଂହାସନ
ବିଜୟ କଲେ ପୀତବାସ
ମିଳିଲେ ଭକ୍ତଙ୍କର ପାଶ ।

* * * *

Digitized by srujanika@gmail.com

ରଥେ ମୁଁ ଦେଖିଥିଲି ଯାହା
ସାକ୍ଷାତେ ଦେଖିଲଇଁ ତାହା''

ଅନ୍ୟଦିନେ ଦାସ ଶ୍ରୀଫଳଟିଏ ବ୍ରାହ୍ମଣଙ୍କୁ ଦେଇ କହିଲା,-

''ଏ ମୋ ଶ୍ରୀଫଳ ଗୋଟି ଧରି
ଗରୁଡ଼ ପଛେ ରହି କରି,
ବୋଲିବ ବାଲିଗ୍ରାମ ଦାସ
ଦେଇଛି ନିଅ ପୀତବାସ,
ସେ ଯେବେ ଶ୍ରୀହସ୍ତ ବଢ଼ାଇ
ତୁମ୍ଭର ହସ୍ତରୁ ଛଡ଼ାଇ
ଘେନିଲେ ତେବେ ତାଙ୍କୁ ଦେବ
ନୋହିଲେ ଆଣି ମୋତେ ଦେବ,
ତାହା ଜାଣିଲେ ଭାବଗ୍ରାହୀ

* * * * *

ବିପ୍ର ହସ୍ତରୁ ଘେନି ଗଲେ
ସୁଖରେ ମଣୋହି ତା କଲେ''

ଏ ସଂପର୍କରେ ରାମଦାସ ନିଜର ମତବ୍ୟକ୍ତ କରି ଲେଖିଛନ୍ତି-

''ଯେ ଯେତେ ନୀଚ ଜାତି ହେଉ,
ସେ ଏକା ଭକ୍ତି ଭାବ ଥାଉ
ତାହାର ପତ୍ର ଫଳ ପୁଷ୍ପ
ପାଇଲେ ଶ୍ରୀହରି ସନ୍ତୋଷ।''(୭)

ଦାସିଆ ବାଉରୀ ପୀଠରେ ଏବେ ମଧ ତାଙ୍କ ପତ୍ନୀ ଶାଗ ତୋଳିଥିବା ପୁଷ୍କରିଣୀଟି ରହିଛି। ତାହା ଏବେ 'ଗୋଠ ଗାଡ଼ିଆ' ନାମରେ ଖ୍ୟାତ। ମୁଣ୍ଡରେ ଚକ୍ର ଚିହ୍ନ ଥାଇ ବଡ଼ବଡ଼ ଶାଳ ମାଛରେ ପରିପୂର୍ଣ୍ଣ। ଏଥିରୁ କେହି କେବେ ମାଛ ଧରନ୍ତି ନାହିଁ। ଏହି ପୋଖରୀର ପାଣି ପିଇଲେ କେତେକ ରୋଗ ଭଲ ହୋଇ ଯାଉଥିବାର ଜନଶ୍ରୁତି ଅଛି। ପୋଖରୀ ପାଖରେ ଦାସିଆଙ୍କର ସମାଧି। ଏହା ଏକ ଛୋଟିଆ ତୁଳସୀ ଚଉଁରା ଆକାରର। ପାର୍ଶ୍ୱରେ ଏକ ଅର୍ଦ୍ଧ ନିର୍ମିତ ମଠ। ଏହି ମଠ ମଧ୍ୟରେ ଦାସିଆ ବାଉରୀଙ୍କ ଉପରେ ବିପ୍ର କୃଷ୍ଣଦାସ ଲେଖିଥିବା ଏକ ପୋଥି ରହିଥିବାର ସେଠାକାର ଲୋକ କହିନ୍ତି। ମାତ୍ର ତାହା ଦେଖିବାର

(୭) ଦାର୍ଢ୍ୟତା ଭକ୍ତି :ପୃ.୨୨୫-୨୩୫

Digitized by srujanika@gmail.com

ସୁଯୋଗ ମୋତେ ମିଳିନଥିଲା । ମୁଁ ସେଇ ଦାସିଆ ବାଉରୀ ପୀଠକୁ ଯାଇଥିବା ଦିନ ସେଠାରେ ତେଲାଙ୍ଗ ସତ୍‌ସଙ୍ଗ ଆନୁକୂଲ୍ୟରେ ଏକ ସଂକୀର୍ତ୍ତନ ଦଳ ଭଜନ ପରିବେଷଣ କରୁଥିଲେ। ଭଜନ ବୋଲୁଥିଲେ ଜଣେ ବାରବର୍ଷ ବୟସ୍କ ୬ଷ୍ଠ ଶ୍ରେଣୀର ଛାତ୍ର ପ୍ରଶାନ୍ତ କୁମାର ପ୍ରଧାନ। ସେ ହେଉଛନ୍ତି ବରଜୋରା ଗ୍ରାମର ପକଂଜ ପ୍ରଧାନଙ୍କ ପୁତ୍ର। ସେ ତାଙ୍କ ଗୁରୁ ଡିହସାହି ଗ୍ରାମର ଭାଗବତ ପ୍ରଧାନ ଦାସିଆ ବାଉରୀଙ୍କ ଉପରେ ରଚନା କରିଥିବା ଭଜନ ବୋଲୁଥିଲେ ଅତି ସୁଲଳିତ କଣ୍ଠରେ। ତାଙ୍କର ବାହାଣ ଥିଲେ ଲିଙ୍ଗରାଜ ପରିଡ଼ା। ପାଳିଆ ଥିଲେ ସତ୍ୟବାଦୀ ପରିଡ଼ା ଓ ପ୍ରହଲାଦ ଛାଟୋଇ। ଶ୍ରୀମାନ ପ୍ରଶାନ୍ତ ବୋଲିଥିବା ଭଜନରୁ କେତୋଟି ପଂକ୍ତି ଏଠାରେ ଉଦ୍ଧାର କରାଯାଇ ପାରେ।

''ତନ୍ତ ଖଣ୍ଡେ ପକାଇଛି ତା'ର ଦାଣ୍ଡଘରେ,
ଲୁଗାବୁଣି ବିକ୍ରିକରେ ନେଇ ଯେ ବଜାରେ

* * * * *

ବଡ଼ଦାଣ୍ଡେ ମୋତେ ନେଇ ଦେବୁରେ ଛାଡ଼ି
ଶରଧାରେ ଯିବି ତୋର ଭୂଇଁରେ ଗଡ଼ି।

* * * * *

କାଠ-ପ୍ରତିମା ମଧ୍ୟରୁ ହାତ ବାହାରିଲା
ଦାସିଆ ନଡ଼ିଆ ଗୋଟି ଶୂନ୍ୟେ ଶୂନ୍ୟେ ନେଲା,
ଧନ୍ୟରେ ଦାସିଆ ବୋଲି ସର୍ବେ ଚଳିଗଲେ
ହାତ ନଥିଲା ଯା'ର ସେ କିପରି ନେଲେ।''

ଅନ୍ୟାନ୍ୟ ତଥ୍ୟ ଜାଣିବା ପାଇଁ ରେଣ୍ଢ ଗ୍ରାମର ୭୮ ବର୍ଷ ବୟସ୍କ ସ୍ୱାଧୀନତା ସଂଗ୍ରାମୀ ରଘୁନାଥ ବାରିକଙ୍କୁ ପଚାରିବାରେ ସେ କହିଥିଲେ ଯେ ଦାସିଆଙ୍କ ସମାଧିଟି ପ୍ରାୟ ୫୦୦ ବର୍ଷ ପୂର୍ବର। ଏହି ପୀଠରେ ଦୋଳ ପୂର୍ଣ୍ଣମୀ ଦିନ ଏକ ମେଳଣ ହୋଇଥାଏ। ଏହା ବାଲିଗାଁ ମେଳଣ ନାମରେ କଥିତ। ସେଦିନ ଏଠାକୁ ପ୍ରାୟ ୨୦ରୁ ୨୫ ପର୍ଯ୍ୟନ୍ତ ବିମାନ ଆସନ୍ତି। ଏହି ପୀଠରେ ଅନ୍ୟଏକ ପ୍ରଧାନ ପର୍ବ ସଂପର୍କରେ ସେ କହିଥିଲେ। ପ୍ରତ୍ୟେକ ବର୍ଷ ମାଘମାସ ବଡ଼ ଏକାଦଶୀ ଦିନଠାରୁ ୩ ଦିନ ଧରି ଏଠାରେ ଏକ ବାଉରି ବୁଣାକାର ସମ୍ମିଳନୀ ଅନୁଷ୍ଠିତ ହୁଏ। ଏଥିରେ ଓଡ଼ିଶାର ସବୁ ପ୍ରାନ୍ତରୁ ବୁଣାକାରମାନେ ଆସି ଏକ ମହୋତ୍ସବ କରନ୍ତି। ପ୍ରଥମ ଦିନ ଇଷ୍ଟ ଚଉରା ଦାସିଆ ବାଉରି ସମାଧିରେ ନୂଆ ଲୁଗା ଦିଆଯାଏ।

ଏହି ପରିପ୍ରେକ୍ଷୀରେ ଦାସିଆ ବାଉରିଙ୍କ ପରି ଜଗନ୍ନାଥଙ୍କର ଜଣେ ପରମ ଭକ୍ତଙ୍କ ଆବିର୍ଭାବ ସମୟ ଉପରେ ଏକ ସୂଚନା ଦେବା ଆବଶ୍ୟକ।

Digitized by srujanika@gmail.com

ତାଙ୍କର ଜନ୍ମ ଓ ମୃତ୍ୟୁ ବିଷୟରେ କେଉଁଠି କିଛି ସୂଚନା ଦିଆଯାଇ ନଥିଲେ ମଧ୍ୟ କେତୋଟି ସମ୍ଭାବ୍ୟ ତଥ୍ୟକୁ ବିଚାରକୁ ନେଇ କୁହାଯାଇ ପାରେ ଯେ ସୂର୍ଯ୍ୟବଂଶୀ ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ (୧୪୯୭-୧୫୪୦) ତାଙ୍କର ଆବିର୍ଭାବ, କାରଣ ଜଗନ୍ନାଥ ଦାସ ଓ ଦାସିଆ ବାଉରିଙ୍କ ମଧ୍ୟରେ ସାକ୍ଷାତ ହୋଇଥିବା ବିଷୟ ଯୁଗଳ କିଶୋର ନାୟକ ତାଙ୍କ ପୁସ୍ତକରେ ଲେଖିଛନ୍ତି। (୮) ଦାସିଆ ବାଉରି ପୀଠର ବୟୋବୃଦ୍ଧ ବ୍ୟକ୍ତି କହନ୍ତି ଯେ ତାଙ୍କ ସମାଧି ୫୦୦ ବର୍ଷର ପୁରାତନ। ଜଗନ୍ନାଥ ଦାସ ଥିଲେ ପ୍ରତାପରୁଦ୍ରଙ୍କର ସମସାମୟିକ। ତେଣୁ ୧୫୨୦ ଖ୍ରୀଷ୍ଟାବ୍ଦରୁ ୧୫୩୦ ମଧ୍ୟରେ ଦାସିଆ ବାଉରିଙ୍କର ଆବିର୍ଭାବ ହୋଇ ପାରିଥାଏ।

## ଇସଲାମ ଧର୍ମ

ପିପିଲି ଅଞ୍ଚଳରେ ଇସଲାମ୍ ଧର୍ମାବଲମ୍ବୀଙ୍କ ସଂଖ୍ୟା କମ୍ ନୁହେଁ। କେବଳ ପିପିଲି ବିଜ୍ଞାପିତ ଅଞ୍ଚଳରେ ପାଞ୍ଚ ହଜାର ମୁସଲମାନ ବାସ କରନ୍ତି। ପିପିଲି ବ୍ଲକ୍‌ରେ ଦୁଇଟି ଗ୍ରାମ ମୁସଲମାନ ଅଧ୍ୟୁଷିତ। ଗୋଟିଏ ଦାନଗହୀର ଓ ଅନ୍ୟଟି ନରସିଂହପୁର। ପିପିଲି ଠାରୁ ଡେଲାଙ୍ଗ ରାସ୍ତାରେ ୪ କିଲୋମିଟର ଦୂରରେ ଡାହାଣ ପଟେ ଦାନ ଗହୀର ଗ୍ରାମଟି ଅବସ୍ଥିତ। ସେହିପରି ପିପିଲି ବଜାର ପଛରେ ମୁସଲମାନ ବହୁଳ ନରସିଂହପୁର ଗ୍ରାମଟି ଅବସ୍ଥିତ। ଉଭୟ ଗ୍ରାମରେ ମସ୍‌ଜିଦ୍ ପୀରଙ୍କର ସମାଧିପୀଠ ଦେଖିବାକୁ ମିଳେ। ମୁଖ୍ୟ କେତୋଟି ପୀର ପୀଠର ନାମ ନିମ୍ନରେ ପ୍ରଦତ୍ତ ହେଲା।

(୧) ସୟଦ୍ ସୁଲତାନ୍ ସାହେବ---ନରସିଂହପୁର
(୨) ସିନ୍ଧୁ ବକ୍ସ ସାହେବ---ପିପିଲି ଶାସନ
(୩) ମସ୍ତ ମସ୍ତାନ---ହାଟ ନିକଟରେ
(୪)(୪) ଇମାମ୍ ଜାମିନ୍---ଭବାନୀପୁର
(୫) ଲୋଟଣୀପୀର---କଲେଜ ନିକଟସ୍ଥ ଜୟପୁର ଜିଲ୍ଲା।
(୬) ମକରବୀନ୍ ସାହେବ---ମକରବା।

ଯୁଗ ଯୁଗଧରି ମୁସଲମାନମାନେ ବାସ କରିଆସୁଥିଲେ ମଧ୍ୟ ଉଭୟ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ସୁ-ସମ୍ପର୍କ ରହି ଆସିଛି। ଏ ସଂପର୍କରେ ନରସିଂହପୁର ଗ୍ରାମର ୬୨ ବର୍ଷ ବୟସ୍କ ମୋବାରକ୍ ଖାଁ ଏକ ସାକ୍ଷାତକାରରେ କହିଥିଲେ ଯେ ତାଙ୍କ ଜୀବଦ୍ଦଶା ମଧ୍ୟରେ କେବେ ହିନ୍ଦୁ-ମୁସଲମାନ ବିବାଦ

---

(୮) ଯୁଗଳ କିଶୋର ନାୟକ: ପରମଭକ୍ତ ଦାସିଆ ବାଉରୀ, ପୃ.

Digitized by srujanika@gmail.com

ଲାଗିବାର ସେ ଜାଣି ନାହାନ୍ତି କି ପୂର୍ବରୁ ତା ଘଟିଥିବାର ମଧ୍ୟ ଶୁଣି ନାହାନ୍ତି। ବାସ୍ତବ ପକ୍ଷେ ପିପିଲି ଅଂଚଳରେ ଉଭୟ ସଂପ୍ରଦାୟ ମଧ୍ୟରେ ଥିବା ସୁସଂପର୍କର ଏକ ଉଦାହରଣ ଏଠାରେ ଦିଆଯାଇପାରେ। ରାମସାହୁ ନାମକ ଜଣେ ହିନ୍ଦୁ ଦାନଗହୀରର ମୁସଲମାନ ଅଧିବାସୀଙ୍କୁ ଅଢ଼େଇ ଏକର ଜମି ଦାନ କରିଥିଲେ ଓ ସେହି ଜମି ଉପରେ ୧୯୬୭ ମସିହାରେ ମୁସଲମାନମାନେ ଏକ ମସ୍‌ଜିଦ୍ ନିର୍ମାଣ କରିଛନ୍ତି। ହିନ୍ଦୁମାନଙ୍କର ପର୍ବପର୍ବାଣୀରେ ମୁସଲମାନମାନେ ଓ ମୁସଲମାନମାନଙ୍କର ପର୍ବରେ ହିନ୍ଦୁମାନେ ଯୋଗ ଦେଉଥିବାର ଦେଖାଯାଏ।

## ଖ୍ରୀଷ୍ଟିୟାନ ଧର୍ମ

ଊନବିଂଶ ଶତାବ୍ଦୀଠାରୁ ପିପିଲି ଖ୍ରୀଷ୍ଟିୟାନମାନଙ୍କର ବାସସ୍ଥଳୀ ଭାବେ ରହି ଆସିଛି। ଏଠାରେ ବିଭିନ୍ନ ସମୟରେ ପ୍ରତିଷ୍ଠିତ ଅନୁଷ୍ଠାନ ମାଧ୍ୟମରେ ଖ୍ରୀଷ୍ଟିୟାନ ଧର୍ମ ପ୍ରଚାର କରାଯାଇଛି। ତାହାର ଏକ ବର୍ଣ୍ଣନା ଏଠାରେ ଦିଆଗଲା। ୧୮୩୬ ଖ୍ରୀଷ୍ଟାବ୍ଦରେ ପ୍ରଥମେ ବାମଟନ ସାହେବ ପିପିଲିକୁ ସୁସମାଚାର ପ୍ରଚାର କରିବା ପାଇଁ ଆସିଥିଲେ। ମାତ୍ର ୧୮୩୯ ମସିହାରେ ଚାର୍ଲସ୍ ଲେସୀ ସାହେବ ଏହି ସ୍ଥାନକୁ ସୁସମାଚାର ପ୍ରଚାରର ଏକ କେନ୍ଦ୍ର କରିଥିଲେ। ଫଳରେ ବହୁ ଲୋକ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିଥିଲେ ଏବଂ ଏହି ଧର୍ମ ଗ୍ରହଣ କରିଥିବା ପ୍ରଥମ ବ୍ୟକ୍ତି ଥିଲେ ମାଗୁଣି ପାଢ଼।

ଯେତେ ଦୂର ଜଣାଯାଏ ୧୮୪୦ ମସିହାରେ ପିପିଲିରେ ଏକ ମଣ୍ଡଳୀ ସ୍ଥାପିତ ହୋଇଥିଲା। ମାତ୍ର ୧୮୪୮ ମସିହା ପର୍ଯ୍ୟନ୍ତ କୌଣସି ଖ୍ରୀଷ୍ଟିୟାନ ଗ୍ରାମ ପ୍ରତିଷ୍ଠିତ ହୋଇ ନଥିଲା। ଜି.ହାପ୍ ନାମକ ଜଣେ ବରିଷ୍ଠ ସରକାରୀ କର୍ମଚାରୀଙ୍କ ଉଦ୍ୟମ କ୍ରମେ ୧୮୪୮ ମସିହାରେ ପିପିଲିରେ ପ୍ରଥମେ ଖଣ୍ଡିଏ ଜମି ମିଳିଥିଲା ଓ ତାହା ଦିଆ ଯାଇଥିଲା ମିଶନକୁ। ଏଠାରେ ଗୋଟିଏ ଖ୍ରୀଷ୍ଟିୟାନ ଗ୍ରାମ ସ୍ଥାପନ ନିମନ୍ତେ ହାପି ସାହେବ ନିଜେ ୧୫୦୦ ଟଙ୍କା ଦାନ କରିଥିଲେ। ଏହି ଟଙ୍କାରେ ପ୍ରଥମେ ପିପିଲିରେ ୪ଟି ଗୃହ ନିର୍ମିତ ହୋଇଥିଲା ୧୮୪୮ ମସିହାରେ। ୧୮୪୯ ମସିହାରେ ବାଳକ ବାଳିକାଙ୍କର ଶିକ୍ଷାପାଇଁ ଏକ ସ୍କୁଲ ସ୍ଥାପିତ ହୋଇଥିଲା। ତାର ପରବର୍ଷ ୧୮୫୦ରେ ଗୋଟିଏ ଗୀର୍ଜା ନିର୍ମିତ ହୋଇଥିଲା। ୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷ ସମୟରେ ଅନାଥ ପିଲାଙ୍କ ନିମନ୍ତେ ପିପିଲିରେ ଗୋଟିଏ ଆଶ୍ରମ ସ୍ଥାପିତ ହୋଇଥିଲା। ଏଠାରେ ବିଶେଷତଃ ବସ୍ତ୍ର ବୟନ ଶିକ୍ଷା ଦିଆଯାଉଥିଲା। ୧୮୭୧ ମସିହାରେ ଏହି ଆଶ୍ରମରେ ତନ୍ତଶାଳାରେ ୧୨ଟି ତନ୍ତ ଅନବରତ କାର୍ଯ୍ୟ କରିଥିବାର ଜଣାଯାଏ।

ପିପିଲିରେ ପ୍ରଥମେ ଜଣେ ଦେଶୀୟ ପ୍ରଚାରକ ରହିଥିଲେ। ତାପରେ

Digitized by srujanika@gmail.com

ଆସିଲେ ଲେସୀ । ତାଙ୍କ ପରେ ଉଇଲିଅମ୍ ବେଲି, ଢର୍ଜଟେଲର, ଜନ୍ ଗୋଦ୍ଵବୀ, ଉଇଲିଅମ୍ ବୁକ୍‌ସ, ଉଇଲିଅମ୍ ମିଲର, ଡବ୍ଲ୍ୟୁହିଲ୍, ଟମାସ୍ ବେଲି ଓ ଆର୍.ଏଲ୍ ଲେଶୀ ଆଦି ମିଶନାରୀମାନେ ବିଭିନ୍ନ ସମୟରେ ପ୍ରଚାରକ ଭାବେ କାର୍ଯ୍ୟ କରିଥିଲେ । ଏହି ଆର୍.ଏଲ୍ ଲେଶୀ ହେଉଛନ୍ତି, ଚାର୍ଲ୍ସ ଲେଶୀଙ୍କ ପୁତ୍ର ।

ପିପିଲିସ୍ଥିତ ମଣ୍ଡଳୀ ଓ ସଣ୍ଡେ ସ୍କୁଲର ତତ୍ତ୍ଵାବଧାନ ବହୁବର୍ଷ ଯାଏ ମିଶନାରୀମାନଙ୍କ ଉପରେ ନ୍ୟସ୍ତ ଥିଲା । ପରେ ଏହି ଦାୟିତ୍ଵ ନ୍ୟସ୍ତ ହୋଇଥିଲା ଦେଶୀୟ ଖ୍ରୀଷ୍ଟିୟାନ ସଭ୍ୟଙ୍କ ଉପରେ । ପ୍ରସନ୍ନ କୁମାର ମହାନ୍ତି ଥିଲେ ଏହି ମଣ୍ଡଳୀର ପ୍ରଥମ ସଂପାଦକ ଓ ସଣ୍ଡେ ସ୍କୁଲର ପ୍ରଥମ ଅଧ୍ୟକ୍ଷ । ଦୀର୍ଘ ୪୦ ବର୍ଷ ଏହି ଗୁରୁଦାୟିତ୍ଵ ସୁଚାରୁ ରୂପେ ତୁଲାଇ ବୃଦ୍ଧାବସ୍ଥା ଓ ଶାରୀରିକ ଅକ୍ଷମତା ଯୋଗୁଁ ସେଥିରୁ ସେ ଅବ୍ୟାହତି ନେଇଥିଲେ । ପିପିଲି ସୁସମାଚାର କେନ୍ଦ୍ରଥିଲା ପୁରୀ ଜିଲ୍ଲାର ମାତୃ-ମଣ୍ଡଳୀ କେନ୍ଦ୍ର । ଏହି ପିପିଲି ଅନାଥାଶ୍ରମରୁ ବୟସ୍କ ପିଲାମାନେ ଯାଇ ବାହିଲିପଡ଼ା, ଖୋର୍ଦ୍ଧା, ଆଶ୍ରୟପୁର ଆଦି ସ୍ଥାନରେ ମଣ୍ଡଳୀ ଗଠନ କରିଥିଲେ । ମିସ୍ ପାକର ଉଇଲିଅମ୍ ବେଲୀ ଇଂଲଣ୍ଡରୁ ଆସି ପିପିଲିରେ ଦୀର୍ଘ ଦିନଧରି ଅନାଥ ବାଳିକା ଆଶ୍ରମର ଦାୟିତ୍ଵ ବହନ କରିଥିଲେ । ପ୍ରଥମେ ପିପିଲିରେ ନିର୍ମିତ ମିଶନାରୀ କୋଠୀ ସରକାରଙ୍କୁ ବିକ୍ରୟ କରାଯାଇ ଦୁଇଟି ମିସନାରୀ ପରିବାର ରହିବା ଭଳି ଗୋଟିଏ ବଡ଼ ବଙ୍ଗଳା ନିର୍ମିତ ହୋଇଥିଲା । ପ୍ରଥମଟି ଏବେ ସରକାରୀ ଡାକ-ବଙ୍ଗଳା ନାମରେ କଥିତ ।

ଖ୍ରୀଷ୍ଟିୟାନ ମିଶନାରୀମାନେ ମଧ୍ୟ ତୀର୍ଥ ଯାତ୍ରୀଙ୍କ ନିମନ୍ତେ ପିପିଲିରେ ମିଶନ ପକ୍ଷରୁ ଏକ ଛୋଟ ଧରଣର ଚିକିତ୍ସାଳୟ ସ୍ଥାପନ କରିଥିଲେ । ଏହାରି ମାଧ୍ୟମରେ ମିଶନାରୀମାନେ ଧର୍ମ ପ୍ରଚାର କରୁଥିଲେ । ପିପିଲିରେ ମଧ୍ୟ ସେମାନଙ୍କ ପକ୍ଷରୁ ଗୋଟିଏ ବୁକ୍‌ରୁମ୍ ବା ପୁସ୍ତକାଳୟ ସ୍ଥାପିତ ହୋଇ ତାହା ଦୀର୍ଘକାଳ ଧରି ତିଷ୍ଠି ରହିଥିଲା । ଏବେ ପିପିଲି ସ୍ଥିତ ମିଶନର ପୂର୍ବ ଗୌରବ ନାହିଁ । ସୁସମାଚାର କେନ୍ଦ୍ର, ଅନାଥାଶ୍ରମ, ବୁକ୍‌ରୁମ୍ ଓ ଚିକିତ୍ସାଳୟ ଆଦି ଉଠି ଯାଇଛି । ଖ୍ରୀଷ୍ଟିୟାନମାନଙ୍କ ସଂଖ୍ୟା ମଧ୍ୟ ହ୍ରାସ ପାଉଛି । ତଥାପି ସେମାନେ ଅନ୍ୟ ଧର୍ମାବଲମ୍ବୀମାନଙ୍କ ସହ ସୁସଂପର୍କ ସ୍ଥାପନ କରି ବସବାସ କରୁଛନ୍ତି ।

## ମଠ ଓ ଆଶ୍ରମ

ପିପିଲି ଭୂ-ଖଣ୍ଡ ବହୁ ମଠ ଓ ଆଶ୍ରମ ଦ୍ଵାରା ମୁଖରିତ । ତନ୍ମଧ୍ୟରୁ କେତୋଟିର ସୂଚନା ନିମ୍ନରେ ପ୍ରଦାନ କରାଯାଉଛି । ପିପିଲି ଅଞ୍ଚଳରେ ଦୁଇଟି ସଦାବର୍ତ୍ତ ମଠ ପ୍ରତିଷ୍ଠିତ ହୋଇଥିଲା ବହୁବର୍ଷ ପୂର୍ବେ । ଗୋଟିଏ ଥିଲା ପିପିଲିର ଭୁବନାନନ୍ଦ ପୋଖରୀ ନିକଟରେ ଓ ଅନ୍ୟଟି ଥିଲା ମଙ୍ଗଳପୁର ଠାରେ । ପିପିଲି ସଦାବର୍ତ୍ତ ମଠରୁ ପ୍ରତିଷ୍ଠାତା ଥିଲେ ରଘୁଦାସ । ଉକ୍ତ କଟକ-ପୁରୀ ଜଗନ୍ନାଥ

Digitized by srujanika@gmail.com

ସଡ଼କର ପାର୍ଶ୍ୱ ଦେଶରେ ଅବସ୍ଥିତ ଥିଲା। ଅବଶ୍ୟ ସେଗୁଡ଼ିକ ଏବେ ଭଗ୍ନସ୍ତୂପରେ ପରିଣତ ହୋଇଛି। ସେ ସମ୍ବନ୍ଧରେ ପୂର୍ବରୁ ସୂଚନା ଦିଆଯାଇଛି। ଏତଦ୍ ବ୍ୟତୀତ ନୂଆହାଟ ଗ୍ରାମରେ ଗୌଡ଼ୀୟ ମଠ ଓ ମଦନ ମଠ ନାମରେ ଦୁଇଟି ମଠ, ବାଲିଗାଁରେ ଗୋଟିଏ ମଠ, ଦାଣ୍ଡମୁକୁନ୍ଦପୁରସ୍ଥ ବାସୁଦେଇପୁରଠାରେ ରାମଦାସ ମଠ, ଦାଣ୍ଡମୁକୁନ୍ଦପୁରରେ ସାଲବେଗ ମଠ, ଡେଲାଙ୍ଗ ଷ୍ଟେସନ ନିକଟବର୍ତ୍ତୀ ଗୁଆଳିପଡ଼ାରେ ପତିତପାବନ ମଠ ପ୍ରତିଷ୍ଠିତ ହୋଇଛି। ସେହିପରି ମଠ ଗାଡ଼ିଆରେ ମଧ୍ୟ ୧୦୦ ବର୍ଷରୁ ଊର୍ଦ୍ଧ୍ୱ ଏକ ପୁରାତନ ମଠ ଥିଲା। ତାହା ଏବେ ମଠସାହି ଗ୍ରାମ ନାମରେ କଥିତ। ଏହି ଗ୍ରାମର ୬୧ ବର୍ଷ ବୟସ୍କ ଅର୍ଜ୍ଜୁନ ମହାନ୍ତି ଏକ ସାକ୍ଷାତକାରରେ କହିଛନ୍ତି ଯେ, ଏହି ମଠ ଦୟାନଦୀର ଏକ ପ୍ରଳୟଙ୍କରୀ ବନ୍ୟାରେ ଲୋପ ପାଇଯାଇଛି। ବର୍ତ୍ତମାନ ସୁଦ୍ଧା ଡେଲାଙ୍ଗର ଅନତି ଦୂରରେ ପ୍ରସିଦ୍ଧ ବେନୁପଡ଼ା ମଠ ତା'ର ପୂର୍ବ ପ୍ରତିଷ୍ଠା ବଜାୟ ରଖିଛି। ଏହି ବେନୁପଡ଼ା ମଠ' ଉପରେ କିଞ୍ଚିତ ଆଲୋକପାତ କରିବା ପ୍ରାସଙ୍ଗିକ ହେବ।

## ବେନୁପଡ଼ା ମଠ

ବେନୁପଡ଼ା ମଠ ପିପିଲି-ଡେ଼ଲାଙ୍ଗ ଭୂଖଣ୍ଡରେ ଏକ ସିଦ୍ଧପୀଠ ଭାବରେ ସୁବିଦିତ। ଏହା ଡେ଼ଲାଙ୍ଗ କୋଠବାଡ଼ ପଞ୍ଚାୟତ ଅନ୍ତର୍ଗତ ବେନୁପଡ଼ା ଗ୍ରାମରେ ଅବସ୍ଥିତ। କଣାସରୋଡ଼ ରେଳ ଷ୍ଟେସନ ଠାରୁ ଡେ଼ଲାଙ୍ଗ-କଣାସ ରାସ୍ତାରେ ମାତ୍ର ଦେଢ଼ କିଲୋମିଟର ଦୂରରେ ଏହି ମଠର ଅବସ୍ଥିତି। ଏହା ୨୫୦ ବର୍ଷର ପୁରାତନ ବୋଲି ଜଣାଯାଏ। ସିଦ୍ଧପୁରୁଷ ବାଇଧର ଦାସ ଏହି ମଠର ପ୍ରତିଷ୍ଠାତା। ସେ ପ୍ରଥମେ ଉଷୁନା ବରପଦା ଗ୍ରାମର ଚନ୍ଦ୍ରଚୋର ବାହିନୀପତିଙ୍କ ଘରେ ଜଣେ ମୂଲିଆ ଭାବେ କାର୍ଯ୍ୟ କରୁଥିଲେ। ପରେ ପରେ ତାଙ୍କର ଦିବ୍ୟଜ୍ଞାନ ଲାଭ ହୋଇଥିଲା। ତେଣୁ ଚନ୍ଦ୍ରଚୋର ବାହିନୀପତିଙ୍କ ଉତ୍ତରାଧିକାରୀଙ୍କଠାରୁ ୯ ଏକର ୨୫ ଡ଼ିସମିଲ ଜମି ଦାନସୂତ୍ରରେ ପାଇ ସେଠାରେ ସେ ଏକ ଗାଦି ପ୍ରତିଷ୍ଠା କରିଥିଲେ। ସେହି ବାଇଧର ଦାସ ହେଉଛନ୍ତି ଏହି ମଠର ପ୍ରଥମ ମଠାଧୀଶ। ପରେ ପରେ ଦୀନକୃଷ୍ଣ ଦାସ, ଆର୍ତ୍ତ ଦାସ, ମାଧବ ଦାସ ଓ ନୀଳାଦ୍ରି ଦାସ ଉକ୍ତ ପଦବୀରେ ଅଧିଷ୍ଠିତ ହୋଇଥିଲେ। ମହାପୁରୁଷ ନୀଳାଦ୍ରି ଦାସଙ୍କ ଦେହତ୍ୟାଗ ପରେ ମହନ୍ତମାନେ ମଠାଧୀଶ ହୋଇଥିଲେ। କ୍ରମାନୁସାରେ ସେହି ମଠର ମହନ୍ତମାନେ ହେଲେ ଭରତ ଦାସ, ମଦନମୋହନ ଦାସ, ବେଣୁଧର ଦାସ, ପଦ୍ମଚରଣ ଦାସ, ପୂର୍ଣ୍ଣଚନ୍ଦ୍ର ଦାସ ଓ କୃଷ୍ଣଚନ୍ଦ୍ର ଦାସ। ୧୯୯୩ ମସିହା ଜାନୁଆରୀ ୨୨ ତାରିଖଠାରୁ କୃଷ୍ଣଚନ୍ଦ୍ର ଦାସ ଏହି ମଠର ମହନ୍ତ ପଦରେ ଅଧିଷ୍ଠିତ ହୋଇଛନ୍ତି। ମହାପୁରୁଷ ଆର୍ତ୍ତ ଦାସଙ୍କ ସମୟରେ ଏହି ମଠର ମାହାତ୍ମ୍ୟ ସମଗ୍ର ଓଡ଼ିଶାରେ ପରିବ୍ୟାପ୍ତ ହୋଇଥିଲା।

Digitized by srujanika@gmail.com

ଏହି ବେନୁପଡ଼ା ମଠରେ ପୂଜିତ ହେଉଥିବା ବିଗ୍ରହ ହେଲେ ମଦନମୋହନ, ଲକ୍ଷ୍ମୀ ଓ ସରସ୍ୱତୀ। ଅକ୍ଷୟ ତୃତୀୟା, ଚନ୍ଦନ ଯାତ୍ରା ଓ ଅଂଳା ନବମୀ ଏହି ମଠର ପ୍ରଧାନ ପର୍ବ। କେବଳ ଅଂଳା ନବମୀ ଦିନ ୯୬୦ ସେର ଅରୁଆ ଚାଉଳ ରୋଷେଇ କରାଯାଇ ଭକ୍ତମାନଙ୍କୁ ବିତରଣ କରାଯାଏ। ଅତିଥି ସତ୍କାର ଏହି ମଠର ଏକ ପ୍ରଧାନ ବୈଶିଷ୍ଟ। ପ୍ରତ୍ୟହ ଏହି ମଠକୁ ଯେତେସଂଖ୍ୟକ ଆଗନ୍ତୁକ ଆସିଲେ ମଧ୍ୟ ସେମାନଙ୍କୁ ବିନାମୂଲ୍ୟରେ ଭୋଜନ ମିଳିଥାଏ। ମଠର ବର୍ତ୍ତମାନ ସମ୍ପତ୍ତିର ପରିମାଣ ୯୦ ଏକର। ଏହି ମଠର ବୈଶିଷ୍ଟ୍ୟ ଉପରେ ମହାପୁରୁଷ ଆର୍ତ୍ତ ଦାସ ଲେଖିଛନ୍ତି-

"ଧନ୍ୟ ବେନୁପଡ଼ା ଏ ମଠ
ମର୍ତ୍ତପୁରେ ଅବତାର ବୈକୁଣ୍ଠ,
ଗୋପ, ବୃନ୍ଦାବନ, ଦ୍ୱାରକା, ମଥୁରା
ଚାରିଧାମ ତୀର୍ଥ ଏକତ୍ର ପେଣ୍ଠ।"

ଏହି ଆର୍ତ୍ତ ଦାସଙ୍କ ଦ୍ୱାରା ରଚିତ ଭବିଷ୍ୟ ମାଳିକା ସମଗ୍ର ରାଜ୍ୟରେ ବେଶ୍ ଲୋକପ୍ରିୟ।

## ପିପିଲି ଅଞ୍ଚଳର ଆଶ୍ରମ

ପିପିଲି ଡ଼େଲାଙ୍ଗ ଅଞ୍ଚଳରେ ବହୁ ଆଶ୍ରମ ପ୍ରତିଷ୍ଠିତ ହୋଇଥିବାର ଦେଖାଯାଏ। ତନ୍ମଧ୍ୟରୁ ଡ଼େଲାଙ୍ଗ ଅଞ୍ଚଳର ଅଭିରାମ ପରମହଂସଙ୍କ କରମଳା ମଠ ଅନ୍ୟତମ। ପିପିଲିର ସଦାବର୍ତ୍ତ ମଠ ସ୍ଥାନରେ ପ୍ରତିଷ୍ଠିତ ନିଗମାନନ୍ଦ ପରମହଂସଙ୍କର ଜୟଗୁରୁ ଆଶ୍ରମର ନାମ ଉଲ୍ଲେଖଯୋଗ୍ୟ। ଡ଼େଲାଙ୍ଗ ଷ୍ଟେସନ ନିକଟରେ ଏବେ ଗୋଟିଏ ଭାଗବତ ସଂଘ ପ୍ରତିଷ୍ଠିତ ହୋଇ ୧୯୯୧ ମସିହାରେ ରେଜିଷ୍ଟ୍ରିଭୁକ୍ତ ହୋଇଛି। ପ୍ରତ୍ୟହ ଏଠାରେ ସତ୍‌ସଙ୍ଗ ହେବା ବ୍ୟତୀତ ସାଂସ୍କୃତିକ, ଆଧାତ୍ମିକ ଓ ସେବାମୂଳକ କାର୍ଯ୍ୟକ୍ରମ ଗ୍ରହଣ କରାଯାଏ ବୋଲି ଏହାର କର୍ମକର୍ତ୍ତାଙ୍କ ଠାରୁ ପ୍ରକାଶ। ପଣ୍ଡିତ କୃଷ୍ଣାନନ୍ଦ ଦାସ ଏହାର ସଭାପତି, ଦୁଃଖୀଶ୍ୟାମ ମହାନ୍ତି ସଂପାଦକ, ଦୁର୍ଯ୍ୟୋଧନ ସ୍ୱାଇଁ ସହସଂପାଦକ, ଦିବାକର ପରିଡ଼ା ସହକାରୀ ସଂପାଦକ ଓ ଗୋପୀନାଥ ଦାସ କୋଷାଧ୍ୟକ୍ଷ ଭାବେ କାର୍ଯ୍ୟ କରୁଛନ୍ତି। ବର୍ତ୍ତମାନ ଏହାର ସଭ୍ୟସଂଖ୍ୟା ୧୨୦ ଥିବାର ଜଣାଯାଏ। ପିପିଲିରେ ମଧ୍ୟ ଏକ ଅରବିନ୍ଦ ଆଶ୍ରମ ୧୯୮୦ ମସିହାରେ ସ୍ଥାପନ କରାଯାଇଛି। ଏହା ପଶୁଡ଼ାକ୍ତରଖାନା ପାର୍ଶ୍ୱରେ ଅବସ୍ଥିତ। ଏହାର ମୁଖ୍ୟ ପରିଚାଳକ ହେଉଛନ୍ତି ପିପିଲିର ଦେବେନ୍ଦ୍ର କୁମାର ସାହୁ, ପ୍ରଫୁଲ୍ଲ ମିଶ୍ର ଓ ବେଣୁଧର ମହାନ୍ତି। ଏତଦ୍‌ବ୍ୟତୀତ ନୀଳାଚଳ ସାରସ୍ୱତ ସଂଘ ପୁରୀର ଏକ ଶାଖା ପିପିଲିଠାରେ ୧୯୭୮ ମସିହାରେ ପ୍ରତିଷ୍ଠା କରାଯାଇଛି।

Digitized by srujanika@gmail.com

ଏହା ପ୍ରଥମେ ଏକ ଭଡ଼ାଘରେ କାର୍ଯ୍ୟ କରୁଥିଲା । ମାତ୍ର ୩ ବର୍ଷହେଲା ଏହା ନବନିର୍ମିତ ଗୃହକୁ ସ୍ଥାନାନ୍ତରୀତ ହୋଇଛି । ୨୭ ଜଣ ସଦସ୍ୟ ବିଶିଷ୍ଟ ଏହି ସଂଘର ସଭାପତି ହେଉଛନ୍ତି ଦାଣ୍ଡମୁକୁନ୍ଦପୁରର ଲଳିତକୃଷ୍ଣ ପଟ୍ଟନାୟକ । ମଙ୍ଗଳପୁରର ପୂର୍ଣ୍ଣଚନ୍ଦ୍ର ବାରିକ ଏହାର ସଂପାଦକ ଭାବରେ କାର୍ଯ୍ୟ କରୁଛନ୍ତି । ସଡ଼ାଙ୍ଗୋଇ, ମଙ୍ଗଳପୁର ଓ ମୋଟରୀଠାରେ ଏହାର ଶାଖାମାନ ପ୍ରତିଷ୍ଠିତ ହୋଇଛି । ଏହି ଅନୁଷ୍ଠାନ ଆନୁକୁଲ୍ୟରେ ଦୋଳପୂର୍ଣ୍ଣମୀ, ରାସପୂର୍ଣ୍ଣମୀ, ପ୍ରଥମାଷ୍ଟମୀ ଓ ବାର୍ଷିକ ଉତ୍ସବ ପ୍ରଧାନ ପର୍ବଭାବେ ପାଳିତ ହୋଇଥାଏ । ଶନିବାର ଦିନ ପ୍ରସାଦଭୋଗ ଦିଆଯାଉଥିବା ସ୍ଥଳେ ଅନ୍ୟଦିନ ମାନଙ୍କରେ ଶୁଖିଲା ନୈବେଦ୍ୟ ଦିଆଯାଇଥାଏ ।

ପିପିଲି ବ୍ଳକ୍‌ରେ ମଧ୍ୟ ଅନ୍ୟ ଏକ ଆଶ୍ରମ ଆମର ଦୃଷ୍ଟିଗୋଚର ହୋଇଥାଏ ପାଣିଦୋଳ ଗ୍ରାମରେ । ତାହା ପୂର୍ଣ୍ଣାନନ୍ଦ ଆଶ୍ରମ ନାମରେ କଥିତ । ପିପିଲିଠାରୁ ଏହାର ଦୂରତ୍ୱ ୬ କିଲୋମିଟର । ପିପିଲିଠାରୁ ଗଲେ ମଠସାହି-ଡେଲାଙ୍ଗ ରାସ୍ତାରେ ଏହା ପଡ଼ିଥାଏ । ମାତ୍ର ମୋଟରୀ ରାସ୍ତାରେ ଗଲେ ଏହାର ଦୂରତ୍ୱ ମଠସାହିଠାରୁ ମାତ୍ର ୩ କିଲୋମିଟର । ଏକ ଜନଶ୍ରୁତି ଅନୁଯାୟୀ ଥରେ ଖୋର୍ଦ୍ଧାର ଜନୈକ ରାଜା ବର୍ଷା ସମୟରେ ନରସିଂହପୁର ଯାଉଥିବାବେଳେ ପାଣିଘେରରେ ରହିଥିବା ଏହି ଗ୍ରାମଟିକୁ ଦୂରରୁ ଦେଖି ପାଣି-ଦେଉଳ ବୋଲି କହିଥିଲେ । ତାହା କାଳକ୍ରମେ ଅପଭ୍ରଂଶ ହୋଇ ଏବେ ପାଣିଦୋଳ ହୋଇଛି ।

ଏହି ପୂର୍ଣ୍ଣାନନ୍ଦ ଆଶ୍ରମର ପ୍ରତିଷ୍ଠାତା ହେଉଛନ୍ତି ପୂର୍ଣ୍ଣାନନ୍ଦ ସ୍ୱାଇଁ (ଗୋସ୍ୱାମୀ) । ଶଙ୍କରାଚାର୍ଯ୍ୟ ମାର୍ଗରେ ଦୀକ୍ଷିତ ଏହି ପୂର୍ଣ୍ଣାନନ୍ଦ ସ୍ୱାଇଁଙ୍କ ଘର ଗଞ୍ଜାମ ଜିଲ୍ଲାସ୍ଥିତ ଋଷିକୁଲ୍ୟା ନଦୀ କୂଳରେ ଥିବା ହଂସପୁରା ଗ୍ରାମରେ । ସେ ୧୮ ବର୍ଷକାଳ ରେଙ୍ଗୁନ୍‌ରେ କାମ କରିବାପରେ ତାଙ୍କର ଜ୍ଞାନୋଦୟ ହେଲା । ସେ ଓଡ଼ିଶାକୁ ୧୯୩୫ ରେ ଫେରିଆସି ଏକ ଆଶ୍ରମ ପ୍ରତିଷ୍ଠା କଲେ । ୧୯୫୪ରେ ତାଙ୍କର ପରଲୋକ ହୋଇଛି । ଏହି ଆଶ୍ରମଟି ପ୍ରଥମେ ଚାଳଘରେ କାର୍ଯ୍ୟ କରୁଥିଲା । ୧୯୬୯ରେ ଏଠାରେ ଏକ ପକ୍କାଘର ନିର୍ମାଣ କରାଯାଇ ତାହାରି ମଧ୍ୟରେ ଆଶ୍ରମଟି ଅବସ୍ଥାପିତ ହୋଇଛି । ବର୍ତ୍ତମାନ ଆଶ୍ରମର ପରିଚାଳକ ହେଉଛନ୍ତି ବୃନ୍ଦିରାମ ଦାସ । ଏହି ଆଶ୍ରମରେ ଭକ୍ତମାନଙ୍କୁ ରାମାୟଣ, ଭାଗବତ ଓ ଗୀତା ଆଦି ପାଠ କରାଯାଇ ବୁଝାଇ ଦିଆଯାଏ । ଗୃହସ୍ଥାଶ୍ରମ ଶ୍ରେଷ୍ଠ ବୋଲି ଶିଷ୍ୟମାନଙ୍କୁ କୁହାଯାଇ ତା' ମଧ୍ୟରେ ଭଗବତ୍ ପ୍ରେରଣା କିପରି ମିଳିବ ତାହା ବୁଝାଇ ଦିଆଯାଏ । ଆଶ୍ରମର ପରିଚାଳକ ଉତ୍କଳୀୟ ବୈଷ୍ଣବ ମତବାଦର ପ୍ରବକ୍ତା । ବୁଦ୍ଧ ପୂର୍ଣ୍ଣିମା ଓ ନୃସିଂହ ଜନ୍ମ ଏହି ଆଶ୍ରମର ବଡ଼ ପର୍ବ ଓ ସେହିଦିନ ପ୍ରାୟ ୧୦ ହଜାର ଲୋକଙ୍କର ଏଠାରେ ସମାଗମ ହୋଇଥାଏ । ଏତଦ୍‌ବ୍ୟତୀତ ଦଶହରା, ସାବିତ୍ରୀ ଅମାବାସ୍ୟା, କୁମାରୋତ୍ସବ ଓ ଦୋଳପୂର୍ଣ୍ଣିମା ଆଦି ପର୍ବମାନ ଆଶ୍ରମରେ ପାଳିତ

Digitized by srujanika@gmail.com

ହୋଇଥାଏ । ଏହି ଆଶ୍ରମର ଶାଖାମାନ ପିପିଲି ଥାନା ଅନ୍ତର୍ଗତ ଦାଣ୍ଡମୁକୁନ୍ଦପୁରର ଷଷଣ, ନୂଆଶାସନ ପଞ୍ଚାୟତର ସଁପୁର, କଣ୍ଟି ପଞ୍ଚାୟତ ଅନ୍ତର୍ଗତ ବାରିମୂଳ, ମଙ୍ଗଳପୁର ପଞ୍ଚାୟତ ଅନ୍ତର୍ଗତ ବଧୀ, ଠଣ୍ଠଣା, ମୂର୍ଦ୍ଧ୍ନୀପୁର ଓ ବାହାବଙ୍କାଠାରେ ପ୍ରତିଷ୍ଠିତ ହୋଇଛି । ପିପିଲି ବାହାରେ କଟକ ରଘୁନାଥପୁର ବ୍ଲକ୍ ଅନ୍ତର୍ଗତ କଲିଅନ୍ତା, ତାରାପୁର ବ୍ଲକ୍ ଅନ୍ତର୍ଗତ ଚିକିଣିଆ, ଗୋବିନ୍ଦପୁର ଓ ବିଲିପଡ଼ାଠାରେ ଏହି ଆଶ୍ରମର ଶାଖାମାନ ରହିଛି । ସେହିପରି ମଠସାହି ଛକରୁ ଅଧ କିଲୋମିଟର ଗଲେ ପାଟଯୋଶୀପୁରଠାରେ ଅନ୍ୟ ଏକ ଆଶ୍ରମ ରହିଥିବାର ଦେଖାଯାଏ । ସନାତନ ଧର୍ମର ପ୍ରବକ୍ତା ବାବାଜୀ ୧୦୮ ପରଶୁରାମ ପରମହଂସ ୧୯୭୧ ମସିହାରେ ପ୍ରତିଷ୍ଠା କରିଥିବାର ଜଣାଯାଏ । ଏବେ ଏଠାରେ ୫୨ ବର୍ଷ ବୟସ୍କ ବାବା ଉଦ୍ଧବ ଦାସ ଅବସ୍ଥାନ କରୁଛନ୍ତି । ବେଲୁଡ଼ି ଆଶ୍ରମ ଉଦାସୀ ସଂପ୍ରଦାୟ ସହିତ ଏହି ଆଶ୍ରମର ସଂପର୍କ ରହିଥିବାର ଜଣାଯାଏ । ଏଠାରେ ଶାଳଗ୍ରାମ ପୂଜିତ ହେଉଛନ୍ତି । ବାଲଧୂପ, ସନ୍ଧ୍ୟାଧୂପ ଓ ଦୁଇ ଓଳି ନୈବେଦ୍ୟ ଦିଆ ଯାଇଥାଏ ।

ଏହାବ୍ୟତୀତ ଆରୁହା ପାଟଶାଣୀପୁର ଗ୍ରାମରେ ପୂର୍ଣ୍ଣାନନ୍ଦ ଗୋସ୍ୱାମୀଙ୍କର ଦୁଇଟି ଆଶ୍ରମ ରହିଛି । ଗୋଟିଏ ଆଶ୍ରମରେ ସୁବଳ ଦଳାଇ ଗୁରୁଥିବା ବେଳେ ଅନ୍ୟ ଆଶ୍ରମଟିର ଲଡୁ କିଶୋର ଦାସ ଗୁରୁ ଅଛନ୍ତି । ଏହି ଦୁଇଟି ଆଶ୍ରମରେ ଶତାଧିକ ପୁରୁଷ ଓ ସ୍ତ୍ରୀ ପୂର୍ଣ୍ଣାନନ୍ଦ ଧର୍ମରେ ଦୀକ୍ଷିତ ହୋଇଛନ୍ତି । ବ୍ରାହ୍ମଣଠାରୁ ଶୁଦ୍ର ପର୍ଯ୍ୟନ୍ତ ସବୁ ଜାତିର ଲୋକ ଏହି ଧର୍ମ ଗ୍ରହଣ କରିଥିବାର ଜଣାଯାଏ ।

## ପ୍ରଜାପିତା ବ୍ରହ୍ମାକୁମାରୀ ଆଶ୍ରମ

୧୯୮୬ ମସିହା ଅକ୍ଟୋବର ୨୨ ତାରିଖ ଦିନ ପ୍ରଜାପିତା ବ୍ରହ୍ମାକୁମାରୀ ଈଶ୍ୱରୀୟ ସଂସ୍ଥାର ଏକ ଶାଖା ପିପିଲିଠାରେ ପ୍ରତିଷ୍ଠିତ ହୋଇଛି । ସେଠାରେ ଗୀତାଜ୍ଞାନ ଭବନ ମଧ୍ୟ ସ୍ଥାପିତ ହୋଇଛି । ପ୍ରଥମେ ଏଥିରେ ୬୦ ଜଣ ସଦସ୍ୟ ଥିଲେ । ବର୍ତ୍ତମାନ ଏହା ବିଜୟାଶ୍ରୀ ଟକିଜ୍ ନିକଟରେ କାଶିନାଥ ସାହୁଙ୍କ ପ୍ରଦତ୍ତ ଏକ ଗୃହରେ ଅନୁଷ୍ଠିତ ହେଉଅଛି । ମାତ୍ର, ଏହାର ସଭ୍ୟ ସଂଖ୍ୟା ୨୯ କୁ କମି ଆସିଛି ।

□ □ □

Digitized by srujanika@gmail.com

# ଅଷ୍ଟମ ଅଧ୍ୟାୟ

## ପ୍ରତ୍ନତାତ୍ତ୍ୱିକ ବିଭବର ଗନ୍ତାଘର-ପିପିଲି

ପିପିଲି ପ୍ରତ୍ନତାତ୍ତ୍ୱିକ ବିଭବର ଏକ ଗନ୍ତାଘର କହିଲେ ଅତ୍ୟୁକ୍ତି ହେବନାହିଁ। ଏହା ମୂଳରେ କେତୋଟି ସମ୍ଭାବ୍ୟ କାରଣ ନିହିତ। ପ୍ରଥମତଃ ସୁବର୍ଣ୍ଣ ତ୍ରିଭୁଜ ନାମରେ କଥିତ ପୁରୀ, କୋଣାର୍କ ଓ ଭୁବନେଶ୍ୱରର କେନ୍ଦ୍ରବିନ୍ଦୁରେ ପିପିଲି ଭୂଖଣ୍ଡର ଅବସ୍ଥିତି। ସେହି ୩ଟି ସ୍ଥାନ ବହୁ ପ୍ରତ୍ନତାତ୍ତ୍ୱିକ ବିଭବରେ ବିମଣ୍ଡିତ। ତେଣୁ ତା'ର ପ୍ରଭାବ ପିପିଲି ଭୂଖଣ୍ଡରେ ପଡ଼ିବା ସ୍ୱାଭାବିକ। ସେହିପରି ଧଉଳି ପର୍ବତ ସମେତ ପିପିଲି ଭୂଖଣ୍ଡରେ ବିଶ୍ୱନାଥ ମୁଣ୍ଡିଆ, ବକ୍ରେଶ୍ୱର ମୁଣ୍ଡିଆ, ନିଜଗଡ଼କୁରୁକି ମୁଣ୍ଡିଆରେ ଲେଟେରାଇଟ ପ୍ରସ୍ତର ପ୍ରଚୁର ପରିମାଣରେ ମିଳିଥିବାରୁ ଗଡ଼ ଓ ମନ୍ଦିର ଆଦିର ନିର୍ମାଣ କାର୍ଯ୍ୟରେ ତାହା ବ୍ୟବହୃତ ହୋଇଥିଲା। ଏ ସମ୍ପର୍କରେ ପ୍ୟାରୀମୋହନ ଆଚାର୍ଯ୍ୟ; ଲେଖିଛନ୍ତି, ଏପରିକି ୧୬୦ ହାତ ଉଚ୍ଚ ଧଉଳୀ ପର୍ବତରୁ ପ୍ରସ୍ତର ନେଇ କୋଣାର୍କ ଓ ଅନ୍ୟାନ୍ୟ ମନ୍ଦିର ନିର୍ମିତ ହୋଇଥିଲା।(୧)। ପୁନଶ୍ଚ ପିପିଲିର ଭୌଗୋଳିକ ଓ ସାମରିକ ଗୁରୁତ୍ୱପାଇଁ ଏହାର ପାର୍ଶ୍ୱବର୍ତ୍ତୀ ଅଂଚଳରେ ବହୁ ଦୁର୍ଗ ବା ଗଡ଼ ନିର୍ମାଣର ଆବଶ୍ୟକତା ପଡ଼ିଥିଲା। ପୂର୍ବରୁ ସୂଚନା ଦିଆଯାଇଛି, ଯେ ମୋଗଲମାନଙ୍କଠାରୁ ଇଂରେଜମାନଙ୍କ ପର୍ଯ୍ୟନ୍ତ ପିପିଲିରେ ପ୍ରତ୍ୟେକ ଶକ୍ତି ନିଜ ନିଜର ସେନାଛାଉଣୀ ପ୍ରତିଷ୍ଠା କରିଥିଲେ। ସେଥିପାଇଁ ପିପିଲି ଓ ଡେଲାଙ୍ଗ ଅଂଞ୍ଚଳରେ କେତେକ ଗଡ଼ ନିର୍ମାଣ କରାଯାଇଥିଲା। ଏତଦ୍ ବ୍ୟତୀତ ପିପିଲି ଜଗନ୍ନାଥ ସଡ଼କର ପାର୍ଶ୍ୱରେ ଅବସ୍ଥିତ ଥିବାରୁ ଭାରତର ବିଭିନ୍ନ

---

(୧) ପ୍ୟାରୀମୋହନ ଆଚାର୍ଯ୍ୟ: ଓଡ଼ିଶାର ଇତିହାସ (୩ୟ ସଂସ୍କରଣ)-ପୃ.୪୦



Digitized by srujanika@gmail.com

ପ୍ରାନ୍ତରୁ ପୁରୀକୁ ତୀର୍ଥକରି ଯାଉଥିବା ଲକ୍ଷାଧିକ ଯାତ୍ରୀଙ୍କୁ ପାନୀୟ ଓ ସ୍ନାନ କରିବାପାଇଁ ଜଳ ଯୋଗାଇବା ନିମନ୍ତେ ସଡ଼କର ଉଭୟ ପାର୍ଶ୍ୱରେ ବହୁ ସଂଖ୍ୟକ ପୁଷ୍କରିଣୀ ଓ କୂପ ଖନନ କରିବାର ଆବଶ୍ୟକତା ପଡ଼ିଥିଲା। ସେହିପରି ବହୁ ମୁସଲମାନ ଓ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ଲୋକେ ଏ ଅଂଚଳରେ ବାସ କରୁଥିବାରୁ ସେମାନଙ୍କର ଉପାସନା ସ୍ଥଳର ଆବଶ୍ୟକତା ପଡ଼ିଥିଲା। ତେଣୁ ପିପିଲି ଭୂଖଣ୍ଡରେ ବହୁ ସଂଖ୍ୟକ ଗଡ଼ ବା ଦୁର୍ଗ, ମନ୍ଦିର, ମୂର୍ତ୍ତି, କୂପ ଓ ପୁଷ୍କରିଣୀ ରହିଥିବାର ଦେଖାଯାଏ। ସେ ସବୁର ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦତ୍ତ ହୋଇଛି।

## ଗଡ଼ (ଦୁର୍ଗ), ଗୁମ୍ଫା, କୂପ ଓ ପୁଷ୍କରିଣୀ

### ଗଡ଼ କୁମାରେଶ୍ୱର

ପିପିଲି ଥାନା ଅନ୍ତର୍ଗତ ଯଶୁଆପୁର ପଞ୍ଚାୟତରେ ଗଡ଼ କୁମାରେଶ୍ୱର ଅବସ୍ଥିତ ଥିଲା। ଏହା କୁମାରେଶ୍ୱର ମହାଦେବଙ୍କ ନାମରେ ନାମିତ। ଏହାର ଦକ୍ଷିଣ-ପଶ୍ଚିମ ଦିଗରେ ରତ୍ନଚିରା ନଦୀ ପ୍ରବାହିତ ହେଉଥିଲା। ଚତୁର୍ଦ୍ଦିଗରେ ଥିଲା ନିବିଡ଼ ଜଙ୍ଗଲ। ଶତ୍ରୁଙ୍କ ଆକ୍ରମଣର ଆଶଙ୍କାକରି ଏହି ଗଡ଼ମଧ୍ୟକୁ କୌଣସି ରାସ୍ତା ରଖା ଯାଇନଥିଲା। ସମ୍ଭବତଃ ଏହି ଗଡ଼ ଚାଲୁକ୍ୟବଂଶର ରାଜା ମୁକୁନ୍ଦଦେବ ହରିଚନ୍ଦନଙ୍କ ରାଜତ୍ୱ (୧୫୫୯-୧୫୬୯)ରେ ନିର୍ମିତ ହୋଇଥିଲା। କାରଣ ପ୍ୟାରୀମୋହନ ଆଚାର୍ଯ୍ୟ ଲେଖିଛନ୍ତି ଯେ ପିପିଲି-ଦାଣ୍ଡମୁକୁନ୍ଦପୁରଠାରେ ଭୋଇବଂଶୀୟ ରାଜାଙ୍କର ନଅର ଓ ଦୁର୍ଗଥିଲା। ମୁକୁନ୍ଦଦେବଙ୍କୁ ମଧ୍ୟ କେହି କେହି ଭୋଇବଂଶୀୟ ନରପତି ବୋଲି କହିଥାଆନ୍ତି। ଉକ୍ତ ବଂଶରେ ମୁକୁନ୍ଦଦେବଙ୍କ ବ୍ୟତୀତ ଅନ୍ୟ କୌଣସି ରାଜା ଏତେ ଶକ୍ତିଶାଳୀ ନଥିଲେ କି ସେମାନଙ୍କ ସାମ୍ରାଜ୍ୟକୁ ଶତ୍ରୁଙ୍କ ଆକ୍ରମଣରୁ ରକ୍ଷା କରିବାପାଇଁ ଯତ୍ନବାନ ହୋଇନଥିଲେ। ଏସବୁକୁ ବିଚାରକୁ ନେଲେ ଉକ୍ତ ଗଡ଼ର ନିର୍ମାତା ମୁକୁନ୍ଦଦେବ ହରିଚନ୍ଦନ ହୋଇପାରିଥାଆନ୍ତି। ଏହି ଗଡ଼ଟିରେ ରାଜାଙ୍କର ଏକ ପାଇକବାହିନୀ ଅବସ୍ଥାପିତ ହୋଇଥଲା ଓ ଏହା ସଦାସର୍ବଦା ପ୍ରସ୍ତୁତ ହୋଇ ରହିଥିଲା ଶତ୍ରୁ ପକ୍ଷଙ୍କର ମୁକାବିଲା କରିବାପାଇଁ। ଗଡ଼ର ଚତୁଃପାର୍ଶ୍ୱରେ ଅବସ୍ଥିତ ୩ଟି ଗ୍ରାମର ୫୩ଟି ପଡ଼ାରୁ ପାଇକମାନେ ନିଯୁକ୍ତ ହୋଇଥିଲେ। ତନ୍ମଧ୍ୟରୁ ଥିଲା ଗଡ଼ କୁମାରେଶ୍ୱରରେ ୧୨ଟି, ବଳରାମପୁରରେ ୨୯ଟି ଓ କେଶଦାରେ ୧୨ଟି ପଡ଼ା। ଏହି ପାଇକମାନେ ବିଜୟାଦଶମୀ ପର୍ବ ମହାସମାରୋହରେ ପାଳନ କରୁଥିଲେ। ସେହି ସ୍ଥାନଟି ଏବେ ମଧ୍ୟ ଦଶହରା ପଡ଼ିଆ ନାମରେ କଥିତ। ଗଡ଼ର କେନ୍ଦ୍ର ମଧ୍ୟରେ ଦେବୀ ଉତ୍ତରାୟଣୀଙ୍କର

Digitized by srujanika@gmail.com

ପୀଠ। ସାଧାରଣତଃ ସେତେବେଳେ ଗଡ଼ ମଧ୍ୟରେ ରାଜାମାନେ କୌଣସି ଏକ ଦେବୀ ସ୍ଥାପନକରି ତା'ର ଉପାସନା କରୁଥିଲେ। ସେ ଥିଲେ ଗଡ଼ର ଅଧିଷ୍ଠାତ୍ରୀ ଦେବୀ ଓ ତାଙ୍କୁ ହିଁ ପୂଜାକରିବା ପରେ ପାଇକମାନେ ଯୁଦ୍ଧକ୍ଷେତ୍ରକୁ ବାହାରୁଥିଲେ। ତାଙ୍କର କୃପାରେ ଶତ୍ରୁପକ୍ଷ ନିଶ୍ଚିହ୍ନ ହୋଇପାରିବ ବୋଲି ଉଭୟ ରାଜା ଓ ପାଇକମାନଙ୍କର ବିଶ୍ୱାସ ଥିଲା। କେବଳ ସେତିକି ନୁହେଁ, ଗଡ଼ର ଚତୁପାର୍ଶ୍ୱରେ ଅନ୍ୟାନ୍ୟ ଦେବାଦେବୀଙ୍କୁ ମଧ୍ୟ ଅବସ୍ଥାପିତ କରାଯାଉଥିଲା। ଏହି ଗଡ଼ର ପୂର୍ବରେ ଥିଲେ କୁମାରେଶ୍ୱର ମହାଦେବ, ପଶ୍ଚିମରେ ହନୁମାନ ମନ୍ଦିର, ଉତ୍ତରରେ ନଟା ନାରାୟଣୀ ଓ ଦକ୍ଷିଣରେ ଉତ୍ତରାୟଣୀ। ଏମାନେ ଏବେ ମଧ୍ୟ ବିରାଜମାନ। ମାତ୍ର ଗଡ଼ଟି ଧ୍ୱଂସ ପ୍ରାପ୍ତ ହୋଇଛି। ସମ୍ଭବତଃ ରକ୍ଷଣାବେକ୍ଷଣ ଅଭାବରୁ ତାହା ଭଗ୍ନସ୍ତୂପରେ ପରିଣତ ହେବାପରେ ପାର୍ଶ୍ୱବର୍ତ୍ତୀ ଅଂଚଳର ଅଧିବାସୀମାନେ ପ୍ରସ୍ତର ଖଣ୍ଡମାନ ନେଇଯାଇ ନିଜକାର୍ଯ୍ୟରେ ବିନିଯୋଗ କରିଛନ୍ତି।

## ନିଜଗଡ଼କୁରୁକି

ପିପିଲିଠାରୁ ୮ କିଲୋମିଟର ଦୂରରେ କୁରୁକି ନାମକ ଏକ ସ୍ଥାନରେ ଗୋଟିଏ ଗଡ଼ ସ୍ଥାପିତ ହୋଇଥିଲା। ତା'ର ବହୁ ସଂକେତ ଏବେ ମଧ୍ୟ ଦେଖିବାକୁ ମିଳେ। ଉକ୍ତ ସ୍ଥାନରେ ଗଡ଼ରେ ବ୍ୟବହୃତ ପ୍ରସ୍ତର ଓ ପୋଡ଼ାମାଟିର ଖପରାଗୁଡ଼ିକ ପଡ଼ିରହିଛି। ନିକଟରେ ଏକ ବିରାଟ କୂପର ଭଗ୍ନାଂଶ ଏବେ ମଧ୍ୟ ରହିଥିବାର ଦେଖାଯାଏ। ତା'ର ଦୈର୍ଘ୍ୟ ୨୦ ଫୁଟ ଓ ପ୍ରସ୍ତର ୧୮ ଫୁଟ। କୂପ ମଧ୍ୟକୁ ଯିବାକୁ ପାହାଚ ରହିଥିବାର ଦେଖାଯାଏ। ଏବେ ମଧ୍ୟ ଏହା ରାଣୀକୂଅ ନାମରେ କଥିତ। ଏହା ନିକଟରେ ଅନ୍ୟ ଗୋଟିଏ ସଂକେତ ଦେଖିବାକୁ ମିଳେ, ସମ୍ଭବତଃ ଉକ୍ତ ସ୍ଥାନର କିଛି ଦୂରରେ ରାଜାଙ୍କର ହାତୀଶାଳ ରହିଥିଲା। ହାତୀ ବାନ୍ଧିବାପାଇଁ ବ୍ୟବହୃତ ଖୁଣ୍ଟ ରହିଥିବାର ଦେଖାଯାଏ। ଏବେ ମଧ୍ୟ ତାହା ହାତୀଖୁଣ୍ଟ ନାମରେ କଥିତ। ଏଠାରେ ଅବସ୍ଥିତ ଖୋରକେଶ୍ୱର ମନ୍ଦିର ନାମରେ ସ୍ଥାନଟିର ନାମ ଖୋରକି ହୋଇ ପରେ ତାକୁ କୁରୁକି ବୋଲି କୁହାଯାଇଛି। ଏହି ଗଡ଼ ଖୋର୍ଦ୍ଧା ରାଜା ପ୍ରଥମ ରାମଚନ୍ଦ୍ରଦେବ ନିର୍ମାଣ କରିଥିଲେ। ସେ ଖୋର୍ଦ୍ଧାରାଜ୍ୟ ପ୍ରତିଷ୍ଠା କରିବାପରେ ତା'ର ସୁରକ୍ଷାପାଇଁ ଚତୁଃପାର୍ଶ୍ୱରେ କେତେକ ଗଡ଼ ସ୍ଥାପନ କରିଥିଲେ। ସେ ନିର୍ମାଣ କରିଥିବା ଗଡ଼ଗୁଡ଼ିକ ତାଲିକାରେ କୁରୁକିର ନାମ ଉଲ୍ଲିଖିତ ହୋଇଥିବାର ଦେଖାଯାଏ। ନିଜେ ରାଜା ଏହି ଗଡ଼ରେ ବହୁ ସମୟ ଅବସ୍ଥାନ କରୁଥିବାର ବିଶ୍ୱାସ କରାଯାଏ। ତିନି ଦିଗରେ ପାହାଡ଼ ଓ ଗୋଟିଏ ଦିଗରେ ଦୟାନଦୀର ଅବସ୍ଥିତିପାଇଁ ନିରାପତ୍ତା ଦୃଷ୍ଟିକୋଣରୁ ରାଜା ସେଠାରେ ଅବସ୍ଥାନ କରିପାରି ଥାଆନ୍ତି।

Digitized by srujanika@gmail.com

ପୂର୍ବରୁ ମଧ୍ୟ ସୂଚନା ଦିଆଯାଇଛି ଗଡ଼ ବା ଦୁର୍ଗଗୁଡ଼ିକ ରାଜାଙ୍କର ଉଭୟ ବାସଘରୀ ଓ ସେନାଛାଉଣୀ ରୂପେ ବ୍ୟବହାର କରାଯାଉଥିଲା। ସେ ଯାହାହେଉ, ଖୋର୍ଦ୍ଧା ରାଜା ଏହିଠାରେ ଅଧିକ ସମୟ ରହୁଥିବାରୁ ଏହାର ନାମ ରଖିଥିଲେ ନିଜଗଡ଼। ଏହିପରି ନାମକରଣ କରିବାର ଦୃଷ୍ଟାନ୍ତ ବହୁ କରଦ ରାଜ୍ୟ ବା ଗଡ଼ଜାତରେ ରହିଛି। ଏହି କୁରୁକି ଚାରିପଟେ ୫ କିଲୋମିଟର ଆୟତନରେ କେତୋଟି ଗ୍ରାମ ରହିଥିବାର ଦେଖାଯାଏ। ତନ୍ମଧ୍ୟରୁ ଧଳସାହି ଅନ୍ୟତମ। ସେହିଗ୍ରାମର ଜଣେ ସାହିତ୍ୟକ ଭିକାରୀ ଧଳ ଏକ ସାକ୍ଷାତକାରରେ ଉକ୍ତ ସ୍ଥାନ ବିଷୟରେ କିଛି ତଥ୍ୟ ଯୋଗାଇଥିଲେ। ସେ କହିଥିଲେ ଯୋ ଡମପଡ଼ା ଜମିଦାର ପରିବାର ଓ ଧଳସାହି ଧଳ ପରିବାର ମଧ୍ୟରେ ସମ୍ପର୍କ ରହିଥିଲା। 'ସେ ଯାହାହେଉ ନିଜଗଡ଼ କୁରୁକିରେ ଅବସ୍ଥାପିତ ପାଇକ ବାହିନୀ ସହିତ ମୋଗଲମାନଙ୍କର ସଂଘର୍ଷ ଲାଗିଥିଲା। ଏହିଠାରୁ ପାଇକବାହିନୀ ଯାଇ ପିପିଲିଠାରେ ବହୁବାର ମୋଗଲ ସେନାଙ୍କର ଶକ୍ତିକୁ ପ୍ରତିହତ କରିଥିଲେ। ସମ୍ଭବତଃ କ୍ରୋଧାନ୍ୱିତ ହୋଇ ମୋଗଲସେନା ନିଜଗଡ଼ କୁରୁକିକୁ ଧ୍ୱଂସ କରି ଦେଇଥିଲେ। ଏବେ କୁରୁକିସ୍ଥିତ ଏକ ପ୍ରାନ୍ତରରେ ଏକ ଖୁଲାଣ ଓ ତା'କୁ ଲାଗିକରି ଏକ ବେଦୀ ଦୃଷ୍ଟି ଗୋଚର ହୋଇଥାଏ। ଏହାର ଉପଯୋଗିତା କ'ଣ ତାହା ସଠିକ୍ ଭାବେ କହି ନହେଲେ ମଧ ତାହା ଏକ ଦୋଳବେଦୀ ରୂପେ ବ୍ୟବହାର କରାଯାଇ ପାରିଥାଏ। ପୁନର୍ବାର ଅତୀତରେ ଟେଲାଙ୍ଗ ସମେତ ଏହି ନିଜଗଡ଼ କୁରୁକି ପାରଳାଖେମୁଣ୍ଡୀ ମହାରାଜାଙ୍କର ଏକ ଜମିଦାରୀ ଥିଲା। ଏହା ଏହି ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର କଥା। କେଉଁ ପରିସ୍ଥିତିରେ ଏଠାରେ ତାଙ୍କର ଜମିଦାରୀ ରହିଥିଲା ତାହା କହି ନହେଲେ ମଧ୍ୟ ତାଙ୍କର ଟେଲାଙ୍ଗ ଅଂଚଳରେ ଏକ ଜମିଦାରୀ ଥିଲା ତାହା ସୁନିଶ୍ଚିତ। ଏହି ଜମିଦାରୀ ଥିବାରୁ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୧୯୩୦-୧୯୩୧ରେ ଇଂଲଣ୍ଡ ଯାଇ ଗୋଲଟେବୁଲ ବୈଠକରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ଉପରେ ଓଡ଼ିଶାବାସୀଙ୍କର ମତବ୍ୟକ୍ତ କରିପାରିଥିଲେ। ସେ ମାନ୍ଦ୍ରାଜର ଅଧିବାସୀ ହୋଇଥିବାରୁ ପ୍ରତିନିଧିତ୍ୱ କରିବାପାଇଁ ପ୍ରଥମେ ତାଙ୍କୁ ଅନୁମତି ମିଳିନଥିଲା। ମାତ୍ର ତତ୍କାଳୀନ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ମହାରାଜାଙ୍କର ଜମିଦାରୀ ଓଡ଼ିଶାରେ ଯୁକ୍ତି ଦର୍ଶାଇ ତାଙ୍କର ପ୍ରତିନିଧିତ୍ୱକୁ କାୟମ କରିଥିଲେ।

## ଗଡ଼ କାଳୁପଡ଼ା

ବିଶ୍ୱନାଥ ମୁଣ୍ଡିଆର ପାଦ ଦେଶରୁ ଅଳ୍ପ ଦୂରରେ ଏକ ଗଡ଼ର ସଂକେତ ଦେଖାଯାଏ ଏହା ଗଡ଼କାଳୁପଡ଼ା ନାମରେ କଥିତ ହୋଇଥିଲା। ଏହାର ଚତୁଃପାର୍ଶ୍ୱରେ

Digitized by srujanika@gmail.com

ଗଡ଼ଖାଇ। ଏହି ଗଡ଼ର ଉତ୍ତରରେ ଆକୋଇ, ଦକ୍ଷିଣରେ ଜଗଦଳପୁର, ପୂର୍ବରେ କାଳୁପଡ଼ା ଓ ପଶ୍ଚିମରେ ବଣିବକ୍ରେଶ୍ୱର ମନ୍ଦିର। ସେତେବେଳେ ସେଠାରେ ୪୩ ମୌଜାର ଜମିଦାର ଜୟଦେବ ଓ ଜଗଦେବଙ୍କ ଦ୍ୱାରା ଗଡ଼ଟି ନିର୍ମିତ ହୋଇଥିଲା। ଜଗଦେବଙ୍କ ନାମାନୁସାରେ ସ୍ଥାନଟିର ନାମ ଜଗଦଳପୁର ହୋଇଛି।

## ପିପିଲି ଗଡ଼

ପିପିଲିଠାରେ ଏକ ଗଡ଼ ରହିଥିବାର ସଂକେତ ଏବେ ମଧ୍ୟ ଦେଖିବାକୁ ମିଳେ। ଏହା ଖୋର୍ଦ୍ଧା ରାଜ୍ୟର ପ୍ରତିଷ୍ଠାତା ପ୍ରଥମ ରାମଚନ୍ଦ୍ର ଦେବଙ୍କ ସମୟରେ ନିର୍ମିତ ହୋଇଥିବାର ଜଣାଯାଏ। ଏଥିରେ ଖୋର୍ଦ୍ଧା ରାଜାଙ୍କର ଏକ ବଳିଷ୍ଠ ପାଇକବାହିନୀ ଅବସ୍ଥାପିତ ହୋଇଥିଲେ। ତାହା ହୋଇନଥିଲେ ସେହି ପାଇକବାହିନୀ, ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କ ସହ ସଂଘର୍ଷରେ କୃତକାର୍ଯ୍ୟତା ହାସଲ କରିପାରି ନ ଥା'ନ୍ତେ। ଏହାର ଅବସ୍ଥିତି ଓ ଗୁରୁତ୍ୱ ସମ୍ପର୍କରେ ତୃତୀୟ ଅଧ୍ୟାୟରେ ସୂଚୀତ ହୋଇଛି।

## ଅନ୍ୟାନ୍ୟ ଗଡ଼

ପିପିଲି ଭୂଖଣ୍ଡ ବିଶେଷତଃ ଡେଲାଙ୍ଗ ଅଂଚଳରେ ଅନ୍ୟ କେତୋଟି ଗଡ଼ ନିର୍ମିତ ହୋଇଥିଲା। ତନ୍ମଧ୍ୟରୁ ଘୋଡ଼ାଡ଼ିହିଁ (ଘୋରଡ଼ିହା), ଭୂଇଁମୂଳ, ସହଜପୁର (ସହଜ ପାରି କଟକ) ଆଦି ଗଡ଼ର ନାମ ଉଲ୍ଲେଖଯୋଗ୍ୟ। ଏଥିମଧ୍ୟରୁ ଘୋରଡ଼ିହା ଓ ଭୂଇଁମୂଳ ଗଡ଼ ଚାଲୁକ୍ୟବଂଶୀୟ ରାଜା ମୁକୁନ୍ଦଦେବ ହରିଚନ୍ଦନ (ଖ୍ରୀ.୧୫୫୯-୧୫୬୮)ଙ୍କ ରାଜୁତିରେ ନିର୍ମିତ ହୋଇଥିବାର ବିଶ୍ୱାସ କରାଯାଏ। କାରଣ ରମାଇ ରାଉତରାୟ ଖୋର୍ଦ୍ଧା ରାଜ୍ୟ ପ୍ରତିଷ୍ଠା କରିବା ପୂର୍ବରୁ ଏହି ଦୁଇଟି ଗଡ଼ର ଅଧିପତି ତାଙ୍କୁ ସହାୟତା ଦେଇଥିଲେ। ଫଳରେ ସେ ରାଜ୍ୟ ପ୍ରତିଷ୍ଠା ପୂର୍ବକ ରାମଚନ୍ଦ୍ରଦେବର ନାମ ଗ୍ରହଣ କରି ଶାସନ କାର୍ଯ୍ୟ ଚଳାଇଥିଲେ। ରମାଇ ରାଉତରାୟଙ୍କ ପୂର୍ବରୁ ଓଡ଼ିଶାର ରାଜା ଥିଲେ ସେହି ମୁକୁନ୍ଦଦେବ ହରିଚନ୍ଦନ।

ପିପିଲି ଇତିହାସରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ଉପରୋକ୍ତ ଗଡ଼ଗୁଡ଼ିକ ସ୍ଥାନରେ ଏବେ କେବଳ ଉଚ୍ଚ କୁଦ, ପୋତା ଖପରା ଓ ଇତସ୍ତତଃ ଭାବରେ ପଡ଼ିଥିବା ପ୍ରସ୍ତର ଖଣ୍ଡ ବ୍ୟତୀତ ଅନ୍ୟକିଛି ଚିହ୍ନ ଦେଖିବାକୁ ମିଳେନାହିଁ। ଏଗୁଡ଼ିକ ୧୮୦୪-୧୮୦୫ର ଖୋର୍ଦ୍ଧା ବିଦ୍ରୋହ ଓ ୧୮୧୭ର ପାଇକ ବିଦ୍ରୋହ ପର୍ଯ୍ୟନ୍ତ ନିଶ୍ଚିତ ପକ୍ଷେ ଅକ୍ଷୁଣ୍ଣ ଅବସ୍ଥାରେ ରହିଥିଲା। ତାହୋଇ ନଥିଲେ ପିପିଲି-ଭୂଖଣ୍ଡର

Digitized by srujanika@gmail.com

ପାଇକମାନେ ଇଂରେଜ ସୈନ୍ୟଙ୍କୁ ଅତି ଦୟନୀୟ ଭାବେ ବିପର୍ଯ୍ୟସ୍ତ କରାଇପାରି ନ ଥା'ନ୍ତେ। ୧୮୦୭ ମସିହାରେ ଖୋର୍ଦ୍ଧା ରାଜା ଦ୍ୱିତୀୟ ମୁକୁନ୍ଦଦେବ ଇଂରେଜ କର୍ତ୍ତୃପକ୍ଷଙ୍କ ଆଦେଶରେ ଖୋର୍ଦ୍ଧା ଛାଡ଼ି ପୁରୀର ବାଲିସାହି ପ୍ରାସାଦରେ ରହିବା ଫଳରେ ଗଡ଼ର ଆଉ ଆବଶ୍ୟକତା ପଡ଼ିନଥିଲା। ବିଶେଷତଃ ୧୮୧୯ରେ ପାଇକ ବିଦ୍ରୋହର ଅବସାନପରେ ପୁରୀ ରାଜା ସମ୍ପୂର୍ଣ୍ଣରୂପେ ଇଂରେଜମାନଙ୍କର ଆନୁଗତ୍ୟ ସ୍ୱୀକାର କରିଥିବାରୁ ସେମାନଙ୍କସହ ସଂଘର୍ଷର ପ୍ରଶ୍ନ ନଥିଲା କି ପାଇକମାନଙ୍କର ଆବଶ୍ୟକତା ପଡ଼ିନଥିଲା। ଏଥିସହିତ ଗଡ଼ର ରକ୍ଷଣାବେକ୍ଷଣ କରିବା ମଧ୍ୟ ସେପରି କିଛି ଦରକାର ନଥିଲା। ଫଳରେ କାଳକ୍ରମେ ସେଗୁଡ଼ିକ ଧ୍ୱଂସ ସ୍ତୁପରେ ପରିଣତ ହୋଇଥିଲା।

## ଗୁମ୍ଫା

ପିପିଲି-ଭେଳାଙ୍ଗ ଅଂଚଳରେ କେତୋଟି ପ୍ରାଚୀନ ଗୁମ୍ଫା ରହିଥିବାର ବର୍ଣ୍ଣନା ଦେଖିବାକୁ ମିଳେ। ତାହା ଭୋରଶୈଳରେ ବୌଦ୍ଧ ଗୁମ୍ଫା। ଏହା ପ୍ରଖ୍ୟାତ ବୌଦ୍ଧ ପଣ୍ଡିତ ଆଚାର୍ଯ୍ୟ ଦିଙ୍ନାଗ ୪ର୍ଥ ଖ୍ରୀଷ୍ଟାବ୍ଦରେ ବୌଦ୍ଧ ଭିକ୍ଷୁମାନଙ୍କପାଇଁ ଖୋଦନ କରାଇଥିବାର ଜଣାଯାଏ। ସେଗୁଡ଼ିକର ସଂଖ୍ୟାଥିଲା ୧୬। ଏହି ଭୋରଶୈଳକୁ ଡ଼କ୍ଟର ନବୀନ କୁମାର ସାହୁ ବିଶ୍ୱନାଥ ମୁଣ୍ଡିଆ ସହିତ ଚିହ୍ନିତ କରାଇଥିବା ସ୍ଥଳେ ଅରାଗଡ଼ର ଇତିବୃତ୍ତ ପୁସ୍ତକର ପ୍ରଣେତା ଶ୍ରୀ ଦିବ୍ୟସିଂହ ଚମ୍ପତି ଓ ଅନ୍ୟ କେତେ ଜଣ ଏହାକୁ ଅରାଗଡ଼ ସହିତ ଚିହ୍ନିତ କରାଇଛନ୍ତି।(୨)। ଗୁମ୍ଫାଗୁଡ଼ିକ ବହୁ ପୁରାତନ ହୋଇଥିବାରୁ ଓ କାଳକ୍ରମେ ତାହା କାହାରି ବ୍ୟବହାରରେ ଆସିନଥିବାରୁ ସେଗୁଡ଼ିକ ଧ୍ୱଂସପ୍ରାପ୍ତ ହୋଇ ତା'ର କୌଣସି ସଂକେତ ଦେଖିବାକୁ ମିଳେନାହିଁ।

## ପୁରାତନ କୂପ

ପିପିଲି ଅଂଚଳରେ କେତୋଟି ପୁରାତନ ପ୍ରସ୍ତର କୂପ ଥିବାର ସଂକେତ ରହିଛି। ସେଥିରୁ ଅଧିକାଂଶ ଥିଲା ଜଗନ୍ନାଥ ସଡ଼କର ପାର୍ଶ୍ୱଦେଶରେ। ପୁରୀକୁ ବିଭିନ୍ନ ଅଂଚଳରୁ ଆସୁଥିବା ତୀର୍ଥଯାତ୍ରୀଙ୍କୁ ସୁଶୀତଳ ଜଳ ଯୋଗାଇବାପାଇଁ ଏହି କୂପଗୁଡ଼ିକ ଉଦ୍ଦିଷ୍ଟ ଥିଲା। ତନ୍ମଧ୍ୟରୁ ଗୋଟିଏ ଥିଲା ବର୍ତ୍ତମାନର ଡାକ୍ତରଖାନାକୁ ଲାଗିକରି ପୁରୀଆଡ଼କୁ ଗଲେ ସଡ଼କର ଡ଼ାହାଣ ପାର୍ଶ୍ୱରେ। ଏହା ଅଧାପୋତା ହୋଇ ରହିଛି। ଅନ୍ୟ ଗୋଟିଏ ଥିଲା ବର୍ତ୍ତମାନ ବିସ୍ଥାପିତ ଅଞ୍ଚଳ ଅଫିସଠାରେ। ତାହା ସମ୍ପୂର୍ଣ୍ଣରୂପେ ପୋତାହୋଇ ଯାଇଛି ବୋଲି ପିପିଲିର ବୟୋବୃଦ୍ଧ ବ୍ୟକ୍ତିଙ୍କ

(୨) ଦିବ୍ୟସିଂହ ଚମ୍ପତି : ଅରାଗଡ଼ର ଇତିବୃତ୍ତ

Digitized by srujanika@gmail.com

ମୁଖରୁ ଶୁଣିବାକୁ ମିଳେ। ଉଭୟ କୂପ ମୁକୁନ୍ଦଦେବ ହରିଚନ୍ଦନଙ୍କ ନିର୍ଦ୍ଦେଶରେ ସମ୍ଭବତଃ ୧୫୬୦ରୁ ୧୫୬୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଖନନ କରାଯାଇଥିଲା। ଅନ୍ୟ ଗୋଟିଏ ପୁରାତନ କୂପ ନିଜଗଡ଼ କୁରକିଠାରେ ଖନନ କରାଯାଇଥିଲା। ତାହା ରାଣୀକୂଅ ନାମରେ କଥିତ। ଏହା ଖୋର୍ଦ୍ଧାରାଜା ପ୍ରଥମ ରାମଚନ୍ଦ୍ର ଦେବଙ୍କ ରାଜତ୍ୱରେ ଖନନ କରାଯାଇଥିଲା। ପୂର୍ବରୁ ଏହି କୂପ ସମ୍ବନ୍ଧରେ ସୂଚନା ଦିଆଯାଇଛି। ବର୍ତ୍ତମାନ ଦୁଇଟି ବୃହଦାକାର କୂପ ଗୁଡ଼ିଆ ପୋଖରୀ ଓ ଦଇଶପାଟଣା ଠାରେ ଅବସ୍ଥିତ। ଏହା ରାଣୀ ଅହଲ୍ୟାବାଇଙ୍କର କୀର୍ତ୍ତି ବୋଲି ଜଣାଯାଏ।

## ପୁରାତନ ପୁଷ୍କରିଣୀ

ପିପିଲି-ଡେଲାଙ୍ଗ ଅଞ୍ଚଳ ବହୁ ପୁରାତନ ଓ ବୃହଦାକାର ପୁଷ୍କରିଣୀପାଇଁ ଇତିହାସ ପ୍ରସିଦ୍ଧ। ତନ୍ମଧ୍ୟରୁ ଅଧିକାଂଶ ଜଗନ୍ନାଥ ସଡ଼କର ଉଭୟ ପାର୍ଶ୍ୱରେ ଖନନ କରାଯାଇଥିଲା। ତୀର୍ଥ ଯାତ୍ରୀଙ୍କୁ ପାନୀୟ ଜଳ ଯୋଗାଇବା ସଂଗେ ସଂଗେ ସ୍ନାନଆଦି ନିତ୍ୟକର୍ମ ସମାପନ କରିବାପାଇଁ ସେଗୁଡ଼ିକ ଉଦ୍ଦିଷ୍ଟ ଥିଲା। ତନ୍ମଧ୍ୟରୁ କେତୋଟି ପୁଷ୍କରିଣୀ ବିଷୟରେ ସୂଚନା ପୂର୍ବବର୍ତ୍ତୀ ଅଧ୍ୟାୟଗୁଡ଼ିକରେ ଦିଆଯାଇଛି। ସେହି ପୁଷ୍କରିଣୀ ମଧ୍ୟରୁ ସର୍ବ ବୃହତ ଥିଲା କୌଶଲ୍ୟାଗଂଗା।

ଗଂଗବଂଶର ମହିମାମଣ୍ଡିତ ନରପତି ଚୋଡ଼ଗଙ୍ଗ ଦେବଙ୍କର ଏକ ସ୍ମରଣୀୟ କୀର୍ତ୍ତି ହେଉଛି କୌଶଲ୍ୟାଗଂଗା ପୁଷ୍କରିଣୀ। ପ୍ରାୟ ୪ ବର୍ଗମାଇଲି ଆୟତନର ଏତେ ବିଶାଳକାୟ ପୁଷ୍କରିଣୀ ଓଡ଼ିଶାର ଅନ୍ୟ କେଉଁଠି ଦେଖାଯାଏ ନାହିଁ। ପୁଷ୍କରିଣୀର ମଧ୍ୟଭାଗରେ ଏକ ଛୋଟ ଦ୍ୱୀପ ଥିଲା ଓ ସେଠାରେ କେତୋଟି କୋଠରୀ ଥାଇ ଏକ ନଅର ନିର୍ମିତ ହୋଇଥିବାର ବିଶ୍ୱାସ କରାଯାଏ। ପୁଷ୍କରିଣୀର ପଶ୍ଚିମ ପାର୍ଶ୍ୱରେ କେତୋଟି ମାଟି ଖପରା ଓ ନଅରରେ ବ୍ୟବହୃତ ଖମ୍ବର ଭଗ୍ନାଂଶ, ମୃଦଙ୍ଗଆର କେତେ ଅଂଶ ପଡ଼ିଥିବାର ଦେଖାଯାଇଥିଲା। ସମ୍ଭବତଃ ଖୋର୍ଦ୍ଧା ରାଜା କଟକରୁ ପୁରୀ ଆସୁଥିବା ସମୟରେ ଗ୍ରୀଷ୍ମ ଦିନରେ ପ୍ରମୋଦ ନିମନ୍ତେ ଏହି ନଅରରେ ରହୁଥିଲେ। ସେତେବେଳେ ଏହାର ଚତୁଃପାର୍ଶ୍ୱରେ ଘନଜନବସତି ରହିଥିଲା। ଏବେ ମଧ୍ୟ ଏହାର ପୂର୍ବରେ ପୁବାଶାସନ, ପଶ୍ଚିମରେ କୌଶଲ୍ୟାପୁର, ଉତ୍ତରରେ ଉତ୍ତରା ଶାସନ ଓ ଦକ୍ଷିଣରେ ଏକଚାଳିଆ ଆଦି ନାମରେ ଜନବହୁଳ ଗ୍ରାମ ଅବସ୍ଥିତ। ସେହିପରି ଅନ୍ୟ ଗୋଟିଏ ପୁଷ୍କରିଣୀ ହେଉଛି ଭୁବନାନନ୍ଦ ପୋଖରୀ। ଏହା ଅଧୁନା କଲେଜ ନିକଟରେ ଅବସ୍ଥିତ। ଭୁବନାନନ୍ଦ ନାମରେ ଜଣେ କେହି ବ୍ୟକ୍ତି ଏହାକୁ ଖୋଦନ କରାଇଥିବାର ଜଣାଯାଏ। ଜନଶ୍ରୁତି ଅନୁଯାୟୀ ସେ କୌଣସି ପୁରୀରାଜାଙ୍କର ମନ୍ତ୍ରୀ ଥିଲେ। ମଙ୍ଗୁଳି ଘୋଷ ପୋଖରୀ ପୁରାତନ

Digitized by srujanika@gmail.com

ପୁଷ୍କରିଣୀ ମଧ୍ୟରୁ ଅନ୍ୟତମ । ଏହା ଦାଣ୍ଡମୁକୁନ୍ଦପୁରଠାରୁ ଏକ କିଲୋମିଟର ଦୂରରେ କଟକ-ପୁରୀ ସଡ଼କର ବାମପାର୍ଶ୍ୱରେ ଖନନ କରାଯାଇଥିଲା । ମଙ୍ଗୁଳି ଘୋଷ ନାମରେ କେହି ଜଣେ ବଦାନ୍ୟ ବ୍ୟକ୍ତି ଏହାକୁ ଖନନ କରିଥିଲେ ବୋଲି ୮୪ ବର୍ଷ ବୟସ୍କ ଜନାର୍ଦ୍ଦନ ପଟ୍ଟନାୟକଙ୍କ ମୁଖରୁ ଶୁଣିବାକୁ ମିଳେ । ଏହାର ଲମ୍ବ ୮୦ ଫୁଟ ଓ ପ୍ରସ୍ଥ ୬୦ ଫୁଟ । ସ୍ନାନପରେ ସ୍ତ୍ରୀଲୋକ ତାଙ୍କର ପୋଷାକ ପରିବର୍ତ୍ତନ କରିବାପାଇଁ ଏକ ଘର ରହିଥିଲା । ତା'ର ସଂକେତ ଏବେ ମଧ୍ୟ ଦେଖିବାକୁ ମିଳେ । ପୁଷ୍କରିଣୀର ଚତୁଃପାର୍ଶ୍ୱ ଦୁଇଟି ପ୍ରସ୍ତର ପ୍ରାଚୀର ଦ୍ୱାରା ପରିବେଷ୍ଟିତ । ସେହିପରି ମୁକୁନ୍ଦଦେବ ହରିଚନ୍ଦନଙ୍କ ସମୟରେ ଅନ୍ୟ ଦୁଇଟି ପୁଷ୍କରିଣୀ ଖନନ କରାଯାଇଥିଲା । ଗୋଟିଏ ଥିଲା ଦାଣ୍ଡମୁକୁନ୍ଦପୁର ନିକଟରେ ଦିଘୀ ଦହନ (ଏବେର ବଡ଼ ପୋଖରୀ) ଓ ଅନ୍ୟଟି ଥିଲା ବର୍ତ୍ତମାନର ମହିଳା ଟ୍ରେନିଂ ସ୍କୁଲ ହତାମଧ୍ୟରେ ଅବସ୍ଥିତ ରାଣୀପୋଖରୀ । ଉଭୟ ପୁଷ୍କରିଣୀ ମଧ୍ୟରୁ ଗୋଟିକରେ ଦ୍ୱୀପଦଣ୍ଡୀ ରହିଥିବାର ଦେଖାଯାଏ । ବଡ଼ ପୋଖରୀଟି ୨୪ ଏକର ୮୦ ଡିସିମିଲ ଜମିଉପରେ ଖନନ କରାଯାଇଛି । ତା'ର ଐତିହ୍ୟ ଓ ବର୍ଣ୍ଣନା ଦ୍ୱିତୀୟ ଅଧ୍ୟାୟରେ ଦିଆଯାଇଛି । ଜଗନ୍ନାଥ ସଡ଼କ ପାର୍ଶ୍ୱରେ ଅବସ୍ଥିତ ଅନ୍ୟ କେତୋଟି ପୁରାତନ ପୁଷ୍କରିଣୀର ନାମ ହେଲା ପୁଷ୍କ ପୋଖରୀ, ବେଣ୍ଟ ପୋଖରୀର ଓ ବାଲି ପୋଖରୀ । ପୁରୀ ଆଡ଼କୁ ଗଲେ ଡାହାଣ ପାର୍ଶ୍ୱରେ ବେଣ୍ଟ ପୋଖରୀ ଓ ବାମ ପାର୍ଶ୍ୱରେ ବାଲି ପୋଖରୀ ପଡ଼ିଥାଏ । ଏତଦ୍ ବ୍ୟତୀତ ପିପିଲିଠାରୁ ପ୍ରାୟ ୩ କିଲୋମିଟର ଦୂରରେ ଅନ୍ୟ ଏକ ବୃହଦାକାର ପୁଷ୍କରିଣୀ ଦୃଷ୍ଟିଗୋଚର ହୋଇଥାଏ । ତାହା ମକରବା ପୋଖରୀ ନାମରେ ଖ୍ୟାତ । ଡେଲାଙ୍ଗ ଅଞ୍ଚଳରେ ଅବସ୍ଥିତ ବିଶ୍ୱନାଥ ମୁଣ୍ଡିଆର ଅନତିଦୂରରେ ମଧ୍ୟ ଅନ୍ୟଦୁଇଟି ପୁରାତନ ପୁଷ୍କରିଣୀ ରହିଥିବାର ଦେଖାଯାଏ । ତାହାହେଲେ ଆକୋଇ ପୋଖରୀ ଓ ଦୁଇସଉତୁଣୀ ପୋଖରୀ । ଏତଦ୍ ବ୍ୟତୀତ ପିପିଲି-ଡେଲାଙ୍ଗ ଅଂଚଳରେ ଅନ୍ୟ କେତୋଟି ପୁରାତନ ପୁଷ୍କରିଣୀ ଖନନ କରାଯାଇଥିବାର ଦେଖାଯାଏ । ସ୍ଥାନଭାବରୁ ସେଗୁଡ଼ିକର ନାମ ଦିଆଯାଇ ପାରି ନାହିଁ ।

## ମନ୍ଦିର ଓ ମୂର୍ତ୍ତି

ପିପିଲି-ଡେଲାଙ୍ଗ ଅଞ୍ଚଳ ସଂଖ୍ୟାଧିକ ମନ୍ଦିର ଓ ମୂର୍ତ୍ତିରେ ବିମଣ୍ଡିତ ହୋଇଛି । ସେଗୁଡ଼ିକୁ ଭାଗରେ ବିଭକ୍ତ କରାଯାଇପାରେ ଯଥା ଶିବମନ୍ଦିର, ବିଷ୍ଣୁମନ୍ଦିର, ଶାକ୍ତ ମନ୍ଦିର ଓ ପତିତପାବନ ମନ୍ଦିର ତଦନୁଯାୟୀ ମନ୍ଦିର ମଧ୍ୟରେ ଅଧିଷ୍ଠିତ ମୂର୍ତ୍ତି ମଧ୍ୟ ଚାରି ପ୍ରକାର ଥିବାର ଦେଖାଯାଏ ତନ୍ମଧ୍ୟରୁ କେତେ ମନ୍ଦିର ଓ

Digitized by srujanika@gmail.com

ମୂର୍ତ୍ତିର ବିଶଦ୍ ବର୍ଣ୍ଣନା ଦିଆଯାଇଥିବା ସ୍ଥଳେ ଅନ୍ୟଗୁଡ଼ିକର କେବଳ ମାତ୍ର ନାମ ଉଲ୍ଲେଖ କରାଯାଇଛି। ସବୁ ମନ୍ଦିର ସମ୍ପର୍କରେ ତଥ୍ୟ ସଂଗ୍ରହ କରିବା ସମ୍ଭବପର ହେଲାନାହିଁ। ଏଠାରେ ଉଲ୍ଲେଖ କରାଯାଇଥିବା ମନ୍ଦିର ବ୍ୟତୀତ ଅନ୍ୟ କେତୋଟି ମନ୍ଦିର ନାହିଁ ବା ନଥିଲା ତା' ନୁହେଁ: ମାତ୍ର ସେ ସବୁକୁ ଆବିଷ୍କାର କରିବା ସମ୍ଭବପର ହୋଇ ପାରିନାହିଁ। ସେ ଯାହାହେଉ କେତେକ ମନ୍ଦିର ଓ ମୂର୍ତ୍ତିର ବର୍ଣ୍ଣନା ଏଠାରେ ପ୍ରଦାନ କରାଯାଇଛି।

## ଶିବମନ୍ଦିର

### ହରିରାଜପୁରର ସୋମନାଥ ମନ୍ଦିର

ହରିରାଜପୁରରେ ସୋମନାଥ ଶିବମନ୍ଦିର ପିପିଲି ତେଲାଙ୍ଗ ଅଂଚଳରେ ଏକ ଅନବଦ୍ୟ କୀର୍ତ୍ତି। ଏହା ଦକ୍ଷିଣପୂର୍ବ ରେଳପଥ ଖୋର୍ଦ୍ଧା ରୋଡ୍ ଷ୍ଟେସନଠାରୁ ୪ କି.ମି. ପୂର୍ବରେ ଅବସ୍ଥିତ। ଏହା ଖୋର୍ଦ୍ଧା ରାଜା ପ୍ରଥମ ରାମଚନ୍ଦ୍ର ଦେବଙ୍କ ରାଜତ୍ୱରେ ୧୫୭୨ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିବାର ଜଣାଯାଏ।(୩)। ଏହାର ନିର୍ମାଣ ବିଷୟରେ ଏକ ଜନଶ୍ରୁତି ଶ୍ରୀଦିବ୍ୟ ସିଂହ ଚମ୍ପତିଙ୍କ ଦ୍ୱାରା ଲିଖିତ ଶ୍ରୀ ସୋମନାଥ ପୁସ୍ତକରେ ପ୍ରଦତ୍ତ ହୋଇଛି।

ଏକଦା ହରିରାଜପୁର ଅଞ୍ଚଳଟି ନିବିଡ଼ ଜଙ୍ଗଲରେ ଆଚ୍ଛାଦିତ ହୋଇ ପାଣ୍ଡିଆ ବଣ ନାମରେ କଥିତ ହେଉଥିଲା। ଦିନେ ଜଣେ କୁଷ୍ଠ ବ୍ୟାଧିଗ୍ରସ୍ତ ବ୍ୟକ୍ତି ସେହି ପାଣ୍ଡିଆବଣ ମଧ୍ୟରେ ଯାଉଥିବା ସମୟରେ ଆଗକୁ ଅଗ୍ରସର ହୋଇ ପାରିନଥିଲା। ତେଣୁ ସେ ଏକାଗ୍ରଚିତ୍ତରେ ବୁଢ଼ାପଡ଼ାଠାରେ ପ୍ରତିଷ୍ଠିତ ସୋମନାଥ ଦେବଙ୍କୁ ତା'ର ଦୁଃଖ ଜଣାଇବାରୁ ସେ ସେଠାରେ ଥିବା ଉଇହୁଙ୍କା ମଧ୍ୟରୁ ଆବିର୍ଭୂତ ହୋଇ ତାଙ୍କୁ ବର ପ୍ରଦାନ କରିଥିଲେ। ଫଳରେ ସେ ଆରୋଗ୍ୟଲାଭ କରିଥିଲେ। ତେଣୁ ବୁଢ଼ାପଡ଼ାଠାରେ ପ୍ରତିଷ୍ଠିତ ସୋମନାଥ ଦେବଙ୍କୁ ବୁଢ଼ାଲିଙ୍ଗ ବୋଲି କୁହାଯାଏ। ଇତି ମଧ୍ୟରେ କିଛିଦିନ ବିତିଗଲା। ସେହି ପାଣ୍ଡିଆବଣର ଶେଷ ଭାଗରେ ଗୋଟିଏ ଗାଈ ପ୍ରତିଦିନ ନିଜ ଚେରରୁ ଦୁଧ ବୋହାଇ ଏକ ଉଇହୁଙ୍କା ଉପରେ ପକାଉଥିବାର ଦୃଶ୍ୟ ଗୋଟିଏ ଗାନ୍ତ ଜଗୁଆଳୀ ଦେଖିଥିଲା। ସେ ଗାଇଟି ଥିଲା ରଥିପୁର ଗଡ଼ର ଅଧିପତି ବୀରବର ମାନଧାତାଙ୍କର। ତେଣୁ ଅତି ସାହସର ସହିତ ଏହି ବିଷୟ ତାଙ୍କର ସେହି ଗାଈ ଜଗୁଆଳୀ ମାନଧାତାଙ୍କ ସମ୍ମୁଖରେ ପ୍ରକାଶ କରିବାରୁ ସେ କେତେଜଣ ସେନାପତିଙ୍କ ସହ ସେଠାକୁ

(୩) ଦିବ୍ୟସିଂହ ଚମ୍ପତି : ଶ୍ରୀ ସୋମନାଥ (୧୯୮୮ ହରିରାଜପୁର) ପୃ.୪

Digitized by srujanika@gmail.com

ଆସି ପ୍ରତ୍ୟକ୍ଷରେ ଏହି ଦୃଶ୍ୟ ଦେଖିଥିଲେ। ସେହିଦିନ ରାତ୍ରିରେ ମଧ୍ୟ ତାଙ୍କୁ ଏକ ସ୍ୱପ୍ନ ହୋଇଥିଲା ଯେ ସେ ଜନସାଧାରଣଙ୍କର ହିତସାଧନ ନିମନ୍ତେ ସେହିଠାରେ ଆତ୍ମପ୍ରକାଶ କରିବାପାଇଁ ଇଚ୍ଛୁକ। ତା' ପରଦିନ ଅତି ବ୍ୟାକୁଳ ଚିତ୍ତରେ ମାନଧାତା ଉଇହୁଙ୍କା ଭାଙ୍ଗିଦେବାରେ ଦେଖିଲେ ଏକ ଶକ୍ତି ମଧ୍ୟରେ ପାଞ୍ଚୋଟି ଲିଙ୍ଗ, ପଶ୍ଚିମ ଦିଗକୁ ମୁଖ ଓ ମଝି ଲିଙ୍ଗ ଉପରେ ଗୋରୁ ଖୁରାର ଚିହ୍ନ। ଏହିକଥା ମାନଧାତା ଜଣାଇଲେ ଖୋର୍ଦ୍ଧା ରାଜା ପ୍ରଥମ ରାମଚନ୍ଦ୍ରଙ୍କୁ। ତାଙ୍କର ଆଦେଶ ଓ ମାନଧାତାଙ୍କ ତତ୍ତ୍ୱାବଧାନରେ ସେହିଠାରେ ଏକ ମନ୍ଦିର ନିର୍ମାଣ କରାଯାଇଥିଲା। ମନ୍ଦିର ନିର୍ମାଣର ୧ ବର୍ଷପରେ ତା ମଧ୍ୟରେ ପ୍ରତିମାକୁ ସ୍ଥାପନ କରାଯାଇଥିଲା। ରାମଚନ୍ଦ୍ରଦେବ ଠାକୁରଙ୍କର ପୂଜା ସେବାପାଇଁ ମାଧବ ପଣ୍ଡା ଓ ମଧୁ ନାୟକଙ୍କୁ ନିଯୁକ୍ତି ଦେଇଥିଲେ। ଏଥିସହିତ ସେ ଜମି ମଧ୍ୟ ଖଞ୍ଜିଥିଲେ। ପରେ ପରେ ସେବା ପୂଜାପାଇଁ ନିରାକାରପୁର ନିକଟସ୍ଥ ଉଷୁନା ବରପଦା ଗ୍ରାମରୁ କପିଳ ଦାସ ନାମକ ଜଣେ ସାମନ୍ତ ବ୍ରାହ୍ମଣଙ୍କୁ ନିଯୁକ୍ତି ଦିଆଯାଇଥିଲା।(୪)।

ଏହି ସୋମନାଥ ଦେବଙ୍କ ନିକଟରେ ତୁଳସୀ ଜଟା ପକାଇ ଅନ୍ନଭୋଗ ହୁଏ। ହରିରାଜପୁର ମଧ୍ୟ ପଞ୍ଚୁଦୋଳ ଯାତ୍ରାପାଇଁ ପ୍ରସିଦ୍ଧି ଲାଭ କରିଛି। ସେ ସମ୍ପର୍କରେ ତଥ୍ୟ ପୂର୍ବରୁ ପ୍ରକାଶ କରାଯାଇଛି।

## ବାଗେଶ୍ୱରପୁରର ରାମେଶ୍ୱର ମନ୍ଦିର

ରାମେଶ୍ୱର ଶିବ ମନ୍ଦିରଟି ବାଗେଶ୍ୱରପୁର ଗ୍ରାମରେ ଅବସ୍ଥିତ। ଏହି ମନ୍ଦିରର କାରୁକାର୍ଯ୍ୟ ପରୀକ୍ଷା କଲେ ତାହା କୋଣାର୍କ ମନ୍ଦିରର ସମସାମୟିକ ବୋଲି ଜଣାଯାଏ। ମନ୍ଦିରର ଉଚ୍ଚତା ୪୦ ଫୁଟ- ମାତ୍ର ମୁଖଶାଳାଟି ଭାଂଗିଯାଇଛି। ମନ୍ଦିର ଗାତ୍ରରେ ଏକ କମନୀୟ କୃଷ୍ଣମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ। ବିଶେଷତଃ ସେ ପରିଧାନ କରିଥିବା ବସ୍ତ୍ରର ସୂକ୍ଷ୍ମ କାରୁକାର୍ଯ୍ୟ ଅତି ଆକର୍ଷଣୀୟ। ଗୋଟିଏ ପାର୍ଶ୍ୱରେ ଗୋଟିଏ ପଥରରେ ଖୋଦିତ ନବଗ୍ରହ ମୂର୍ତ୍ତି ଭଗ୍ନ ଅବସ୍ଥାରେ ପଡ଼ିରହିଛି। ତା'ର କାରୁକାର୍ଯ୍ୟ ଅତୀବ ମନୋରମ। ସେଠାକାର ପୂଜକଙ୍କଠାରୁ ଜଣାଯାଏ ଯେ ଏହି ମନ୍ଦିରର ସର୍ବମୋଟ ୧୧ ଏକର ଜମି। ତନ୍ମଧ୍ୟରୁ ୭ ଘର ସେବକଙ୍କୁ ମୋଟ ଉପରେ ୨ ଏକର ଜମି ଦିଆଯାଇଛି। ପ୍ରତ୍ୟହ ଖେଚୁଡ଼ି, ଅରୁଆଅନ୍ନ ଓ ଡାଲମା ଭୋଗ ଦିଆଯାଏ। ଉକ୍ତ ମନ୍ଦିରରେ ପ୍ରତିଦିନ ଭାଂଗ ବଟାଯାଇ ତାହା ବିତରଣ କରାଯାଉଥିବାର ଜଣାଯାଏ। ସେଥିପାଇଁ ଏକ ମସୃଣ

---

(୪) ଦିବ୍ୟସିଂହ ଚମ୍ପତି : ଶ୍ରୀ ସୋମନାଥ ପୃ.୪-୫

Digitized by srujanika@gmail.com

ପଥରଖଣ୍ଡ ଦେଖିବାକୁ ମିଳିଥିଲା । ଶିବବିବାହ, ଶିବରାତ୍ରି ଓ ବାଣମରା ହେଉଛି ଉକ୍ତ ମନ୍ଦିରର ପ୍ରଧାନ ପର୍ବ । ଏହି ବାଗେଶ୍ୱରପୁର ଗ୍ରାମ ବାଣମରା ଯାତ୍ରା ପାଇଁ ପ୍ରସିଦ୍ଧି ଲାଭ କରିଛି ।

## ଅରାଗଡ଼ର କୁନ୍ତେଶ୍ୱର ମନ୍ଦିର

ଡେଲାଙ୍ଗ ଥାନା ଅନ୍ତର୍ଗତ ଅରାଗଡ଼ ଗ୍ରାମର ପୂର୍ବ ଦିଗରେ କୁନ୍ତେଶ୍ୱର ମହାଦେବ ମନ୍ଦିର ଅବସ୍ଥିତ । ଖୋର୍ଦ୍ଧାରୋଡ଼ ରେଲଷ୍ଟେସନଠାରୁ ପୂର୍ବକୁ ୫ କି.ମି. ଦୂରରେ ଏହାର ଅବସ୍ଥିତି । ମନ୍ଦିରଟି କନ୍ଦାପଥର ଓ ଜଗମୋହନଟି ମାଙ୍କଡ଼ା ପଥରରେ ନିର୍ମିତ । ଉଭୟ ମନ୍ଦିର ଓ ମୁଖଶାଳା ଦୁଇଫୁଟ ଉଚ୍ଚତା ବିଶିଷ୍ଟ ପୀଠ ଉପରେ ଦଣ୍ଡାୟମାନ, ମନ୍ଦିରର ଏକ ବର୍ଣ୍ଣନା ଦେଇ ଦିବ୍ୟସିଂହ ଚମ୍ପତି ଲେଖିଛନ୍ତି, ଜଗମୋହନ ସମ୍ମୁଖରେ ନବଗ୍ରହ ମୂର୍ତ୍ତି, ବିମାନ ଗାତ୍ରରେ ପଶ୍ଚିମରେ କାର୍ତ୍ତିକେୟ, ଦକ୍ଷିଣରେ ଗଣେଶ ଓ ଉତ୍ତରରେ ପାର୍ବତୀ ପାର୍ଶ୍ୱଦେବତା ରୂପେ ବିଦ୍ୟମାନ । ମନ୍ଦିରର ଐଶାନ୍ୟ କୋଣରେ ଏକ ମନ୍ଦିରରେ ଅଷ୍ଟଭୂଜା ଏକ ଚାମଣ୍ଡା ମୂର୍ତ୍ତି, ଓ ଅନ୍ୟ ଏକ ମନ୍ଦିରରେ ଈଶ୍ୱାନେଶ୍ୱର ଶିବଲିଙ୍ଗ ପୂଜା ପାଉଛନ୍ତି । ମନ୍ଦିରର ପୂର୍ବ, ପଶ୍ଚିମ, ଉତ୍ତରରେ ଦ୍ୱାରଥିବା ମାଙ୍କଡ଼ା ପ୍ରସ୍ତରରେ ତିଆରି ଏକ ବେଢ଼ା ପ୍ରାଚୀର ଅଛି ।(୫)।

କୁନ୍ତେଶ୍ୱରଙ୍କର ପୁରାତନ ନାମ ବିରାଜେଶ୍ୱର । ମହାଭାରତର ଏକ ବର୍ଣ୍ଣନାକୁ ଆଧାର କରି ଚମ୍ପତି ମହୋଦୟ କୁନ୍ତେଶ୍ୱରଙ୍କୁ ମହାଭାରତ ଯୁଗର ପୁରାତନ ଠାକୁର ବୋଲି କହିଅଛନ୍ତି ।(୬)। ମାତ୍ର ଏହା ଏକ ପ୍ରକ୍ଷିପ୍ତି । ଅବଶ୍ୟ ମନ୍ଦିରଟିର ସମୟକାଳ ବିଷୟରେ ସେ ଉଲ୍ଲେଖ କରିଥିବା ତଥ୍ୟ ସମ୍ଭାବ୍ୟ ବୋଲି ମନେହୁଏ । ତାଙ୍କର ଉକ୍ତି ଅନୁସାରେ ମନ୍ଦିରଟି ଦ୍ୱାଦଶ ଶତାବ୍ଦୀରେ ଗଂଗ ବଂଶୀୟ ନରପତିଙ୍କ ଦ୍ୱାରା ନିର୍ମିତ ହୋଇଥିଲା(୭)। ଏହି ଠାକୁରଙ୍କର ସେବାପୂଜା ପାଇଁ ୭୦୦ ଏକର ଜମି ଖଂଜା ହୋଇଥିଲା । ଡେଲାଙ୍ଗ-ପିପିଲି ନିର୍ବାଚନ ମଣ୍ଡଳୀର ପୂର୍ବତନ ବିଧାୟକ ରାମଚନ୍ଦ୍ର ପଟ୍ଟନାୟକଙ୍କର ନିଷ୍ଠାପର ଉଦ୍ୟମଯୋଗୁଁ ଉକ୍ତ ଐତିହାସିକ କୀର୍ତ୍ତିର ସୁରକ୍ଷାଦାୟିତ୍ୱ ୧୯୮୭ ମସିହା ଜାନୁୟାରୀ ମାସରେ ଓଡ଼ିଶାର ପ୍ରତ୍ନତତ୍ତ୍ୱ ବିଭାଗ ବହନ କରିଛି ।(୮)।

---

(୫) ଦିବ୍ୟସିଂହ ଚମ୍ପତି : ଅରାଗଡ଼ର ଇତିବୃତ୍ତ ପୃ.୬
(୬) ଏଜନ - ପୃ.୭,
(୭) ଏଜନ - ପୃ.୮
(୮) ଦିବ୍ୟସିଂହ ଚମ୍ପତି : ଅରାଗଡ଼ର ଇତିବୃତ୍ତ ପୃ.୧୧

Digitized by srujanika@gmail.com

## ବୁଢ଼ାପଢ଼ାର ସୋମନାଥ ମନ୍ଦିର

ପିପିଲି-ଜଟଣୀ ରାସ୍ତାରେ ଗଲେ ପିପିଲିଠାରୁ ୭ କିଲୋମିଟର ଦୂରରେ ବୁଢ଼ାପଢ଼ା ଗ୍ରାମରେ ସୋମନାଥ ମନ୍ଦିରଟି ଅବସ୍ଥିତ। ଏଠାରେ ପୂଜିତ ବିଗ୍ରହଟି ହରିରାଗପୁରସ୍ଥିତ ଶ୍ରୀ ସୋମନାଥ ଦେବଙ୍କର ଜ୍ୟେଷ୍ଠ ଭ୍ରାତା ବୋଲି କୁହା ଯାଇଥାଏ। ପିପିଲି ଅଞ୍ଚଳର ଏହା ଏକ ପୁରାତନ ମନ୍ଦିର। ଏଥିରେ ଥିବା କାରୁକାର୍ଯ୍ୟର କୋଣାର୍କ ମନ୍ଦିର କାରୁକାର୍ଯ୍ୟ ସହିତ ସାମଞ୍ଜସ୍ୟ ରହିଛି। ତେଣୁ ସମ୍ଭବତଃ ଏହା ଗଙ୍ଗ ବଂଶର ଏକ କୀର୍ତ୍ତି ବୋଲି କୁହାଯାଇ ପାରେ। ମନ୍ଦିରର ଉତ୍ତର ପାର୍ଶ୍ୱରେ ଏକ କମନୀୟ ପାର୍ବତୀ ମୂର୍ତ୍ତି ରହିଥିବାର ଦେଖାଯାଏ। ଉକ୍ତ ମନ୍ଦିରର ପୂଜକ ବାସୁଦେବ ପଣ୍ଡା ଏକ ସାକ୍ଷାତକାରରେ କହିଥିଲେ ଯେ ମନ୍ଦିରର ଦୁଇ ବାଟି ଜମି ରହିଛି। ପ୍ରତ୍ୟହ ଅରୁଆ ଅନ୍ନ ଓ ଡ଼ାଲମା ନୈବେଦ୍ୟ ଦିଆଯାଇଥାଏ। ଛାଡ଼ଖାଇ ପୂର୍ଣ୍ଣମୀ, ଗହ୍ମା ପୂର୍ଣ୍ଣମୀ ଓ ଅକ୍ଷୟ ତୃତୀୟା ପର୍ବ ମହା ସମାରୋହରେ ପାଳିତ ହୋଇଥାଏ। ସେହି ଦିବସଗୁଡ଼ିକରେ ଯଜ୍ଞ ଅନୁଷ୍ଠିତ ହେବା ସଙ୍ଗେ ସଙ୍ଗେ ପାଲା ପରିବେଷଣ କରାଯାଇଥାଏ। ସେଥିପାଇଁ ମନ୍ଦିର ବେଢ଼ା ମଧ୍ୟରେ ଏକ ଯଜ୍ଞ ମଣ୍ଡପ, ଗୋଟିଏ ପାଲା ମଣ୍ଡପ ଓ ନାଟକ ପରିବେଷଣ କରିବା ପାଇଁ ଅନ୍ୟ ଏକ ମଣ୍ଡପ ରହିଥିବାର ଦେଖାଯାଏ। ମନ୍ଦିରକୁ ସଂଲଗ୍ନ କରି ପୋଖରୀଟିଏ ରହିଛି। ଏହା ମଧ୍ୟରେ ଏକ ଦ୍ୱୀପଦଣ୍ଡୀ ଥିଲା। ଏହା ଏବେ ଭାଙ୍ଗି ପଡ଼ିଛି। ଏହା ଦିଅଁଙ୍କ ପୋଖରୀ ନାମରେ କଥିତ। ମନ୍ଦିର ତଳେ କେତୋଟି ଗୁମ୍ଫା ଭଳି କୋଠରୀମାନ ରହିଛି। ତା' ମଧ୍ୟରେ ମାନସିକ କରିଥିବା ଗୁହାରିଆମାନେ ରହି ବିଗ୍ରହଙ୍କୁ ନିଜ ନିଜର ଗୁହାରି ଜଣାଇଥା'ନ୍ତି। ରାତିରେ ମନ୍ଦିର ବେଢ଼ାରେ ବାଟୋଇମାନେ ଆଶ୍ରୟ ନିଅନ୍ତି ବୋଲି ପୂଜକ ଶ୍ରୀ ପଣ୍ଡା ପ୍ରକାଶ କରିଥିଲେ।

## ବିଶ୍ୱନାଥ ମହାଦେବ ମନ୍ଦିର

କଟକ-ପୁରୀ ରାଜପଥ ଡାହାଣକୁ ପିପିଲି ନିକଟରୁ ୧୪ କି.ମି ଦୂରରେ ପ୍ରାଚୀନ ଯୁଗରେ 'ଭୋରଶୈଳ' ନାମରେ କଥିତ ବିଶ୍ୱନାଥ ମୁଣ୍ଡିଆ ଉପରେ ବିଶ୍ୱନାଥ ମହାଦେବ ମନ୍ଦିରଟି ଅବସ୍ଥିତ। ଦକ୍ଷିଣ ପୂର୍ବ ରେଳପଥର ମୋଟରୀ ଷ୍ଟେସନଠାରୁ ଏହାର ଦୂରତ୍ୱ ମାତ୍ର ୫୦୦ ଗଜ ଓ ଡେଲାଙ୍ଗ ଷ୍ଟେସନଠାରୁ ୬ କି.ମି.। ବିଶ୍ୱନାଥ ମୁଣ୍ଡିଆ ବା ପାହାଡ଼ର ଅଗ୍ରଭାଗକୁ ଉଠି ମନ୍ଦିରଟି ଦେଖିବା ମୋ ପକ୍ଷେ ସମ୍ଭବପର ହୋଇନଥିଲା। ତେଣୁ ମୋ ସହିତ ଯାଇଥିବା ରାଜଧାନୀ କଲେଜର ଇତିହାସ ବିଭାଗର ଅଧ୍ୟାପକ ଡକ୍ଟର ହେମନ୍ତ କୁମାର ପରିଜା ଉପରକୁ

Digitized by srujanika@gmail.com

ଉଠି ତଥ୍ୟ ସଂଗ୍ରହକରି ମୋତେ ଦେଇଥିଲେ। ଯାହା ଦେଖାହେଲା ଉପରେ ପାଣିର କୌଣସି ବ୍ୟବସ୍ଥା ନାହିଁ। ତେଣୁ ଭୋଗ କରୁଥିବା ଭକ୍ତମାନେ ତଳୁ ଭାରୁଆଙ୍କ ଦ୍ୱାରା ପାଣି ନେଇଥାଆନ୍ତି। ସେମାନଙ୍କୁ ମଧ୍ୟ ତାଙ୍କର ପାରଶ୍ରମିକ ଦିଆଯାଏ। ସେଠାରେ ମଧ୍ୟ ରହିବାପାଇଁ କିଛି ଆଶ୍ରୟସ୍ଥଳ ନାହିଁ। ମନ୍ଦିର ନିକଟରେ ପ୍ରତି ସଂକ୍ରାନ୍ତି ଦିନ ଯାତ୍ରା ହୋଇଥାଏ ଓ ସବୁଠାରୁ ବଡ଼ପର୍ବ ପାଳିତ ହୋଇଥାଏ ରଜସଂକ୍ରାନ୍ତି ଦିନ। ମାଘ ସପ୍ତମୀଠାରୁ ଏକ ଯଜ୍ଞ ମଧ୍ୟ ଅନୁଷ୍ଠିତ ହୋଇଥାଏ। ମୁଣ୍ଡିଆ ଉପରେ ସୋମବାର ଦିନ ରାତିରେ ୧୦/୧୫ ଜଣ ଲୋକ ମଧ୍ୟ ରହିଥାଆନ୍ତି ଓ ମନ୍ଦିର ତାଙ୍କର ଆଶ୍ରୟସ୍ଥଳୀ ହୋଇଥାଏ। ମନ୍ଦିରଟି ଏକାଦଶ ଶତାବ୍ଦୀର ସୋମବଂଶୀ ରାଜତ୍ୱରେ ନିର୍ମିତ ହୋଇଥିଲା ବୋଲି କେତେକ କହିଥାଆନ୍ତି। ମାତ୍ର ମନ୍ଦିରଟି ଏତେ ପୁରାତନ ନୁହେଁ ବୋଲି ଅନୁମାନ କରାଯାଏ। ମନ୍ଦିରରେ ଥିବା ଏକ ତାମ୍ରଫଳକରୁ ଜଣାଯାଏ ଖୋର୍ଦ୍ଧାରାଜା ହରେକୃଷ୍ଣଦେବ ଓ ବୀର କିଶୋରଦେବଙ୍କ ରାଜତ୍ୱରେ ମନ୍ଦିରଟି ନିର୍ମିତ ହୋଇଥିଲା। ଏହା ଅଷ୍ଟାଦଶ ଶତାବ୍ଦୀର କଥା। ଏହା ଏକ ସମ୍ଭାବ୍ୟ ତଥ୍ୟ। ଚାଇଁପଡ଼ା ଗ୍ରାମର ୭୫ ବର୍ଷ ବୟସ୍କ ଶଙ୍କର ବଳିୟାର ସିଂ ଏକ ସାକ୍ଷାତକାରରେ କହିଥିଲେ ଯେ ବିଶ୍ୱନାଥ ମନ୍ଦିର ଏକ ରାଜକୀର୍ତ୍ତି ଓ ଏହାର ନିର୍ମାତା ଥିଲେ ଜଗଦେବ। ସେ ରାଜପଦବୀ ଧାରଣ କରିଥିଲେହେଁ ପ୍ରକୃତପକ୍ଷେ ସେ ଥିଲେ ଜମିଦାର। ଏହି ତିନୋଟି ମତ ମଧ୍ୟରୁ ଖୋର୍ଦ୍ଧା ରାଜାଙ୍କ ରାଜତ୍ୱରେ ମନ୍ଦିର ନିର୍ମିତ ହୋଇଥିବା ତଥ୍ୟଟି ଅଧିକ ଯୁକ୍ତିସଂଗତ ବୋଲି ମନେ ହୁଏ।

## ବଣି ବକ୍ରେଶ୍ୱର ଓ କୋରକେଶ୍ୱର ମନ୍ଦିର

ଘୋରଡ଼ିହା ଗ୍ରାମରେ ବଣି ବକ୍ରେଶ୍ୱର ମହାଦେବ ମନ୍ଦିରଟି ବିରାଜମାନ। ଏହା ବିଶ୍ୱନାଥ ମୁଣ୍ଡିଆର ଉତ୍ତର-ପଶ୍ଚିମ ଦିଗକୁ ବଣି ବକ୍ରେଶ୍ୱର ମୁଣ୍ଡିଆର ପାଦ ଦେଶରେ ଅବସ୍ଥିତ। ପାହାଡ଼ର ନାମାନୁସାରେ ମନ୍ଦିରର ଏପରି ନାମକରଣ ହୋଇଛି। ଏହା ଗଙ୍ଗ ବଂଶୀୟ ନରପତି ମଦନମହାଦେବଙ୍କ ଦ୍ୱାରା ନିର୍ମିତ ହୋଇଥିବାର ଜଣାଯାଏ। ମନ୍ଦିର ନିକଟରେ ଏକ ପୁଷ୍କରିଣୀ ରହିଥିବାର ଦେଖାଯାଏ। ଏହାକୁ ମଦନମହାଦେବଙ୍କ ରାଣୀ ତାରାଦେବୀ ଖନନ କରାଇଥିବାରୁ ଏହା ତାରା ପୋଖରୀ ନାମରେ ଖ୍ୟାତ ହୋଇଛି। ସେହିପରି କୁରୁକି ମୁଣ୍ଡିଆ ଉପରେ ଏକ ଶିବ ମନ୍ଦିର ପ୍ରତିଷ୍ଠା ହୋଇଥିବାର ଦେଖାଯାଏ। ତାହା କୋରକେଶ୍ୱର ମନ୍ଦିର ନାମରେ ଖ୍ୟାତ। ନିଳିଗଡ଼କୁରୁକି ମୁଣ୍ଡିଆ ଉପରେ ଏହାର ଅବସ୍ଥିତି ହେତୁ ମୁଣ୍ଡିଆର ନାମାନୁସାରେ ମନ୍ଦିର ଓ ବିଗ୍ରହର ନାମ କୋରକେଶ୍ୱର ହୋଇଛି।

Digitized by srujanika@gmail.com

## ଅର୍ଜ୍ଜୁନେଶ୍ୱର ମନ୍ଦିର

କଟକରୁ ପୁରୀ ଅଡ଼କୁ ଗଲେ ଜଗନ୍ନାଥ ସଡ଼କର ଡାହାଣ ପଟର ପଶ୍ଚିମକୁ ପିପିଲିଠାରୁ ୭ କି.ମି. ଦୂରବର୍ତ୍ତୀ ଠିକ୍ ଦୟାନଦୀ କୂଳରେ ହଳଦୀବସନ୍ତ ଗ୍ରାମରେ ଅର୍ଜ୍ଜୁନେଶ୍ୱର ମନ୍ଦିରଟି ଅବସ୍ଥିତ। ଏହା ପିପିଲି ଅଞ୍ଚଳର ଏକ ପୁରାତନ ଶିବ ମନ୍ଦିର ବୋଲି ଜଣାଯାଏ। ଏହାର ନିର୍ମାତା ଥିଲେ ଗଂଗ ବଂଶର ରାଜା ଗଂଗେଶ୍ୱର ଦେବ (ଚୋଡ଼ଗଙ୍ଗ ଦେବ)। ଏକ ପ୍ରକ୍ଷିପ୍ତି ଅନୁଯାୟୀ ଏକଦା ରାଜା ସେହିବାଟେ ଯାଉଥିବା ସମୟରେ ବୃକ୍ଷ ଉପରେ ଏକ ହଳଦୀ ବସନ୍ତ ଚଢ଼େଇ ଦେଖି ସେହି ସ୍ଥାନଟିର ନାମ ରଖିଥିଲେ ହଳଦୀ ବସନ୍ତ। ମନ୍ଦିର ଗାତ୍ରରେ ଖୋଦିତ ଏକ ପଦ୍ମଫୁଲର କାରୁକାର୍ଯ୍ୟ ଅତୀବ ସୂକ୍ଷ୍ମ ଓ ମନୋରମ। ମନ୍ଦିରର ପୂଜକ ଅର୍ଜ୍ଜୁନ ପାଢ଼ୀ ଏକ ସାକ୍ଷାତକାରରେ କହିଥିଲେ ଯେ ଏଠାରେ ଅରୁଆ ଅନ୍ନ ଓ ଡାଲମା ନୈବେଦ୍ୟ ଦିଆଯାଏ।

## ପାଣିଦୋଳ ଗ୍ରାମର ଅଷ୍ଟଶମ୍ଭୁ ମନ୍ଦିର

ପାଣିଦୋଳ ଗ୍ରାମଟି ଶିବମନ୍ଦିରରେ ବିମଣ୍ଡିତ। ପୂର୍ବରୁ ସୂଚନା ଦିଆଯାଇଛି ଯେ ଏହି ଗ୍ରାମଟି ପିପିଲି ଭୂଖଣ୍ଡରେ ସବୁଠାରୁ ଉଚ୍ଚସ୍ଥାନରେ ଅବସ୍ଥିତ। ଜନଶ୍ରୁତିରୁ ଜଣାଯାଏ ଯେ ସମଗ୍ର ପୁରୀ ଜିଲ୍ଲାରେ ବନ୍ୟା ହେଲେ ପାଣିଦୋଳରେ ହିଁ ଧାନ ବିହନ ମିଳେ। ସେହିପରି ମରୁଡ଼ି ହେଲେ ସବୁଠାରୁ ଖାଲୁଆ ଗାଁ ଡେଲାଙ୍ଗ ଥାନାର ଗୁଡୁପାଇଲି ଗ୍ରାମରେ ଧାନ ବିହନ ମିଳେ। ସେ ଯାହାହେଉ ସମ୍ଭବତଃ ସର୍ବୋଚ୍ଚ ସ୍ଥାନହୋଇଥିବାରୁ ପାଣିଦୋଳ ଗ୍ରାମରେ ବହୁ ମନ୍ଦିର ଓ ମୂର୍ତ୍ତି ଦେଖିବାକୁ ମିଳେ। ତନ୍ମଧ୍ୟରୁ ଅଷ୍ଟଶମ୍ଭୁ ମନ୍ଦିରଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ। ସେଗୁଡ଼ିକ ହେଲା ପୁଷ୍ପେଶ୍ୱର, ମେଘେଶ୍ୱର, ଶଙ୍କଟେଶ୍ୱର, କାଣେଶ୍ୱର, କାଞ୍ଜିପାଣିଶ୍ୱର, ସ୍ୱପ୍ନେଶ୍ୱର, ଆଖଣ୍ଡଳେଶ୍ୱର ଓ ନୀଳକଣ୍ଠେଶ୍ୱର। ତନ୍ମଧ୍ୟରୁ ଏବେ ୪ଟି ମନ୍ଦିର ବିରାଜମାନ ହୋଇଥିବା ସ୍ଥଳେ ଅନ୍ୟ ୪ଟି ଅର୍ଦ୍ଧଭଗ୍ନ ଅବସ୍ଥାରେ ଦଣ୍ଡାୟମାନ।

## ଉକୁନ୍ଦେଶ୍ୱର ଶିବ ମନ୍ଦିର

ଉକୁନ୍ଦେଶ୍ୱର ଦେଉଳୀ ମୌଜାରେ ଏକ ଶିବମନ୍ଦିର ପ୍ରତିଷ୍ଠିତ ହୋଇଥିବାର ଦେଖାଯାଏ। ଦେଉଳୀ ମୌଜାଟି ଶିବଙ୍କର ନାମାନୁସାରେ ଉକୁନ୍ଦେଶ୍ୱର ଦେଉଳୀ ହୋଇଛି। ଏହାର ନିର୍ମାଣ ବିଷୟରେ ଦେଉଳୀ ଅନ୍ତର୍ଗତ ଦଶବାଟୀ ଗ୍ରାମର ୮୪ ବର୍ଷ ବୟସ୍କ ଜନାର୍ଦ୍ଦନ ପଟ୍ଟନାୟକ ଏକ ସାକ୍ଷାତକାରରେ କହିଥିଲେ ଯେ

Digitized by srujanika@gmail.com

ହରିହର ଗୁରୁ ନାମକ ପୁରୀର ଜନୈକ ବଡ଼ପଣ୍ଡାଙ୍କର କୌଣସି ସନ୍ତାନ ସନ୍ତତି ନ ହେବାରୁ ତାଙ୍କୁ ସ୍ୱପ୍ନାଦେଶ ହୋଇଥିଲା ଦେଉଳୀ ମୌଜାରେ ଏକ ଶିବ ମନ୍ଦିର ପ୍ରତିଷ୍ଠା ପାଇଁ। ତାହା କରିବାରୁ ତାଙ୍କର ଏକ ପୁତ୍ର ଲାଭ ହୋଇଥିଲା। ତାର ନାମ ରଖିଥିଲେ ସୂର୍ଯ୍ୟ ନାରାୟଣ ଗୁରୁ। ହରିହର ଗୁରୁ ମନ୍ଦିର ପରିଚୋଳନା ପାଇଁ ୩ ବାଟି ଜମି ମଧ୍ୟ ଖଞ୍ଜି ଦେଇଥିଲେ। ଏହାଥିଲା ଖ୍ରୀ:୧୮୦୮ରୁ ୧୮୧୦ ଖ୍ରୀଷ୍ଟାବ୍ଦର କଥା।

## କୁମାରେଶ୍ୱର ମନ୍ଦିର

ସାତଶଙ୍ଖ ନିକଟସ୍ଥ ରତ୍ନଚିରା ନଦୀର ଉପର ପାର୍ଶ୍ୱରେ କୁମାରେଶ୍ୱର ମହାଦେବ ମନ୍ଦିରଟି ଅବସ୍ଥିତ। ଏହି ମନ୍ଦିର ବିଷୟରେ ଏକ ଜନଶ୍ରୁତି ରହିଛି। ଏକଦା ଜଣେ ବଣିକ ରତ୍ନଚିରା ନଦୀ ଦେଇ ଯାଉଥିବା ସମୟରେ ଅସୁସ୍ଥ ହୋଇ ପଡ଼ିଥିଲେ। ସେହି ସମୟରେ ତାଙ୍କର ସ୍ତ୍ରୀ ଥିଲେ ଆସନ୍ନ ପ୍ରସବା। ନିଜର ମୃତ୍ୟୁ ଆଶଙ୍କାରୁ ବଂଶରକ୍ଷା ନିମନ୍ତେ କୁମାରେଶ୍ୱର ମହାଦେବଙ୍କ ନିକଟରେ ଗୁହାରି କରିଥିଲେ ଗୋଟିଏ ପୁତ୍ର ଲାଭପାଇଁ। ଅଳ୍ପ ଦିନ ପରେ ସୁସ୍ଥହୋଇ ସେ ଘରକୁ ଫେରି ଦେଖନ୍ତି ଯେ ତାଙ୍କର ଏକ ପୁତ୍ର ଜନ୍ମଗ୍ରହଣ କରିଛି। ତେଣୁ ସେ ସେହି ରତ୍ନଚିରା ନଦୀଦେଇ କୁମାରେଶ୍ୱର ମହାଦେବଙ୍କୁ ଦର୍ଶନକରିବା ସଂଗେ ସଂଗେ ମନ୍ଦିରଟିର ପୁନଃନିର୍ମାଣ କରିଥିଲେ।

## ଅନ୍ୟାନ୍ୟ ଶିବ ମନ୍ଦିର

ଉପରୋକ୍ତ ମନ୍ଦିର ବ୍ୟତୀତ ଧଉଳି ପର୍ବତ ଉପରେ ବହିରଙ୍ଗେଶ୍ୱର, ଧବଳେଶ୍ୱର, ୨୫ ଫୁଟ ଉଚ୍ଚତା ବିଶିଷ୍ଟ ଶଙ୍କଟେଶ୍ୱର, ଦାଣ୍ଡମୁକୁନ୍ଦପୁରର ପ୍ରଥମ 'ଶ' .ଶେଷ ମୁଣ୍ଡରେ ନୀଳକଣ୍ଠେଶ୍ୱର ମନ୍ଦିର ଓ ମକରବା ପୁଷ୍କରିଣୀ କୂଳରେ ମକରେଶ୍ୱର ମନ୍ଦିର ଦୟାନଦୀ କୂଳରେ ବାଲୁକେଶ୍ୱର ଶିବମନ୍ଦିର, ଗୋବର୍ଦ୍ଧନପୁର ଗ୍ରାମର ଗଡ଼େଶ୍ୱର ମହାଦେବ ମନ୍ଦିର, ଲକ୍ଷ୍ମୀନାରାୟଣପୁର ଗ୍ରାମର ସ୍ୱପ୍ନେଶ୍ୱର ମହାଦେବ ମନ୍ଦିର, ଏକଡ଼ାଳିଆ ଗ୍ରାମର ଶଙ୍କଟେଶ୍ୱର ମନ୍ଦିର, ଉଦ୍ଭରା ଗ୍ରାମର ନୀଳକଣ୍ଠେଶ୍ୱର ମନ୍ଦିର, ପୁବାଶାସନ ଗ୍ରାମର ଅମରେଶ୍ୱର ମହାଦେବ ମନ୍ଦିର ଓ ଖେଲାର ଗ୍ରାମର ଖେଳେଶ୍ୱର ମହାଦେବ ମନ୍ଦିର ପିପିଲି ଭୂଖଣ୍ଡର ପ୍ରତ୍ନତାତ୍ତ୍ୱିକ ବିଭବକୁ ଶ୍ରୀମଣ୍ଡିତ କରିଛି।

Digitized by srujanika@gmail.com

## ବିଷ୍ଣୁ ମନ୍ଦିର

ଶିବମନ୍ଦିର ତୁଳନାରେ ପିପିଲି ଭୂଖଣ୍ଡରେ ବିଷ୍ଣୁମନ୍ଦିରର ସଂଖ୍ୟା ସ୍ୱଳ୍ପ। ସମ୍ଭବତଃ ଭୁବନେଶ୍ୱର ନାମରେ କଥିତ ଅତୀତରେ ଏକାମ୍ର କ୍ଷେତ୍ର ମୁଖ୍ୟତଃ ଏକ ଶୈବପୀଠ ହୋଇଥିବାରୁ ତା'ର ପାର୍ଶ୍ୱବର୍ତ୍ତୀ ପିପିଲି ଭୂଖଣ୍ଡ ବିଶେଷ ଭାବେ ପ୍ରଭାବିତ ହୋଇଛି। ତଥାପି ଯେଉଁ କେତୋଟି ବିଷ୍ଣୁ ମନ୍ଦିର ପ୍ରତିଷ୍ଠିତ ହୋଇଛି ସେଗୁଡ଼ିକର ମହିମା କୌଣସି ଗୁଣରେ ନ୍ୟୂନ ନୁହେଁ। ତନ୍ମଧ୍ୟରୁ ଗୋଟିଏ ହେଉଛି ଗୋପୀନାଥ ମନ୍ଦିର।

## ଦାଣ୍ଡମୁକୁନ୍ଦପୁରର ଗୋପୀନାଥ ଦେବ ମନ୍ଦିର

ଦାଣ୍ଡମୁକୁନ୍ଦପୁରସ୍ଥିତ ବଡ଼ ପୋଖରୀ କୂଳରେ କଟକରୁ ପୁରୀ ଆଡ଼କୁ ଗଲେ ଡାହାଣ ପାର୍ଶ୍ୱରେ ଏକ ମନ୍ଦିର ଦୃଷ୍ଟି ଗୋଚର ହୋଇଥାଏ। ତାହା ଗୋପୀନାଥ ଦେବ ମନ୍ଦିର ନାମରେ ଖ୍ୟାତ। ଏହାକୁ ମଧ୍ୟ ଗୋପାଳ ଜୀଉ ମନ୍ଦିର ବୋଲି କୁହାଯାଇଥାଏ। ଚାଲୁକ୍ୟବଂଶର ନରପତି ମୁକୁନ୍ଦଦେବ ହରିଚନ୍ଦନ ସମ୍ଭବତଃ ୧୫୬୬ ଖ୍ରୀଷ୍ଟାବ୍ଦରେ ଏହି ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ। ମାତ୍ର ୧୫୬୮ ଖ୍ରୀଷ୍ଟାବ୍ଦରେ ଆଫଗାନଙ୍କ ଆକ୍ରମଣ ସମୟରେ ମୁକୁନ୍ଦଦେବଙ୍କର ଅକାଳ ବିୟୋଗ ଘଟିବାରୁ ତାଙ୍କ ରାଣୀ ଏହାକୁ ସମ୍ପୂର୍ଣ୍ଣ କରି ତା ମଧ୍ୟରେ ବିଗ୍ରହ ପ୍ରତିଷ୍ଠା କରିଥିଲେ। ବିଗ୍ରହଟି କଳା ମୁଗୁନି ପଥରରେ ତିଆରି। ସେ ମଧ୍ୟ ମନ୍ଦିର ପରିଚାଳନା କରିବା ପାଇଁ ଜମିଦାନ କରିଥିଲେ। ଏହି ଜମିଦାନ ବିଷୟରେ ଅନ୍ୟ ଏକ ପ୍ରକ୍ଷିପ୍ତି ଶୁଣାଯାଏ। ଅରାଗଡ଼ର ରାଜା ଅପୁତ୍ରିକ ଥିଲେ। ସେ ଦହି ପଖାଳ ଖାଇ ମନ୍ଦିରରେ ଅଧିଆ ପଡ଼ିଥିବାରୁ ତାଙ୍କର ଏକ ପୁତ୍ର ଲାଭ ହୋଇଥିଲା। ତେଣୁ ସେ ପ୍ରୀତ ହୋଇ ଏହି ମନ୍ଦିରକୁ ୧୧ ବାଟି ଜମି ଦାନ କରିଥିଲେ। ମାତ୍ର ବର୍ତ୍ତମାନ ମନ୍ଦିରର ୨୦୦ ଏକର ଜମି ଅଛି। ଏହି ମନ୍ଦିର ଉପରେ କଳାପାହାଡ଼ ଆକ୍ରମଣ କରିଥିବାର ଶୁଣାଯାଏ। ଏହା ମଧ୍ୟ ଅସତ୍ୟ ହୋଇନପାରେ। ସଡ଼କର ଠିକ୍ ପାର୍ଶ୍ୱରେ ମନ୍ଦିରଟିର ଅବସ୍ଥିତି ହୋଇଥିବାରୁ ପୁରୀ ଯିବାବାଟରେ ଏହା ଉପରେ ତାଙ୍କର ଦୃଷ୍ଟି ପଡ଼ିଥିବ ଓ ଏହାର କିଛି ଅଂଶ ଭାଂଗି ଦେଇଥିବେ। ମନ୍ଦିରର ବେଢ଼ା ମଧ୍ୟରେ ଏକ ଉଚ୍ଚ ବେଦୀ ନିର୍ମିତ ହୋଇଛି। ସେଠାରେ ଏକାଧିକ ଉତ୍ସବ ପାଳନ କରାଯାଏ। ଚମ୍ପକ ଦ୍ୱାଦଶୀ ବାଣ ଯାତ୍ରା ଓ ରାସଯାତ୍ରା ଗୋପାଳ ଜୀଉଙ୍କର ପ୍ରଧାନ ଯାତ୍ରା।

Digitized by srujanika@gmail.com

## କାକୁଡ଼ିଆର ଗୋପୀନାଥ ମନ୍ଦିର

ପିପିଲିରୁ ଚଟଣୀ ପର୍ଯ୍ୟନ୍ତ ପଡ଼ିଥିବା ରାସ୍ତାର ଡାହାଣ ପାର୍ଶ୍ୱରେ କାକୁଡ଼ିଆ ନାମକ ଏକ ଗ୍ରାମରେ ଗୋପୀନାଥ ମନ୍ଦିରଟି ଅବସ୍ଥିତ। ଏହା ମଧ୍ୟରେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ପୂଜିତ ହେଉଛନ୍ତି। ମନ୍ଦିର ଗାତ୍ରଟି ସୂକ୍ଷ୍ମ କାରୁକାର୍ଯ୍ୟରେ ପରିପୂର୍ଣ୍ଣ। ମାତ୍ର ମୁଖଶାଳାଟି ଭାଙ୍ଗିଯାଇଛି। ଏହାର କାରୁକାର୍ଯ୍ୟ ପର୍ଯ୍ୟାଲୋଚନା କଲେ ମନ୍ଦିରଟି ଗଙ୍ଗ ରାଜତ୍ୱର କୌଣସି ଏକ ରାଜା ନିର୍ମାଣ କରିଥିବାର ବିଶ୍ୱାସ କରାଯାଇପାରେ। ବିଗ୍ରହଙ୍କର ପୂଜା ଓ ନୀତିପାଇଁ ଜମି ଖଞ୍ଜା ହୋଇଛି। ମନ୍ଦିରକୁ ସଂଲଗ୍ନକରି ରୋଷେଇ ଘର। ଦିନ ୧୨ଟାରେ ଅରୁଆ ଅନ୍ନ ଧୂପ ଦିଆଯାଉଥିବା ସ୍ଥଳେ ସଂଧ୍ୟାରେ ପଖାଳ ଭୋଗ ଲାଗେ। ମନ୍ଦିର ପ୍ରାଙ୍ଗଣରେ ପ୍ରତିବର୍ଷ ଏପ୍ରିଲ ୨୫ ତାରିଖରୁ ୭ ରାତି ପାଲା ପରିବେଷଣ କରାଯାଇଥାଏ।

## ଅନ୍ୟାନ୍ୟ ବିଷ୍ଣୁ ମନ୍ଦିର

ଉପରୋକ୍ତ ମନ୍ଦିର ବ୍ୟତୀତ ଦାଣ୍ଡମୁକୁନ୍ଦପୁରରେ ପତିତପାବନ ମନ୍ଦିର, ଧଉଳି ପର୍ବତର ନିମ୍ନ ଭାଗରେ ବହିରଙ୍ଗେଶ୍ୱର ମନ୍ଦିରର ଡାହାଣ ପାର୍ଶ୍ୱକୁ ବହୁ ପୁରାତନ ଗଣେଶ ମୂର୍ତ୍ତି ଥାଇ ଏକ ଗଣେଶ ମନ୍ଦିର, ସଦାବର୍ତ୍ତ ମଠରେ ଥିବା ମୁରଲୀ ମନୋହର ମୂର୍ତ୍ତି, ପାଣିଦୋଳ ଗ୍ରାମରେ ରାଧାମୋହନ, ପତିତପାବନ, ଭଗବତ ବାସୁଦେବ ମନ୍ଦିର ଆଦି କେତୋଟି ପ୍ରତ୍ନତାତ୍ତ୍ୱିକ ଉପାଦାନ ପିପିଲିର ଇତିହାସକୁ ମହିମାନ୍ୱିତ କରିଛି।

## ଶାକ୍ତ ମନ୍ଦିର

ଏକଦା ଭୁବନେଶ୍ୱରରେ ଶକ୍ତି ଉପାସନା ପ୍ରଚଳିତ ଥିବାରୁ ତା'ର ପ୍ରଭାବ ପିପିଲି ଭୂଖଣ୍ଡ ଉପରେ ନିଶ୍ଚିତପକ୍ଷେ ପଡ଼ିଛି। ସେହିପରି ଅଦୂରରେ ଅବସ୍ଥିତ ହୀରାପୁରରେ ଚଉରାଶୀ ଯୋଗିନୀ ପୀଠର ପ୍ରଭାବ ଯେ ପଡ଼ିଥିବ ଏଥିରେ ସନ୍ଦେହ ନାହିଁ। ତେଣୁ ପିପିଲି ଭୂଖଣ୍ଡରେ ଶକ୍ତି ପୂଜା ହେଉଥିବାର ଦେଖାଯାଏ। ତନ୍ମଧ୍ୟରୁ କେତେକ ମନ୍ଦିର ମଧ୍ୟରେ ଓ ଅନ୍ୟ କେତୋଟି ଖୋଲାସ୍ଥାନରେ ପୂଜିତ ହେଉଛନ୍ତି। ସବୁ ଶକ୍ତି ମନ୍ଦିର ଓ ମୂର୍ତ୍ତି ବିଷୟରେ ତଥ୍ୟ ସଂଗ୍ରହ କରିପାରି ନଥିବାରୁ ମାତ୍ର ୨-୩ଟିର ବର୍ଣ୍ଣନା ଏଠାରେ ଦିଆଯାଇଛି।

Digitized by srujanika@gmail.com

## ଉଉରାୟଣୀ

ଗଡ଼ କୁମାରେଶ୍ୱରର ଦକ୍ଷିଣ ଦିଗରେ ଉଉରାୟଣୀ ଠାକୁରାଣୀ ବିରାଜମାନ। ପୂର୍ବରୁ ସେଠାରେ ଏକ ଜଂଗଲଥିବାରୁ ସେହି ଠାକୁରାଣୀ ଖୋଲାସ୍ଥାନରେ ପୂଜିତ ହେଉଥିଲେ। ଏବେ ମଧ୍ୟ ସେଠାରେ କୌଣସି ମନ୍ଦିର ନାହିଁ। ଛୋଟ ଛୋଟ ଗଛର ମୂଳ ଠାକୁରାଣୀଙ୍କର ବିଜେସ୍ଥଳୀ ହୋଇଛି। ଠାକୁରାଣୀ ଉତ୍ତର ମୁଖୀ ହୋଇଥିବାରୁ ତାଙ୍କୁ ଉଉରାୟଣୀ ବୋଲି କୁହାଯାଇଥାଏ। ଥରେ ଖୋର୍ଦ୍ଧାର କୌଣସି ରାଜା ବିଜୟାଦଶମୀ ଦିନ ଠାକୁରାଣୀଙ୍କର ଧଣ୍ଡାମାଳ ନେଇ ଗଡ଼ କୁମାରେଶ୍ୱରରେ ଅବସ୍ଥାପିତ ପାଇକ ବାହିନୀକୁ ଦେଇଥିଲେ ଶତ୍ରୁଙ୍କର ବିନାଶ ପାଇଁ। ସତକୁ ସତ ପାଇକବାହିନୀ ଜୟଯୁକ୍ତ ହୋଇଥିଲେ, ସେହି ଦିନଠାରୁ ପ୍ରତି ଦଶହରା ଦିନ ଏକ ଉତ୍ସବର ଆୟୋଜନ କରାଯାଇ ସେଠାରେ ବହୁ ଛାଗଙ୍କୁ ବଳୀ ଦିଆଯାଏ।

ସମଗ୍ର ପୁରୀ ଜିଲ୍ଲାରେ ଉଉରାୟଣୀଙ୍କର ମହିମା ପରିବ୍ୟାପ୍ତ। ଏହି ଅଞ୍ଚଳର ଅଧିବାସୀମାନେ ତାଙ୍କୁ 'ମା' ବୋଲି ସମ୍ବୋଧନ କରିଥାଆନ୍ତି। ଏହା ମୂଳରେ ଗୋଟିଏ ସତ୍ୟଘଟଣା ନିହିତ ଥିବାର ଲୋକମୁଖରୁ ଶୁଣାଯାଏ। ଉଉରାୟଣୀ ଗ୍ରାମର ଦୀନବଂଧୁ ପାତ୍ର ନାମରେ ଜଣେ ବ୍ୟକ୍ତି ଠାକୁରାଣୀଙ୍କର ପରମ ଭକ୍ତ ଥିଲେ। ସେ ଇଂରେଜ ଶାସନରେ ପୁରୀ କୋର୍ଟରେ ଜଣେ ଚୌକିଦାର ରୂପେ କାର୍ଯ୍ୟ କରୁଥିଲେ। ଲାଉଡ଼ଙ୍କୀ ଗ୍ରାମର ମଧୁସୂଦନ ମିଶ୍ର ନାମରେ ଜଣେ ପ୍ରବଳ ପ୍ରତାପୀ ଓ ଧନାଢ୍ୟ ବ୍ୟକ୍ତି ଥିଲେ। ଟଙ୍କା ପଇସା କରଜ ଦେବା ଥିଲା ତାଙ୍କର ମୁଖ୍ୟ ବ୍ୟବସାୟ। ଥରେ ଦୀନବଂଧୁ ପାତ୍ର ଅଭାବଗ୍ରସ୍ତ ହୋଇ ତାଙ୍କଠାରୁ କିଛି ଟଙ୍କା କରଜ ଆଣି ତାହା ପରିଶୋଧ କରିପାରିନଥିଲେ। ଦିନକର ଘଟଣା। ମଧୁସୂଦନ ମିଶ୍ରଙ୍କର ଦୀନବନ୍ଧୁ ପାତ୍ରଙ୍କ ସହିତ ସାକ୍ଷାତ ହୁଏ ଉଉରାୟଣୀ ଠାକୁରାଣୀଙ୍କ ପୀଠରେ। ମଧୁସୂଦନ ମିଶ୍ର ଟଙ୍କା ମାଗିବା ସଂଗେ ସଂଗେ ତାଙ୍କ ମା'ଙ୍କ ପ୍ରତି ଏକ ଅଶ୍ଳୀଳ ଭାଷା ପ୍ରୟୋଗ କରିଥିଲେ। ଏଥିରେ ଦୀନବନ୍ଧୁ ପାତ୍ର ବିଶେଷ ଭାବରେ କ୍ଷୁବ୍ଧ ହୋଇ ତତ୍କ୍ଷଣାତ ନିଜ ଘରକୁ ଯାଇଥିଲେ। ମା'ଙ୍କୁ ନିଜଘରୁ ମଧୁ ମିଶ୍ରଙ୍କ ପାଖକୁ ଟାଣି ଟାଣି ଆଣୁଥିବା ସମୟରେ ତାଙ୍କ ଚାଳରେ ବନ୍ଧାହୋଇଥିବା ନିର୍ମାଲ୍ୟ ହାଣ୍ଡି ଛିଣ୍ଡି ପଡ଼ିଥିଲା। ତାପରେ ସେହି ହାଣ୍ଡି ଓ ମା'ଙ୍କୁ ନେଇ ସେ ପହଞ୍ଚିଥିଲେ ଉଉରାୟଣୀ ପୀଠରେ। ତାଙ୍କର ସମ୍ମୁଖରେ ସେ ଶପଥ ନେଇଥିଲେ ଯେ ତାଙ୍କ ମା'ଙ୍କୁ ଅପମାନିତ କରିଥିବାରୁ ସେ ଦିନେ ତା'ର ମୁଣ୍ଡ କାଟିବେ।

Digitized by srujanika@gmail.com

ସେ ସୁଯୋଗ ଅପେକ୍ଷାରେ ରହିଥାଆନ୍ତି । ଦିନପରେ ଦିନ ଗଡି ଚାଲିଥାଏ । ଦିନେ ସଂଧ୍ୟାବେଳେ ଦୀନବନ୍ଧୁ ପାତ୍ର ଜଣେ ଆସାମୀକୁ ପୁରୀ କୋର୍ଟରେ ହାଜର କରାଇବାକୁ ନେଇ ମଳତ୍ୟାଗ କରିବାର ଆଳଦେଖାଇ ନିଜ ଗାଁକୁ ଫେରି ଆସିଥିଲେ, ଏକ ଶାଣିତ ଅସ୍ତ୍ର ହାତରେ ଧରି । ଗାଁରେ ପହଞ୍ଚି ମଧୁ ମିଶ୍ରଙ୍କୁ ହତ୍ୟାକରି ରାତି ନପାହୁଣୁ ସେ ପୁନରାୟ ପୁରୀ କୋର୍ଟରେ ହାଜର ହୋଇଥିଲେ । ନରହତ୍ୟା ଅପରାଧରେ ମକଦ୍ଦମା ଚାଲିଲା । ମାତ୍ର ପ୍ରମାଣ ଅଭାବରୁ ଦୀନବନ୍ଧୁ ପାତ୍ର ନିର୍ଦ୍ଦୋଷରେ ଖଲାସ ହୋଇଥିଲେ । ଏହା ଉତ୍ତରାୟଣୀ ଠାକୁରାଣୀଙ୍କର ମହିମା ଯୋଗୁଁ ହୋଇପାରିଥିଲା ବୋଲି ଲୋକମୁଖରେ ପ୍ରଚାରିତ ହୋଇଥିଲା । ମା'ଙ୍କର ସମ୍ମାନ ରକ୍ଷାପାଇଁ ଉତ୍ତରାୟଣୀ ଏହା କରିଥିବାରୁ ସେହି ଦିନଠାରୁ ଲୋକମାନେ ତାଙ୍କୁ 'ମା' ବୋଲି ସମ୍ବୋଧନ କରିଆସୁଛନ୍ତି । ସେମାନେ ମଧ ଅସାଧାରଣ କାର୍ଯ୍ୟର ସିଦ୍ଧିପାଇଁ ଉତ୍ତରାୟଣୀଙ୍କୁ ମାନସିକ କରିଥାଆନ୍ତି ।

## ଉକ୍ତୁଦେଶ୍ୱର ଦେଉଳୀର ଚମ୍ପାଦେଈ

ଚମ୍ପାଦେଈ ଠାକୁରାଣୀ ଓ ତାଙ୍କ ମନ୍ଦିର ଦେଉଳୀ ମୌଜା ଅନ୍ତର୍ଗତ ଦଶବାଟି ଗ୍ରାମରେ ଅବସ୍ଥିତ । କଟକରୁ ପୁରୀକୁ ପଡିଥିବା ରାଜପଥରୁ ଦାଣ୍ଡମୁକୁନ୍ଦପୁର କରଣସାହି ଓ ଗାନ୍ଧୀମାର୍ଗ ମଧ୍ୟଦେଇ ଏକ କଚାରାସ୍ତା ଉକ୍ତ ମନ୍ଦିର ପର୍ଯ୍ୟନ୍ତ ଯାଇଛି । ଏହି ମନ୍ଦିର ମଧ୍ୟରେ କାଳୀ ପ୍ରତିମା ପୂଜିତ ହେଉଛନ୍ତି । ଜନଶ୍ରୁତି କହେ ଆଜକୁ ପ୍ରାୟ ୩୦୦ ବର୍ଷ ପୂର୍ବେ ଦେଉଳୀ ଗ୍ରାମରେ ଚମ୍ପାଦେଈ ଏକ ଖୋଲା ସ୍ଥାନରେ ବିରାଜମାନ କରିଥିଲେ । ତାଙ୍କୁ ରଖାଯାଇଥିଲା ଏକ ତେନ୍ତୁଳୀ ଓ ଖିରିକୋଳୀ ଗଛମୂଳରେ । ମାତ୍ର ସୁଦର୍ଶନ ପଟ୍ଟନାୟକଙ୍କର ଉଦ୍ୟମକ୍ରମେ ସେଠାରେ ଏକ ମନ୍ଦିର ପ୍ରତିଷ୍ଠା କରାଯାଇଥିଲା । ସେଠାରେ ଥିବା ସେହି ପଟ୍ଟନାୟକ ପରିବାରଙ୍କର ଐତିହ ଉପରେ ୮୪ ବର୍ଷ ବୟସ୍କ ଜନାର୍ଦ୍ଦନ ପଟ୍ଟନାୟକ କହିଥିଲେ ଯେ ପଟ୍ଟନାୟକ ପରିବାରର ପୂର୍ବ ବଂଶଧରମାନେ ନାୟକ ଉପାଧି ଧାରଣ କରିଥିଲେ । ତନ୍ମଧ୍ୟରୁ ଜଣଙ୍କର ନାମଥିଲା ପରୀକ୍ଷିତ ନାୟକ । ସେ ଇଂରେଜ ଅମଳରେ କାନୁନଗୋ ଚାକିରି କରି ରାଜସ୍ୱ ଆଦାୟର ଦାୟିତ୍ୱରେ ରହିଥିଲେ । ଦିନେ ପରୀକ୍ଷିତ ନାୟକ ଏକ ଘୋଡାରେ ଚଢ଼ି ପୁରୀର କଲେକ୍ଟରଙ୍କୁ ସାକ୍ଷାତ କରିବାକୁ ଯାଇଥିଲେ । ସେ ତାଙ୍କ କାର୍ଯ୍ୟରେ ଏପରି ପ୍ରୀତ ହୋଇଥିଲେ ଓ ତାଙ୍କୁ ପଟ୍ଟନାୟକ ପଦବୀରେ ଅଭିଷିକ୍ତ କରାଇଥିଲେ । ଏହା ଖ୍ରୀ:୧୮୨୦ରୁ ୧୮୨୫ ଖ୍ରୀଷ୍ଟାବ୍ଦର କଥା । ସେହି ପରିବାରର ସୁଦର୍ଶନ ପଟ୍ଟନାୟକ ଚମ୍ପାଦେଈଙ୍କ ପାଇଁ ୨୦ ଫୁଟ ଉଚ୍ଚତା ବିଶିଷ୍ଟ ଏକ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କର ୧୦ ବାଟି ଜମିଥିବାରୁ ଦେଉଳୀ

Digitized by srujanika@gmail.com

ମୌଜାର ଗୋଟିଏ ପଡ଼ାକୁ ଦଶବାଟି ବୋଲି କୁହାଯାଇଥାଏ। ସେହି ଦଶବାଟି ଗ୍ରାମରେ ଚମ୍ପାଦେଈଙ୍କ ମନ୍ଦିର ପ୍ରତିଷ୍ଠିତ ହୋଇଥିଲା। ଏବଂ ଚମ୍ପାଦେଈଙ୍କର ନାମ ଚମ୍ପା ନାହାକିଆଣୀ ରଖାଗଲା। ମାତ୍ର କାଳକ୍ରମେ ରକ୍ଷଣାବେକ୍ଷଣ ଅଭାବରୁ ମନ୍ଦିରଟି ଜରାଜୀର୍ଣ୍ଣ ଅବସ୍ଥାରେ ପଡ଼ିରହିଥିଲା। ଶୁଣାଯାଏ ତେନ୍ତୁଳି ଗଛଟି ବଡ଼ ହେବାପରେ ତା'ର ଚେରଦ୍ୱାରା ମନ୍ଦିରଟି ଆଘାତ ପ୍ରାପ୍ତ ହୋଇ ଫାଟି ଯାଇଥିଲା। ଚମ୍ପାଦେଈ ଠାକୁରାଣୀଙ୍କର ରୂପ ମଧ୍ୟ ଶୀର୍ଣ୍ଣ ହୋଇ ଯାଇଥିଲା। ମାତ୍ର ପରେ ପରେ ମନ୍ଦିରଟିର ସଂସ୍କାର କରାଯାଇ ଏକ ନୂତନ ପ୍ରତିମା ପୂଜିତ ହେଉଛନ୍ତି। ତା'ର ମୂଳରେ ରହିଛି ବାବୁନାବାବୁ ନାମରେ ପରିଚିତ ଜନାର୍ଦ୍ଦନ ପଟ୍ଟନାୟକଙ୍କ ପୁତ୍ର ଜିତେନ୍ଦ୍ରୀୟ ପଟ୍ଟନାୟକଙ୍କର ଅଦମ୍ୟ ଉତ୍ସାହ, ଆନ୍ତରିକ ପ୍ରଚେଷ୍ଟା ଓ ଦୃଢ଼ ମନୋବଳ। ନିମ୍ନରେ ଏ ସମ୍ପର୍କରେ ସେ ପ୍ରକାଶ କରିଥିବା ଏକ ଚାଞ୍ଚଲ୍ୟକର ତଥ୍ୟ ପ୍ରଦାନ କରାଗଲା।

ଏହାଥିଲା ୧୯୮୦ ମସିହାର କଥା। ଡ୍ରାମିଡ୍ରା କାର୍ଯ୍ୟ ପାଇଁ ସେ ବୋରିକିନା ଯାତ୍ରା କରିଥିଲେ। ବୋରିକନା ନିକଟସ୍ଥ ପାକଧୂଆବନ୍ଧ ଗ୍ରାମର ବାବାଜୀ ପୁରୁଷୋତ୍ତମ ଦାସଙ୍କ ସହ ହଠାତ୍ ସାକ୍ଷାତ ହୋଇଥିଲା ଜିତେନ୍ଦ୍ରୀୟ ବାବୁଙ୍କର। ସେହି ସାକ୍ଷାତରେ ସେ ତାଙ୍କୁ କହିଥିଲେ ଯେ ତାଙ୍କର ନିଜ ଗ୍ରାମରେ ଏକ ଜରାଜୀର୍ଣ୍ଣ ମନ୍ଦିର ମଧ୍ୟରେ ଗୋଟିଏ ଭଗ୍ନ କାଳୀମୂର୍ତ୍ତି ବିରାଜମାନ ହୋଇଛନ୍ତି। ମାତ୍ର ତାଙ୍କର ନିୟମିତ ଉପାସନା ହୋଇପାରୁ ନାହିଁ। ମନ୍ଦିରର ମରାମତି ଓ ଏକ ନୂତନ ପ୍ରତିମା ଅଧିଷ୍ଠିତ ନହେବା ପର୍ଯ୍ୟନ୍ତ ତାଙ୍କ ଗ୍ରାମରେ ଗଣ୍ଡଗୋଳ, ମାଲିମକଦ୍ଦମା, ଅରାଜକତା ଓ ବିଶୃଙ୍ଖଳା ଲାଗି ରହିଥିବ। ଏକଥା ଶୁଣି ଜିତେନ୍ଦ୍ରୀୟ ବାବୁ ବିସ୍ମିତ ହୋଇପଡ଼ିଲେ। କାରଣ ତାଙ୍କ ଗ୍ରାମ ବିଷୟରେ କିଛି ଜାଣିନଥିବା ବ୍ୟକ୍ତି ଏସବୁ ପ୍ରକାଶ କରୁଛନ୍ତି ବା କିପରି? କି ରହସ୍ୟ ତା' ମୂଳରେ ରହିଛି ତାହା ବୁଝି ନପାରି ଏ ସମସ୍ତ ବିଷୟ ସେ ତାଙ୍କର ପିତା ଜନାର୍ଦ୍ଦନ ପଟ୍ଟନାୟକଙ୍କ ନିକଟରେ ପ୍ରକାଶ କରିଥିଲେ। ସେ ଜଣେ ଧର୍ମପ୍ରାଣ ବ୍ୟକ୍ତି ହୋଇଥିବାରୁ ଏ ଦିଗରେ ସେ ତୁରନ୍ତ ପଦକ୍ଷେପ ଗ୍ରହଣ କରିବା ପାଇଁ ପରାମର୍ଶ ଦେଇଥିଲେ। ପିତାଙ୍କର ପରାମର୍ଶକୁ ଆଶୀର୍ବାଦ ଭାବେ ଗ୍ରହଣକରି ଜିତେନ୍ଦ୍ରୀୟ ବାବୁ ଏହି କାର୍ଯ୍ୟରେ ଅଗ୍ରସର ହେଲେ। କିଛିଦିନ ଯାଇଛି କି ନାହିଁ, ଦିନେ ରାତିରେ କଳାଶାଢ଼ୀ ପିନ୍ଧି ଜଣେ ବୃଦ୍ଧା ସ୍ୱପ୍ନରେ ମନ୍ଦିରଟିର ସଂସ୍କାର ଓ ପ୍ରତିମା ପ୍ରତିଷ୍ଠା ବିଷୟରେ ଏକ ବିବରଣୀ ଦେଇ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ। ସ୍ୱପ୍ନରେ ସେ କହିଥିଲେ ମନ୍ଦିରର ଉଚ୍ଚତା ୨୫ ଫୁଟ ହେବ ଓ ପ୍ରତିମାଟିର ଉଚ୍ଚତା ଅଢ଼େଇ ଫୁଟରୁ କମ୍ ହେବ ନାହିଁ। ଏଥି ସହିତ ତାଙ୍କର ଆସ୍ଥାନ କେତେ ଉଚ୍ଚ ହେବ

Digitized by srujanika@gmail.com

ତାହା ମଧ୍ୟ ସେ କହିଥିଲେ। ତା' ପରଦିନ ପଟ୍ଟନାୟକ ବାବୁ ଗ୍ରାମବାସୀଙ୍କ ସମ୍ମୁଖରେ ଏହାସବୁ ପ୍ରକାଶ କରିବାରୁ ସେମାନେ ସମସ୍ତେ ଏ କାର୍ଯ୍ୟରେ ଯୋଗ ଦେବାପାଇଁ ପ୍ରତିଶ୍ରୁତି ଦେଇଥିଲେ। ମନ୍ଦିରର ସଂସ୍କାର ହେବ, ମାତ୍ର ପ୍ରତିମା କେଉଁଠୁ ଆସିବ ତାହାଥିଲା ଚିନ୍ତାର ବିଷୟ। ତାଙ୍କର ଆକାର ଓ ପ୍ରକାର କିପରି ହେବ ତାହା କେବଳ ସ୍ୱପ୍ନରେ କୁହାଯାଇଛି ଜିତେନ୍ଦ୍ରୀୟ ବାବୁଙ୍କୁ। ତେଣୁ ସେ ନିଜେ ଗଲେ ଖିଚିଂ। ପ୍ରତିମାର ଏକ ନକ୍ସା କାଟି କାରିଗରଙ୍କୁ ଅନୁରୋଧ କରିଥିଲେ ସେହିପରି ଏକ କାଳୀମୂର୍ତ୍ତି ତିଆରି କରିବାପାଇଁ। ମାତ୍ର କାରିଗର ରୋକଠୋକ ମନା କରିଦେଲେ ଯେ ସେ କାଳୀଙ୍କର ପ୍ରତିମା ତିଆରି କରିବେ ନାହିଁ। ଏହି ଉତ୍ତର ତାଙ୍କ ପାଇଁ ବଜ୍ରଚଡ଼କ ପରି ମନେହେଲା। ଦୁଃଖରେ ମ୍ରିୟମାଣ ହୋଇ ସେ ଖିଚିଂସ୍ଥିତ କୀଚକେଶ୍ୱରୀ ମନ୍ଦିରରେ ପ୍ରାର୍ଥନା କଲେ। ଠିକ୍ ସେହିଦିନ ରାତିରେ ସେହି ବୃଦ୍ଧା ସ୍ୱପ୍ନରେ ତାଙ୍କୁ କହିଥିଲେ, "ଚିନ୍ତାକର ନାହିଁ। ହତୋତ୍ସାହ ହୁଅ ନାହିଁ। ପୁନରାୟ ସେହି କାରିଗରଙ୍କୁ ଅନୁରୋଧ କର।" ଏହି ସ୍ୱପ୍ନବାଣୀ ତାଙ୍କର ବ୍ୟାକୁଳ ହୃଦୟରେ ଶୀତଳ ଚନ୍ଦନର କାର୍ଯ୍ୟ କରିଥିଲା। ତା' ପରଦିନ ସେ କାରିଗରଙ୍କୁ ପୁଣି ଥରେ ଅନୁରୋଧ କରିବାରୁ ସେ ଅତି ଆଗ୍ରହର ସହିତ ମୂର୍ତ୍ତିଟିକୁ ନିର୍ଦ୍ଧାରିତ ସମୟ ମଧ୍ୟରେ ଶେଷ କରିବାକୁ ପ୍ରତିଶ୍ରୁତି ଦେଇଥିଲେ। ସେହି ନିର୍ଦ୍ଦିଷ୍ଟ ଦିନଟି ଆସି ପହଞ୍ଚିଲା। ଜିତେନ୍ଦ୍ରୀୟ ବାବୁ ପହଞ୍ଚିଲେ ମୂର୍ତ୍ତିଟିକୁ ଆଣିବା ପାଇଁ। ତାକୁ ଧରି ସେ ଫେରିଆସିଲେ ନିଜ ଗ୍ରାମକୁ। ଇତିମଧ୍ୟରେ ମନ୍ଦିରଟିର ସଂସ୍କାର କାର୍ଯ୍ୟ ସରିଥାଏ। ବରଂ ପୂର୍ବାପେକ୍ଷା ତା'ର ଉଚ୍ଚତା ଅଧିକ ପାଞ୍ଚଫୁଟ ବଢ଼ିଯାଇଥାଏ। ପ୍ରତିଷ୍ଠା କରିବାପାଇଁ ଦିନସ୍ଥିର ହେଲା। ତାଙ୍କ ପିତା ଜନାର୍ଦ୍ଦନ ପଟ୍ଟନାୟକ ମଧ୍ୟ ସମ୍ମତି ଦେଲେ ପ୍ରତିଷ୍ଠା ଉତ୍ସବରେ ସେ ନିଜେ ପୁରୋଧା ହୋଇ ପ୍ରତିମାକୁ ଜୀବନ୍ୟାସ ଦେବେ। ସେହି ନିର୍ଦ୍ଧାରିତ ଦିନ ଆରମ୍ଭ ହେଲା ପ୍ରତିଷ୍ଠା ଉତ୍ସବ। ତାହା ୧୯୯୧ ମସିହା କଥା। ଜିତେନ୍ଦ୍ରୀୟ ପଟ୍ଟନାୟକ ଭକ୍ତି ଗଦଗଦ ଚିତ୍ତରେ ମୋ ଆଗରେ ପ୍ରକାଶ କରିଥିଲେ ଯେ ଯେଉଁ ମୂର୍ତ୍ତିକୁ ସେ ଏକାକୀ ଉଠାଇ ଆଣିଥିଲେ। ପ୍ରତିଷ୍ଠା ପୂର୍ବରୁ ତାକୁ ତାଙ୍କ ସମେତ ୪ ଜଣ ବ୍ୟକ୍ତି ଉଠାଇ ପାରିନଥିଲେ। କି ମହିମା, କି କୃପା ତାଙ୍କର ତାକୁ ମଣିଷ ବା କଣ ବୁଝିପାରିବ? ସେ ଯାହାହେଉ ସ୍ୱପ୍ନରେ ଦେଖିଥିବା ସେହି ଦେବୀଙ୍କୁ ସ୍ମରଣ କରି ଜିତେନ୍ଦ୍ରୀୟ ବାବୁ ନିଜେ ସିଂହାସନ ଉପରେ ତାଙ୍କୁ ଅଧିଷ୍ଠିତ କରାଇଥିଲେ। ତାଙ୍କୁ ପାଖରୁ ଜାଣିବାକୁ ମିଳିଥିଲା ଯେ ଉକ୍ତ ଚମ୍ପାଦେଈଙ୍କ ଠାରେ ପ୍ରତ୍ୟହ ଖେଚୁଡ଼ି ଓ ଡାଲମା ଭୋଗ ଲାଗେ। ଆମିଷ ବିଶେଷତଃ ମାଛ ମଧ୍ୟ ନୈବେଦ୍ୟ ଦିଆଯାଏ। ମାଛର ଝୋଡ଼ା ବେସର ଘାଣ୍ଟ ତରକାରୀ ତନ୍ମଧ୍ୟରୁ ପ୍ରଧାନ। ଦଶହରା

Digitized by srujanika@gmail.com

ଓ କାଳୀପୂଜା ଦିନ ଛାଗ ମଧ୍ୟ ବଳି ଦିଆଯାଇ ତା'ର ମାଂସରୁ ପ୍ରସ୍ତୁତ ତରକାରୀ ନୈବେଦ୍ୟ ଆକାରରେ ଦିଆଯାଏ। କାଳୀପୂଜା ମହୋତ୍ସବ ବ୍ୟତୀତ ରଜପର୍ବ, ପଣା ସଂକ୍ରାନ୍ତି ଓ ହାଣ୍ଡିଭଙ୍ଗା ଯାତ୍ରା ଏଠାରେ ମହା ସମାରୋହରେ ପାଳିତ ହୋଇଥାଏ। କେବଳ ସେତିକି ନୁହେଁ ଚମ୍ପାଦେଈଙ୍କର ମହିମା ବିଷୟରେ ଜିତେନ୍ଦ୍ରୀୟ ବାବୁ କହିଚାଲି ଥାଆନ୍ତି।

ମୁଁ ମଧ୍ୟ ଅତି ଉତ୍କଣ୍ଠିତ ଚିତ୍ତରେ ତାହା ଶୁଣୁଥାଏ। ଯେତେବେଳେ ଗାଁର କୌଣସି ସୁବିଧା ବିଷୟରେ ସେ ଠାକୁରାଣୀଙ୍କୁ ପଚାରିଛନ୍ତି, ତା'ର ଉତ୍ତର ସେ ପାଇଛନ୍ତି। ମୋତେ ସେ ସବୁ ପରୀରାଇଜରେ ମା ବୁଢ଼ୀ ଗପ ବୋଲି ଲାଗୁଥାଏ। ମାତ୍ର ଦେବାଦେବୀ ତାଙ୍କର ଭକ୍ତକୁ ସ୍ୱପ୍ନରେ ଦେଖା ଦେବା ସ୍ଥଳେ ଜିତେନ୍ଦ୍ରୀୟ ବାବୁଙ୍କ କ୍ଷେତ୍ରରେ ତାହା ହୋଇନଥିବ ବା କାହିଁକି? ସେ ଯାହାହେଉ ମନ୍ଦିର ପ୍ରତିଷ୍ଠା ଦିନଠାରୁ ଗାଁରେ ଏକତା ଓ ସଦ୍‌ଭାବ ଫେରି ଆସିଛି, ମାଲି ମକଦ୍ଦମା ଆଉ ଲାଗୁନାହିଁ। ବିପଦ ଆପଦବେଳେ ଠାକୁରାଣୀ ଅଛନ୍ତି ବୋଲି କହି ଜିତେନ୍ଦ୍ରୀୟବାବୁ ଓ ତାଙ୍କ ପିତାଙ୍କର ମନୋବଳ ମଧ୍ୟ ଦୃଢ଼ ରହିଛି।

## ଅନ୍ୟାନ୍ୟ ଶାକ୍ତ ମନ୍ଦିର

ଉପରୋକ୍ତ ଶାକ୍ତ ମନ୍ଦିର ବ୍ୟତୀତ ପାଣିଦୋଳ ଗ୍ରାମରେ ଜାଗେଶ୍ୱରୀ ଦେବୀ ଅଧିଷ୍ଠାତ୍ରୀ ଦେବୀ ଭାବେ ପୂଜିତ ହେଉଛନ୍ତି। ଦାଣ୍ଡମୁକୁନ୍ଦପୁରର ପୂର୍ବରେ ଥିବା ଷଷ୍ଠଶଘିତ ଭୂଆଷୁଣୀ ଠାକୁରାଣୀଙ୍କର ମନ୍ଦିର ଅନ୍ୟ ଏକ ଶାକ୍ତ କୀର୍ତ୍ତି। ସେହି ଦାଣ୍ଡମୁକୁନ୍ଦପୁରର ବାସୁଦେଇପୁରସ୍ଥିତ ଝାଡ଼ମଲ୍ଲୀ ଠାକୁରାଣୀ, ରାଣପୁରର ସାନଚମ୍ପାଦେଈ ଯେକି ଏବେ ଦକ୍ଷିଣକାଳୀ ରୂପେ ପୂଜିତ, ରାମଚଣ୍ଡୀ ଠାକୁରାଣୀଙ୍କର ଦୁଇଟି ମନ୍ଦିର ଓ କ୍ଷେତ୍ରପାଳୀ ଠାକୁରାଣୀଙ୍କର ଗୋଟିଏ ମନ୍ଦିର ପିପିଲି ଭୂଖଣ୍ଡକୁ ଏକ ଶକ୍ତିପୀଠ ରୂପେ ଋଦ୍ଧିମନ୍ତ କରିଛି।

## ମୁସଲମାନଙ୍କର ପ୍ରତ୍ନତାତ୍ତ୍ୱିକ କୀର୍ତ୍ତି

ପିପିଲି ଭୂଖଣ୍ଡ ଯେ କେବଳ ମାତ୍ର ବୌଦ୍ଧ ଓ ହିନ୍ଦୁ ଧର୍ମର ପ୍ରତ୍ନତାତ୍ତ୍ୱିକ ବିଭବ ପାଇଁ ମହିମାନ୍ୱିତ, ତାହା ନୁହେଁ। ଏହି ଅଞ୍ଚଳରେ ମୁସଲମାନମାନଙ୍କର ମଧ୍ୟ କେତେକ ପ୍ରତ୍ନତାତ୍ତ୍ୱିକ କୀର୍ତ୍ତି ଓଡ଼ିଶା ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନ ପାଇଛି। ତନ୍ମଧ୍ୟରୁ ମସଜିଦ, ପୀରଙ୍କର ସମାଧିପୀଠ, କବର ଆଦି ଉଲ୍ଲେଖ ଯୋଗ୍ୟ।

Digitized by srujanika@gmail.com

## ମସଜିଦ୍

ପିପିଲି ବଜାରର ପଶ୍ଚାତଭାଗ ନରିସିଂହପୁର ଗ୍ରାମର ଶେଷଭାଗରେ ଏକ ପୁରାତନ ମସଜିଦ୍ ଅବସ୍ଥିତ। ଏହା ପିପିଲିସାହୀ ମସଜିଦ୍ ନାମରେ କଥିତ। ମସଜିଦ୍ ଗାତ୍ରରେ ଲେଖା ଯାଇଥିବା ଏକ ଅଭିଲେଖରୁ ଜଣାଯାଏ ଏହା ୧୦୮୦ ହିଜରୀ ଅର୍ଥାତ ୧୭୦୨ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା। ସେତେବେଳେ ଔରଙ୍ଗଜେବ ଥିଲେ ମୋଗଲ ସମ୍ରାଟ। ମସଜିଦ୍‌କୁ ଦୂରରେ ତକୀଖାଁ ନିର୍ମାଣ କରିଥିବାର ଜଣାଯାଏ। ୧୯୬୦ ମସିହାରେ ହାଇଦର ମହମ୍ମଦ ସଂପାଦକ ଥିବା ସମୟରେ ଏହାର ଜୀର୍ଣ୍ଣ ସଂସ୍କାର କରାଯାଇଛି। ସେହିପରି ପିପିଲି-ଡେଲାଙ୍ଗ ରାସ୍ତାର ପିପିଲିଠାରୁ ୪ କି.ମି. ଦୂରରେ ଅବସ୍ଥିତ ମୁସଲମାନ ଅଧ୍ୟୁଷିତ ଦାନଗହୀର ଗ୍ରାମରେ ଅନ୍ୟ ଏକ ମସଜିଦ୍ ନିର୍ମିତ ହୋଇଥିବାର ଦେଖାଯାଏ। ଅବଶ୍ୟ ପିପିଲିସାହି ମସଜିଦ୍ ପରି ଏହା ଏତେ ପୁରାତନ ନୁହେଁ। ଏ ମସ୍‌ଜିଦ୍‌ଟି ୧୯୬୭ ମସିହାରେ ନିର୍ମିତ ହୋଇଛି। ସେହି ଗ୍ରାମର ରାମସାହୁ ନାମରେ ଜନୈକ ହିନ୍ଦୁ ଦାନ କରିଥିବା ଅଢ଼େଇ ଏକର ଜମି ଉପରେ ଏହି ମସଜିଦ୍‌ଟି ଦଣ୍ଡାୟମାନ। ଦୈନନ୍ଦିନ ଉପାସନାପାଇଁ ଉକ୍ତ ଗ୍ରାମର ମୁସଲମାନ ଅଧିବାସୀମାନେ ପିପିଲିକୁ ଆସିବା କଷ୍ଟସାଧ୍ୟ ବୋଲି ଚିନ୍ତାକରି ସେମାନେ ମିଳିତ ହୋଇ ଏହି ମସଜିଦ୍‌ଟି ନିର୍ମାଣ କରିଥିଲେ। ଅବଶ୍ୟ ତା' ପୂର୍ବରୁ ସେଠାରେ ଏକ ପୀରଙ୍କର ଆସ୍ଥାନ ଥାଇପାରେ। ଏତଦ୍ ବ୍ୟତୀତ ଇଲେକ୍ଟ୍ରିକ୍ ଅଫିସ ନିକଟସ୍ଥ ହସାନପୁର ଗ୍ରାମରେ ଅନ୍ୟ ଏକ ମସଜିଦ୍ ନିର୍ମାଣ କରାଯାଇଛି। ସେହିପରି ମକରବା ପୁଷ୍କରିଣୀ ନିକଟରେ ଅନ୍ୟ ଏକ ଦରଘା ଦଣ୍ଡାୟମାନ। ତା' ମଧ୍ୟରେ ଏକ ପୀରଙ୍କର ଆସ୍ଥାନ ରହିଛି। ସେ ସମ୍ପର୍କରେ ପୂର୍ବରୁ ସୂଚୀତ ହୋଇଛି।

## ପୀରଙ୍କର ଆସ୍ଥାନ

ମସଜିଦ୍ ବ୍ୟତୀତ ପିପିଲି ଅଞ୍ଚଳରେ କେତୋଟି ପୀରଙ୍କର ସମାଧିପୀଠ ଦେଖିବାକୁ ମିଳେ। ଏହା ସୟଦ ସୁଲତାନଙ୍କର ସମାଧି ବୋଲି ମୋବାରକ ଖାଁ ସାକ୍ଷାତକାରରେ କହିଥିଲେ। ସେହିପରି ଜବାହର ବିଦ୍ୟାପୀଠ ନିକଟରେ ସିଦ୍ଦିକ୍ସ ସାହେବଙ୍କର କବରସ୍ଥାନ, ପୋଷ୍ଟ ଅଫିସ ନିକଟରେ ମସ୍ତମସ୍ତାନଙ୍କ କବର, ବର୍ତ୍ତମାନ ଭବାନୀପୁର କାଜିମହଲା ଅନ୍ତର୍ଗତ ୪ ନମ୍ବର ଓ୍ୱାର୍ଡ଼ର ଇମାମ ଜାମିନୀ, ଲୋଟଣୀ ପୀରଙ୍କର ଆସ୍ଥାନ ଓ ମକରବା-ବଢ଼େଇସାହି ନିକଟରେ ଶେଖ୍ ଫତାଓ୍ୱାଲା ପୀରଙ୍କର ଆସ୍ଥାନ ଆଦି ମୁସଲମାନମାନଙ୍କର ଅନ୍ୟ କେତୋଟି ପ୍ରତ୍ନତାତ୍ତ୍ୱିକ ବିଭବ।

Digitized by srujanika@gmail.com

ପରିଶେଷରେ ପିପିଲିର ପ୍ରତ୍ନତାତ୍ତ୍ୱିକ ବିଭବ ଅଧ୍ୟାୟଟିର ପରିସମାପ୍ତି ପୂର୍ବରୁ ଏଠାରେ ଅବସ୍ଥିତ ଏକ ବହୁ ପୁରାତନ ଗୀର୍ଜା ଉପରେ କିଞ୍ଚିତ ଆଲୋକପାତ କରିବା ଆବଶ୍ୟକ ।

## ଗୀର୍ଜା

କଟକରୁ ପୁରୀକୁ ଯାଇଥିବା ଜଗନ୍ନାଥ ସଡ଼କର ଡାହାଣ ପାର୍ଶ୍ୱରେ ଏକ ଗୀର୍ଜା ଦଣ୍ଡାୟମାନ ହୋଇଥିବାର ଦେଖାଯାଏ । ଗୀର୍ଜାଟି ୧୮୫୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଛି । ଏହା ହୋଇଥିଲା ଖ୍ରୀଷ୍ଟିୟାନ ଧର୍ମର ପ୍ରଧାନ ପ୍ରଚାର ଓ ସୁସମାଚାର କେନ୍ଦ୍ର । ମାତ୍ର ତା ମଧ୍ୟରେ ସ୍ଥାନାଭାବ ହେତୁ ୧୮୭୮ ମସିହାରେ ଅନ୍ୟ ଗୋଟିଏ ଗୀର୍ଜାଘର ନିର୍ମିତ ହୋଇ ତାହା ମାର୍ଚ୍ଚ ୧୯ ତାରିଖ ଦିନ ଉଦ୍‌ଘାଟିତ ହୋଇଥିଲା । ମାତ୍ର ୧୯୩୮ ମସିହାରେ ଏହି ଗୀର୍ଜାଘରର ଜୀର୍ଣ୍ଣ ସଂସ୍କାର ହୋଇଥିଲା । ଗୀର୍ଜାରେ ଥିବା ଘଣ୍ଟାଟି ୧୮୫୦ ମସିହାରେ ମିସ୍ ପାକର ଉଇଲିୟମ ବେଲୀ ଇଂଲଣ୍ଡରୁ ପ୍ରେରଣ କରିଥିଲେ ।

ଏହା ହେଉଛି ପିପିଲି-ଡେଲାଙ୍ଗ ଭୂଖଣ୍ଡରେ ଥିବା ପ୍ରତ୍ନତାତ୍ତ୍ୱିକ ବିଭବ ।

□ □ □

Digitized by srujanika@gmail.com



ଭଦ୍ରେଶ୍ୱର ଦେଉଳୀର ପ୍ରସିଦ୍ଧ ମୋଦେଇ ଠାକୁରାଣୀ।



୧୮୯୦ ମସିହାରେ ସ୍ଥାପିତ ପିପିଲିର ଚର୍ଚ୍ଚ।

Digitized by srujanika@gmail.com



ଦୟାନଦୀ କୂଳରେ ହଳଦିବସନ୍ତ ଗ୍ରାମରେ
ବିଦ୍ୟମାନ ଅର୍ଜୁନେଶ୍ୱର ମହାଦେବଙ୍କ ମନ୍ଦିର।



ବୁଢ଼ାପଡ଼ା ସ୍ଥିତ ସୋମନାଥ ଦେବଙ୍କ ମନ୍ଦିର।



ଭଗ୍ନାବସ୍ଥାରେ ଥିବା ନିଜଗଡ଼ କୁରକୀର ଦୋଳବେଦୀ।

Digitized by srujanika@gmail.com



ଧଉଳି ମୁଣ୍ଡିଆରେ ଖୋଦିତ ହସ୍ତୀ।



ବାଙ୍କେଶ୍ୱରପୁର ଗ୍ରାମରେ ଥିବା ରାମେଶ୍ୱର ମହାଦେବଙ୍କ ମନ୍ଦିର।



ପ୍ରସିଦ୍ଧ କୁଞ୍ଜର ମେଳଣରେ ଅବସ୍ଥାପିତ ବିଭିନ୍ନ ଗ୍ରାମର ଠାକୁର।

Digitized by srujanika@gmail.com



ଚନ୍ଦନ ବେଶରେ ସଜ୍ଜିତ ଦାଣ୍ଡମୁକୁନ୍ଦପୁର ମନ୍ଦିରର ଗୋପୀନାଥ ଦେବ ।



ପିପିଲି ଭବାନୀପୁର ମୌଜାରେ ଅବସ୍ଥିତ ମସ୍‌ଜିଦ ।

Digitized by srujanika@gmail.com

# ନବମ ଅଧ୍ୟାୟ

## ପିପିଲିର କୃତୀ ସନ୍ତାନ

ଓଡ଼ିଶାର ଇତିହାସ ପୃଷ୍ଠାରେ ପିପିଲି ଗୌରବ ଗାରିମାମୟ ସ୍ଥାନ ଅଧିକାର କରି ଯୁଗେ ଯୁଗେ ଓଡ଼ିଆ ଜାତିକୁ ମହିମାନ୍ୱିତ କରି ଆସିଛି। ସେଥିପାଇଁ ଅନ୍ୟ କାରଣ ବ୍ୟତୀତ ତା'ର କେତେ ଜଣ କୃତୀ ସନ୍ତାନଙ୍କର ଉତ୍ସର୍ଗୀକୃତ ଅବଦାନ ବହୁ ପରିମାଣରେ ଦାୟୀ। ଇତିହାସର ଏକ ସଂଜ୍ଞା ଦେବାକୁ ଯାଇ ଲବ୍ଧ ପ୍ରତିଷ୍ଠ ଐତିହାସିକ କାରଲାଇଲ୍ କହିଛନ୍ତି ଇତିହାସ ହେଉଛି ମହାନ ବ୍ୟକ୍ତିଙ୍କର ଜୀବନୀ। ଅବଶ୍ୟ ଏହା ସମ୍ପୂର୍ଣ୍ଣ ଭାବରେ ସତ୍ୟ ନ ହେଲେ ମଧ୍ୟ ଏଥିରେ କିଛି ପରିମାଣରେ ସତ୍ୟତା ରହିଛି, ଏଥିରେ ସନ୍ଦେହ ନାହିଁ। ଅତୀତରେ କେବଳ ମହାନ ବ୍ୟକ୍ତିଙ୍କର କୃତିତ୍ୱରେ ଇତିହାସ ପୃଷ୍ଠା ମୁଖରିତ ହେଉ ଥିଲା। ଜନସାଧାରଣଙ୍କର ସାମାଜିକ ଓ ଅର୍ଥନୈତିକ ଜୀବନୀ ଇତିହାସର ପରିସର ମଧ୍ୟକୁ ଆସୁ ନ ଥିଲା। ମାତ୍ର ଏବେ ଇତିହାସ ପ୍ରଣୟନର ଶୈଳୀରେ ପରିବର୍ତ୍ତନ ଘଟିଛି। ଆଉ ରାଜା ମହାରାଜାଙ୍କର ଜୀବନୀ ଓ କୃତୀତ୍ୱ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉ ନାହିଁ। ସେମାନଙ୍କର ସ୍ଥାନ ଅଧିକାର କରିଛନ୍ତି ଜନସାଧାରଣ। ତଥାପି, କୌଣସି ଏକ ସ୍ଥାନର କୃତୀ ସନ୍ତାନଙ୍କର କୃତିତ୍ୱ ତା'ର ଇତିହାସକୁ ଋଦ୍ଧିମନ୍ତ କରିଥାଏ। ଏହି ସତ୍ୟରୁ ପିପିଲି ବହିର୍ଭୂତ ହେବ ବା କିପରି? ବାସ୍ତବ ପକ୍ଷେ, ପିପିଲିର କୃତୀ ସନ୍ତାନଙ୍କର ମହାନ ଓ ମହନୀୟ କୃତୀତ୍ୱ ବ୍ୟତିରେକ ତା'ର ଇତିହାସ ପୂର୍ଣ୍ଣାଙ୍ଗ ହେବ ନାହିଁ। ତେଣୁ ଏହି ପୁସ୍ତକରେ ଏପରି ଏକ ଅଧ୍ୟାୟର ଅବତାରଣା କରା ଯାଇଛି।



Digitized by srujanika@gmail.com

ଏହି ଅଧ୍ୟାୟରେ ପିପିଲି ଅଞ୍ଚଳର ପରଲୋକ ଗମନ କରିଥିବା ସନ୍ତାନଙ୍କର କୃତୀତ୍ୱ ଉପରେ ଆଲୋକପାତ କରା ଯାଇଛି। ପିପିଲିର ଗୌରବ ଗାରିମା ବଢ଼ାଇବାରେ ନିଃସ୍ୱାର୍ଥପର ଭାବେ କାର୍ଯ୍ୟ କରିଥିବା ଅନେକ କୃତୀ ସନ୍ତାନ ଏବେ ମଧ୍ୟ ଜୀବିତ। କିନ୍ତୁ ସେମାନଙ୍କର ଅବଦାନ ଆଲୋଚନା ପରିସରକୁ ଅଣା ଯାଇନାହିଁ। କାରଣ ସେମାନଙ୍କର କୃତୀତ୍ୱ ଏବେ ମଧ୍ୟ ଅସମାପ୍ତ। ହୁଏତ ଅବଶିଷ୍ଟ ଜୀବନରେ ଆହୁରି କିଛି ସ୍ମରଣୀୟ କାର୍ଯ୍ୟ କରି ସେମାନେ ନିଜର ପରାକାଷ୍ଠା ପ୍ରଦର୍ଶନ କରିବା ସଂଗେ ସଂଗେ ପିପିଲିର ଇତିହାସ ପୃଷ୍ଠାକୁ ମଣ୍ଡନ କରି ପାରନ୍ତି। ତଥାପି ଅଦ୍ୟାବଧି ପିପିଲିର ଇତିହାସର ବିଭବକୁ ପରିପୁଷ୍ଟ କରିଥିବା ଜୀବିତ ବ୍ୟକ୍ତିଙ୍କ ମଧ୍ୟରେ ଅଛନ୍ତି ବର୍ଷୀୟାନ ସମାଜସେବୀ ଡକ୍ଟର ହରିଚରଣ ଗିରି, କାଶୀନାଥ ସାହୁ, ଗଙ୍ଗାଧର ମିଶ୍ର, ବାଉରୀବନ୍ଧୁ ମିଶ୍ର, ଚିନ୍ତାମଣି ମିଶ୍ର, ଚୌଧୁରୀ ନଟବର ସାହୁ, କାଶୀନାଥ ନାୟକ, ହାଇଦର ମହମ୍ମଦ, ବେଣୁଧର ସେନାପତି, ବ୍ରଜବିହାରୀ ମିଶ୍ର, ସତ୍ୟବାଦୀ ଷଡ଼ଙ୍ଗୀ, ଜୟକୃଷ୍ଣ ନାୟକ, ଅର୍ଜୁନ ମହାନ୍ତି, ଜନାର୍ଦ୍ଦନ ପଟ୍ଟନାୟକ, ପୂର୍ଣ୍ଣଚନ୍ଦ୍ର ମିଶ୍ର ଓ ଗୋପାଳ ପଟ୍ଟନାୟକ। ସେମାନଙ୍କ ବ୍ୟତୀତ ବହୁ ଯୁବପ୍ରତିଭାଙ୍କର ଉତ୍ସର୍ଗୀକୃତ ସେବା ଓ ଅବଦାନ ପାଇଁ ପିପିଲି ଆଜି ଗର୍ବିତ। ସେମାନେ ମଧ୍ୟ ପିପିଲିରେ ସ୍ମରଣୀୟ ହୋଇ ରହିବେ। ଉତ୍ତର ଦାୟାଦ ସେମାନଙ୍କର ଇତିହାସ ଲେଖିବେ।

ଏବେ ଆଲୋଚନା କରିବା ପରଲୋକରେ ଥିବା ସେହି ବରେଣ୍ୟ ବ୍ୟକ୍ତିଙ୍କ ବିଷୟରେ। ବର୍ଣ୍ଣାକ୍ଷର କ୍ରମରେ ସେମାନଙ୍କର ନାମ ଦିଆ ଯାଇଛି। ସେମାନଙ୍କର ନାମ ନିର୍ବାଚନ କରିଛନ୍ତି ପିପିଲି ସାଂସ୍କୃତିକ ପରିଷଦର କେତେ ଜଣ ସଦସ୍ୟ। ସେମାନେ ଯୋଗାଇଥିବା ତଥ୍ୟ ଉପରେ ଏହି ଅଧ୍ୟାୟଟି ଆଧାରିତ।

## ଅଗାଧୁ ଘୋଷ

ପିପିଲି ତହସିଲ ଅନ୍ତର୍ଗତ ମଢ଼ୀଆଳି ଗ୍ରାମରେ ଅଗାଧୁ ଘୋଷଙ୍କର ଜନ୍ମ। ପିତାଙ୍କର ନାମ ଶ୍ୟାମ ସୁନ୍ଦର ଘୋଷ। ଅଗାଧୁ ବାବୁ ଥିଲେ ପିପିଲିର ଜଣେ ଖ୍ୟାତନାମା ସରପଞ୍ଚ। ସେ ପିପିଲିର ବହୁ ସାଂସ୍କୃତିକ ଅନୁଷ୍ଠାନ ସହିତ ସମ୍ପୃକ୍ତ ଥିଲେ। ପିପିଲି ସେବା ସମବାୟ ସମିତି ଓ ମିଶନ ଏମ.ଇ. ସ୍କୁଲର ସେ ଥିଲେ ଜଣେ ସକ୍ରିୟ ସଦସ୍ୟ। ପିପିଲିର ବହୁ ଦେବାଳୟର ମୁଖ୍ୟରୂପେ ସେ କାର୍ଯ୍ୟ କରିଥିଲେ। ସରପଞ୍ଚ ଥିବା ସମୟରେ ତାଙ୍କର ଅକାଳ ବିୟୋଗ ହୋଇଥିଲା।

Digitized by srujanika@gmail.com

## ଆଜାଦ ଅଲ୍ଲି ଶାହା

ଆଜାଦ ଅଲ୍ଲି ଶାହା ଥିଲେ ଭବାନୀପୁର ଗ୍ରାମର ଅଧିବାସୀ, ଗୋଆଲିୟା ଶାହାଙ୍କର ଜ୍ୟେଷ୍ଠ ପୁତ୍ର। ତାଙ୍କର ଶିକ୍ଷାଗତ ଯୋଗ୍ୟତା ସେପରି କିଛି ନ ଥିଲା। ତଥାପି ସେ ଶିକ୍ଷାର ବିକାଶ ପାଇଁ ଯତ୍ନବାନ ଥିଲେ। ପିପିଲି ମିଶନ ସ୍କୁଲ ଓ ଜବାହର ବିଦ୍ୟାପୀଠ ପରିଚାଳନା କମିଟିର ସେ ଥିଲେ ଜଣେ ସକ୍ରିୟ ସଭ୍ୟ। ତାଙ୍କରି ଘରେ ପ୍ରଥମେ ଜବାହର ବିଦ୍ୟାପୀଠର ଶୁଭାରମ୍ଭ ହୋଇଥିଲା। ମୁସଲମାନ ହୋଇ ମଧ୍ୟ ଗୀତା, ବେଦ ସମେତ ବହୁ ହିନ୍ଦୁ ଶାସ୍ତ୍ର ଅଧ୍ୟୟନ କରି ସେଥିରେ ଅନ୍ତର୍ନିହିତ ତଥ୍ୟ ନିଜ ଜୀବନରେ ପ୍ରକଟିତ କରାଇଥିଲେ। ହିନ୍ଦୁ ଧର୍ମଶାସ୍ତ୍ରର ନୀତି ବାଣୀ ବ୍ୟାଖ୍ୟା କରି ସେ ବହୁ ଗ୍ରାମ୍ୟ ବିବାଦ ଓ ବ୍ୟକ୍ତିଗତ କନ୍ଦଳକୁ ସମାଧାନ କରୁଥିଲେ। ସାମ୍ପ୍ରଦାୟିକ ସଦ୍‌ଭାବର ସେ ଥିଲେ ଜଣେ ପରମ ପ୍ରବକ୍ତା। ତେଣୁ ତାଙ୍କୁ ପିପିଲି ଅଧିବାସୀ ଶ୍ରଦ୍ଧା ଓ ଭକ୍ତିରେ 'ଅଜାତି ମହାଜନ' ଆଖ୍ୟା ଦେଇଥିଲେ।

## କୃପାସିନ୍ଧୁ ମିଶ୍ର

ପିପିଲି ଅନ୍ତର୍ଗତ ଭୂଇଁଗୁଣ ଗ୍ରାମରେ ୧୮୮୨ ମସିହାରେ କୃପାସିନ୍ଧୁ ମିଶ୍ରଙ୍କର ଜନ୍ମ। ପିତାଙ୍କ ନାମ ଜଗବନ୍ଧୁ ମିଶ୍ର ଓ ମାତାଙ୍କ ନାମ ମାଗୁଣୀ ଦିବ୍ୟା। କୃପାସିନ୍ଧୁଙ୍କ ଶିକ୍ଷାଗତ ଯୋଗ୍ୟତା ଥିଲା ମାତ୍ର ଭର୍ଣ୍ଣାକୁଲାର ଏମ.ଇ. ପାଶ। ତଥାପି ନିଜର ଆଗ୍ରହ ଓ ସାଧନା ଦ୍ୱାରା ସେ ୬ଟି ଭାରତୀୟ ଭାଷା ଶିକ୍ଷା କରିଥିଲେ। ନିଜ ଉଦ୍ୟମରେ ସେ ଦନାପଡ଼ାଠାରେ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରିଥିଲେ। ସେ ଜଣେ ପରୋପକାରୀ ଓ ସମାଜସେବୀ ଭାବେ ପ୍ରତିଷ୍ଠା ଅର୍ଜନ କରିଥିଲେ। ସେ କବିରାଜୀ ବହି ପଢ଼ି ଗରିବ ଓ ନିଃସ୍ୱ ଲୋକଙ୍କୁ ଔଷଧ ବିତରଣ କରୁଥିବାର ଦେଖାଯାଇଥିଲା। ଏପରିକି ସେ ନିଜ ହାତରୁ ପଇସାଖର୍ଚ୍ଚ କରି ସେମାନଙ୍କୁ ଚିକିତ୍ସା ପ୍ରଦାନ କରୁଥିଲେ। ଫଳରେ ଜୀବନର ଶେଷ ପର୍ଯ୍ୟାୟରେ ସେ ଋଣ ଗ୍ରସ୍ତ ହୋଇ ପଡ଼ିଥିଲେ। ସେ ମଧ୍ୟ ଥିଲେ ଜଣେ ସାମ୍ବାଦିକ। ବହୁ ଦିନ ଧରି 'ସମାଜ' ସମ୍ବାଦପତ୍ରର ସେ ଥିଲେ ଅବୈତନିକ ପ୍ରତିନିଧି। କେବଳ ସେତିକି ନୁହେଁ, ସେ ଥିଲେ ଜଣେ ଗାନ୍ଧିବାଦୀ। ଗାନ୍ଧିଜୀଙ୍କର ପଦଯାତ୍ରା ଓ ବେରୋବୋଇ ଆଶ୍ରମର ଗାନ୍ଧି ସେବାସଂଘ ବୈଠକରେ ଯୋଗଦାନ ତାଙ୍କ ଜୀବନର ଅନ୍ୟ ଦୁଇଟି ସ୍ମରଣୀୟ ଘଟଣା। ପିପିଲିର ଜଣେ ଅଣ ବନ୍ଦୀ ସ୍ୱାଧୀନତା ସଂଗ୍ରାମୀ ଭାବେ ସେ ସୁପରିଚିତ। ଏହିପରି ଏକ ଘଟଣା

Digitized by srujanika@gmail.com

ବହୁଳ ଜୀବନ ଅତିବାହିତ କରି ସେ ୮୨ ବର୍ଷ ବୟସରେ ୧୯୬୪ ମସିହା ଜାନୁୟାରୀ ୧୩ ତାରିଖ ଦିନ ଇହଲୀଳା ସମ୍ବରଣ କରିଥିଲେ।

## ଚୌଧୁରୀ ନରହରି ସାହୁ

ଚୌଧୁରୀ ନରହରି ସାହୁଙ୍କର ଜନ୍ମ ଦାଣ୍ଡମୁକୁନ୍ଦପୁର ଗ୍ରାମରେ। ସେ ଥିଲେ ଚୌଧୁରୀ ଗୋବିନ୍ଦଚନ୍ଦ୍ର ସାହୁଙ୍କର ଜ୍ୟେଷ୍ଠ ପୁତ୍ର। ଦାଣ୍ଡମୁକୁନ୍ଦପୁର ଏମ.ଇ. ସ୍କୁଲରୁ ପାଶ୍ କରିବା ପରେ ନରହରିଙ୍କ ପାଠପଢ଼ାରେ ଡ଼ୋରି ବନ୍ଧା ହୋଇଥିଲା। ତଥାପି ଜଣେ ଶିକ୍ଷାନୁରାଗୀ ବ୍ୟକ୍ତି ହୋଇ ଥିବାରୁ ଦାଣ୍ଡମୁକୁନ୍ଦପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠାରେ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ। ସେ ପିପିଲିରେ କେତେକ ଗଠନ ଓ ସଂସ୍କାରମୂଳକ କାର୍ଯ୍ୟ କରି ନିଜର ପ୍ରତିଷ୍ଠା ଅର୍ଜନ କରିଥିଲେ। ତାଙ୍କରି ପ୍ରଚେଷ୍ଟାରେ ଦାଣ୍ଡମୁକୁନ୍ଦପୁରସ୍ଥିତ ଗୋପାଳଜୀଉ ମନ୍ଦିର ଓ ବାଲୁକେଶ୍ୱର ମନ୍ଦିରରେ ବହୁବିଧ ଉନ୍ନତି ହୋଇଥିଲା। ନିଜର ଜେଜେମା ସୁଲଭ ଦେବୀଙ୍କର କାମନା ଅନୁସାରେ ସେ ଗୋପାଳଜୀଉ ମନ୍ଦିରରେ ଗୋଟିଏ ଅରୁଣ ସ୍ତମ୍ଭ ମଧ୍ୟ ନିର୍ମାଣ କରିଥିଲେ। ଦାଣ୍ଡମୁକୁନ୍ଦପୁରସ୍ଥିତ ବଡ଼ପୋଖରୀର ଦିର୍ଘିକ ଚୂଠର ବଡ଼ ପାହାଚ୍ ତାଙ୍କର ଅନ୍ୟ ଏକ କୀର୍ତ୍ତି। ଏହିପରି ଏକ ଦୁର୍ଲ୍ଲଭ ଜୀବନ ଯାପନ କରିବା ପରେ ୧୯୭୯ ମସିହା ଡ଼ିସେମ୍ବର ୧ ତାରିଖ ମାର୍ଗଶୀର ମାସ ଶୁକ୍ଳ ପକ୍ଷ ତ୍ରୟୋଦଶୀ ତିଥିରେ ତାଙ୍କର ଜୀବନ ଦୀପ ନିର୍ବାପିତ ହୋଇଥିଲା। ଚୌଧୁରୀ ନରହରିଙ୍କ ପୁତ୍ର ଚୌଧୁରୀ ନଟବର ସାହୁ ଉଚ୍ଚ ଶିକ୍ଷା ଲାଭ କରି ମଧ୍ୟ ପିତାଙ୍କ ପଦାଙ୍କ ଅନୁସରଣ କରି ସମାଜସେବା, ଧର୍ମାନୁଷ୍ଠାନର ଉନ୍ନତି ଦିଗରେ ବିଶେଷ ଆଗ୍ରହ ପ୍ରକାଶ କରୁଛନ୍ତି।

## ଜଗନ୍ନାଥ ମହାନ୍ତି

୧୯୦୭ ମସିହାରେ ଯଶୁଆପୁର ଗ୍ରାମରେ ଜଗନ୍ନାଥ ମହାନ୍ତିଙ୍କର ଜନ୍ମ। ପିତାଙ୍କ ନାମ ଚୈତନ୍ୟ ମହାନ୍ତି। ବହୁ ଜନ ମଙ୍ଗଳ କାର୍ଯ୍ୟ ପାଇଁ ଜଗନ୍ନାଥବାବୁ ପିପିଲି ଇତିହାସରେ ସ୍ମରଣୀୟ ହୋଇ ରହିଛନ୍ତି। ସମଭାବାପନ୍ନ ଅନ୍ୟ ଚାରି ଜଣ ବ୍ୟକ୍ତିଙ୍କ ସହିତ ହାତ ମିଳାଇ ସେ ବହୁ କାର୍ଯ୍ୟ ସମ୍ପାଦନ କରି ପାରିଥିଲେ। ସେମାନେ ଥିଲେ ଗଣେଶ୍ୱର ମିଶ୍ର, ବୈରାଗୀ ଚରଣ ପାତ୍ର, ଲୋକନାଥ ତ୍ରିପାଠୀ ଓ ବାଉରୀବନ୍ଧୁ ମିଶ୍ର। ସେମାନେ ପିପିଲି ଅଞ୍ଚଳର ପଞ୍ଚସଖା ନାମରେ ଖ୍ୟାତ ହୋଇଥିଲେ। ସେମାନେ ଅର୍ଥସର୍ବସ୍ୱ ବ୍ୟକ୍ତି ନ ଥିଲେ। ନିଜ ନିଜର ସମସ୍ତ

Digitized by srujanika@gmail.com

ଆୟ ସେମାନେ ଲୋକହିତକର କାର୍ଯ୍ୟରେ ବିନିଯୋଗ କରୁଥିଲେ। ତନ୍ମଧ୍ୟରୁ ଜଗନ୍ନାଥ ମହାନ୍ତି ଥିଲେ ଅଧିକ ସକ୍ରିୟ ଓ ନିଷ୍ଠାପର। ସୁବଳପୁରର ଜମିଦାର ମୋତିଲାଲ ପଣ୍ଡିତଙ୍କ ସହ ମିଶି ସେ ୧୯୫୦ ମସିହାରେ ପ୍ରସିଦ୍ଧ ସାତଶଙ୍ଖ ହାଟ ପ୍ରତିଷ୍ଠା କରିଥିଲେ। ତାଙ୍କରି ଉଦ୍ୟମକ୍ରମେ ପିପିଲି ଅଞ୍ଚଳରେ ପଶୁ ଡ଼ାକ୍ତରଖାନା, ଉତ୍ତରାୟଣୀ ବିଦ୍ୟାପୀଠ, ଉତ୍ତରାୟଣୀ ସ୍ୱାସ୍ଥ୍ୟ ସହାୟକ କେନ୍ଦ୍ର ଓ ଶୀତଳ ଭଣ୍ଡାର ସ୍ଥାପିତ ହୋଇପାରିଛି। ଅଧୁନା ବହୁ ପ୍ରଶଂସିତ ଓଡ଼ିଶା ପ୍ରସିଦ୍ଧ ଉତ୍ତରାୟଣୀ ଅପେରାର ସ୍ରଷ୍ଟା ହେଉଛନ୍ତି ଜଗନ୍ନାଥ ମହାନ୍ତି। ଏହିପରି ସମାଜସେବା କାର୍ଯ୍ୟରେ ନିଜ ଜୀବନର ଅଧିକ ସମୟ ଅତିବାହିତ କରି ୧୯୯୦ ମସିହା ଜୁନ ୨୭ ତାରିଖ ଦିନ ନିଜର କର୍ମସ୍ଥଳୀ ସାତଶଙ୍ଖରେ ଚିର ଦିନ ପାଇଁ ଆଖି ବୁଜିଥିଲେ।

## ଜଗବନ୍ଧୁ ଦାସ

ପିପିଲି ଅଞ୍ଚଳର ଅନ୍ୟତମ କୃତୀ ସନ୍ତାନ ଜଗବନ୍ଧୁ ଦାସ ଥିଲେ ରାୟ ସାହେବ ଜାନକୀ ବଲ୍ଲଭ ଦାସଙ୍କର ପୁତ୍ର। ନୂଆଶାସନସ୍ଥିତ ଦକ୍ଷିଣ ସାହିରେ ତାଙ୍କର ଜନ୍ମ। ଶିକ୍ଷା ଲାଭ ପରେ ବହୁ ଗଠନ ମୂଳକ କାର୍ଯ୍ୟରେ ସେ ନିଜକୁ ନିୟୋଜିତ କରିଥିଲେ। ଜଣେ ନିର୍ଦ୍ଦଳୀୟ ବ୍ୟକ୍ତି ହିସାବରେ ରାଜନୈତିକ ଜୀବନ ଆରମ୍ଭ କରିଥିଲେ ସୁଦ୍ଧା ତାଙ୍କର କଂଗ୍ରେସ ଦଳ ପ୍ରତି ସମର୍ଥନ ଥିଲା। ସେ ନୂଆଶାସନ ପଞ୍ଚାୟତର ପ୍ରଥମ ସରପଞ୍ଚ ଓ ପିପିଲି ପଞ୍ଚାୟତ ସମିତିର ପ୍ରଥମ ଅଧକ୍ଷ ଥିଲେ। ଏହି ପଦବୀରେ ରହିଥିବା ସମୟରେ ସେ ତେଇଶ୍ ମାଇଲ ଛକଠାରୁ ନୂଆଶାସନ ଦକ୍ଷିଣ ସାହି ଓ ଉତ୍ତର ସାହି ପର୍ଯ୍ୟନ୍ତ ଏକ ଆର୍.ଇ.ଓ. ରାସ୍ତା ନିର୍ମାଣ କରାଇଥିଲେ।

## ଦାମୋଦର ମହାପାତ୍ର

୧୯୧୫ ମସିହା ନଭେମ୍ବର ପହିଲା ଦିନ ପିପିଲିଠାରେ ଦାମୋଦର ମହାପାତ୍ରଙ୍କ ଜନ୍ମ। ତାଙ୍କ ପିତାଙ୍କ ନାମ ରଘୁନାଥ ମହାପାତ୍ର ଓ ମାତାଙ୍କ ନାମ ପଦ୍ମା ଦେବୀ। ମାଇନର ପାଶ୍ ଥିଲା ଦାମୋଦରଙ୍କର ଶିକ୍ଷାଗତ ଯୋଗ୍ୟତା। ମାତ୍ର ସେ ଥିଲେ ଜଣେ ଶିକ୍ଷା ପ୍ରେମୀ। ପିପିଲି ଜବାହର ବିଦ୍ୟାପୀଠ ହେଉଛି ତାଙ୍କର ଏକ ମାନସ ପୁତ୍ର। ୧୯୭୨ରୁ ୧୯୭୮ ପର୍ଯ୍ୟନ୍ତ ସେ ଏହାର ସମ୍ପାଦକ ଦାୟିତ୍ୱରେ ରହିବା ସଙ୍ଗେ ସଙ୍ଗେ ୧୯୫୮ରୁ ମୃତ୍ୟୁ ପର୍ଯ୍ୟନ୍ତ ଏହି ବିଦ୍ୟାଳୟ ପରିଚାଳନା କମିଟିର ଜଣେ ସକ୍ରିୟ ସଦସ୍ୟ ରୂପେ କାର୍ଯ୍ୟ କରିଥିଲେ। ସେ ଥିଲେ ଜଣେ ନିଷ୍ଠାପର ଓ ନିଃସ୍ୱାର୍ଥପର ଜନସେବୀ। ତାଙ୍କରି ଉଦ୍ୟମରେ ପିପିଲିରେ

Digitized by srujanika@gmail.com

କେତେକ ସାଂସ୍କୃତିକ ଓ ଆଧ୍ୟାତ୍ମିକ ଅନୁଷ୍ଠାନ ଗଢ଼ି ଉଠିଛି। ପିପିଲି ବଜାରରେ ଥିବା ଦେବୀପୀଠରର ସଭାପତି ଭାବେ ସେ ବହୁ ଦିନ କାର୍ଯ୍ୟ କରିଥିଲେ। ତାଙ୍କରି ପ୍ରଚେଷ୍ଟାରେ ପ୍ରତି ବର୍ଷ ଦୁର୍ଗାପୂଜା ସହ କାଳୀ ପୂଜା ଓ ଅଷ୍ଟପ୍ରହରୀ ନାମଯଜ୍ଞ ସଂପାଦିତ ହୋଇଆସୁଛି। ୧୯୬୩ ମସିହାରେ ସେ ସ୍ଥାନୀୟ ସ୍ୱର୍ଣ୍ଣକାର ସଂଘର ସଭାପତି ପଦରେ ଅଧିଷ୍ଠିତ ହୋଇଥିଲେ। ଜଣେ ଧୈର୍ଯ୍ୟବାନ, ନ୍ୟାୟପରାୟଣ ଓ ପରୋପକାରୀ ବ୍ୟକ୍ତି ଭାବରେ ପିପିଲିର ଘରେ ଘରେ ସେ ସୁପରିଚିତ। ୧୯୯୧ ମସିହା ମାର୍ଚ୍ଚ ୬ ତାରିଖ ଦିନ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ତାଙ୍କର ଆକସ୍ମିକ ବିୟୋଗ ଘଟିଥିଲା।

## ଦୀନବନ୍ଧୁ ମହାପାତ୍ର

ନୂଆଶାସନ ଉତ୍ତର ସାହି ଗ୍ରାମର ଗଙ୍ଗାଧର ମହାପାତ୍ରଙ୍କର ସୁଯୋଗ୍ୟ ସନ୍ତାନ ଥିଲେ ଦୀନବନ୍ଧୁ ମହାପାତ୍ର। ମାତ୍ର ପାଞ୍ଚ ବର୍ଷ ବୟସରେ ତାଙ୍କର ପିତୃ ବିୟୋଗ ଘଟେ। ତେଣୁ ସେ ନିଜର ପିତାମହ ଜଗନ୍ନାଥ ମହାପାତ୍ରଙ୍କ ଦ୍ୱାରା ଲାଳିତ ପାଳିତ ହୁଅନ୍ତି। ବଣ ମାଳତୀ ପରି ବଣରେ ଜନ୍ମ ହୋଇ ବଣରେ ମଉଳି ଯିବା ପାଇଁ ଦୀନବନ୍ଧୁ ଜନ୍ମ ହୋଇ ନଥିଲେ। ବରଂ ପିପିଲିର ମୁଖ ଉଜ୍ଜ୍ୱଳ କରିବା ପାଇଁ ତାଙ୍କର ଜନ୍ମ ହୋଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ। ତେଣୁ ବହୁ ସଂଘାତ ଓ ସଂଘର୍ଷମୟ ପରିବେଶ ମଧ୍ୟରେ ପଡ଼ି ମଧ୍ୟ ସେ ଧୈର୍ଯ୍ୟହୀନ ହୋଇ ପଡ଼ି ନଥିଲେ। ବାଲ୍ୟାବସ୍ଥାରୁ ସେ ସଙ୍ଗୀତ ବିଦ୍ୟା ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ। ମାତ୍ର ୮ ବର୍ଷ ବୟସରେ ସେ ସଙ୍ଗୀତ ପ୍ରତି ଏତେ ଆକୃଷ୍ଟ ହୋଇ ଯାଇଥିଲେ ଯେ, ଅର୍ଥାଭାବରୁ ଏକତାରା ବାଦ୍ୟ ଯନ୍ତ୍ରଟିଏ ମଧ୍ୟ କିଣି ନପାରି ନଡ଼ିଆ ସଢ଼େଇରେ ସେ ଏକତାରା ତିଆରି କରି ସଙ୍ଗୀତ ଗାନ କରୁଥିବାର ଦେଖା ଯାଇଥିଲା। ତାଙ୍କର ସଙ୍ଗୀତ ସାଧନା କ୍ରମେ କ୍ରମେ ପ୍ରସାର ଲାଭ କରିବା ଫଳରେ ଭିଙ୍ଗାରପୁର ଜମିଦାର ଚୌଧୁରୀ କୁଳମଣି ଦାସଙ୍କର ସଙ୍ଗୀତ ମେଳରେ ଲେଖକ ଓ ଗାୟକ ଭାବେ କାର୍ଯ୍ୟ କରିବାକୁ ତାଙ୍କୁ ଆମନ୍ତ୍ରଣ ଆସିଥିଲା। ସେତେବେଳକୁ ତାଙ୍କୁ ୧୮ ବର୍ଷ ହୋଇଥାଏ। ସେହି ବର୍ଷ ସେ ନିଜ ଘର ସମ୍ମୁଖରେ ଥିବା ହୃଷୀକେଶ ଷଡ଼ଙ୍ଗୀଙ୍କ ଝିଅ ପୁନାଙ୍କୁ ବିବାହ କରନ୍ତି। ତା'ପରେ ତାଙ୍କର ଆରମ୍ଭ ହୋଇଥିଲା ଏକ ଘଟଣା ବହୁଳ ଜୀବନ। ସମଗ୍ର ପୁରୀ ଜିଲ୍ଲାରେ ଜଣେ ବିଶିଷ୍ଟ ସଙ୍ଗୀତଜ୍ଞ ରୂପେ ତାଙ୍କର ଖ୍ୟାତି ବ୍ୟାପି ଯାଇଥିଲା। ସେଥିପାଇଁ ସେ ଜଣେ ସଙ୍ଗୀତକାର ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ। ୧୯୦୨ ମସିହାରେ ତାଙ୍କର ପ୍ରଥମ ସଙ୍ଗୀତ ପୁସ୍ତକ

Digitized by srujanika@gmail.com

'ସଙ୍ଗୀତ ସାଗର' ପ୍ରକାଶ ପାଏ। ପରେ ପରେ ସେ 'ସଙ୍ଗୀତ ରସାବଳୀ' ଓ 'ଭକ୍ତ ଭଜନ ଚଉତିଶା' ନାମକ ଦୁଇଟି ଭଜନ ପୁସ୍ତକ ରଚନା କରି ଲୋକପ୍ରିୟତା ଅର୍ଜନ କରିଥିଲେ। ପୁରୀ ରାଜାଙ୍କ ସମେତ ବହୁ ଗଡ଼ଜାତ ରାଜାଙ୍କର ଦୃଷ୍ଟି ଆକର୍ଷଣ କରି ସେ ନିଜର ସଙ୍ଗୀତ ସାଧନା ପାଇଁ ପୁରସ୍କୃତ ହୋଇଥିଲେ। ତାଙ୍କର ସଙ୍ଗୀତ ପ୍ରତିଭାରେ ପ୍ରୀତ ହୋଇ ଆଠଗଡ଼ ରାଜା ତାଙ୍କୁ ଏକ ବେହେଲା ଉପହାର ଦେଇଥିଲେ। ଅଦ୍ୟାବଧି ତାଙ୍କଦ୍ୱାରା ରଚିତ ଭଜନଗୁଡ଼ିକ ପାଲା ଗାୟକମାନେ ଗାନ କରନ୍ତି। ଏହିପରି ଏକ ଛନ୍ଦମୟ ଓ ରସଯୁକ୍ତ ଜୀବନ ଯାପନ କରି ୧୯୨୬ ମସିହା ଶ୍ରାବଣ ତୃତୀୟା ତିଥିରେ ସେ ଇହଲୀଳା ସମ୍ବରଣ କରିଥିଲେ।

## କ୍ୟାପ୍ଟେନ୍ (ଡ଼କ୍ଟର) ଦ୍ୟୁତିକୃଷ୍ଣ ମହାନ୍ତି (ଆର୍.ଆଇ.ଏ.ଏମ୍.ସି.)

ଇଂରେଜ ରାଜତ୍ୱ ସମୟରେ ଭାରତୀୟ ସେନାବାହିନୀରେ ଯୋଗ ଦେଇଥିବା ପିପିଲି ଅଞ୍ଚଳର ପ୍ରଥମ ଡ଼ାକ୍ତର ହେଉଛନ୍ତି କ୍ୟାପ୍ଟେନ୍ ଦ୍ୟୁତିକୃଷ୍ଣ ମହାନ୍ତି। ୧୯୧୭ ମସିହା ଅକ୍ଟୋବର ମାସ ୨୩ ତାରିଖ ଦିନ ଦାଣ୍ଡମୁକୁନ୍ଦପୁର ପଞ୍ଚାୟତ ଅନ୍ତର୍ଗତ କୋଠବାଡ଼ ଗ୍ରାମରେ ତାଙ୍କର ଜନ୍ମ। ପିତାଙ୍କ ନାମ ଜୟକୃଷ୍ଣ ମହାନ୍ତି। ସେ ଥିଲେ ପିପିଲି ଅଞ୍ଚଳର ଜଣେ ପ୍ରତିଷ୍ଠିତ ଜମିଦାର। ତେଣୁ ଶିକ୍ଷାର ଗୁରୁତ୍ୱ ଉପଲବ୍ଧି କରି ସେ ପୁତ୍ର ଦ୍ୟୁତିକୃଷ୍ଣଙ୍କର ଉଚ୍ଚ ଶିକ୍ଷାପାଇଁ ସମସ୍ତ ବ୍ୟବସ୍ଥା କରିଥିଲେ। ସେ ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରି ଜଣେ କୃତୀ ଛାତ୍ର ଭାବେ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲେ। ଦ୍ୟୁତିକୃଷ୍ଣଙ୍କ ହୃଦୟରେ ଜିଲ୍ଲା ସ୍କୁଲର ତତ୍‌କାଳୀନ ପ୍ରଧାନ ଶିକ୍ଷକ ସ୍ୱର୍ଗତ ହରିହର ମିଶ୍ର ଭାରତୀୟ ସେନାବାହିନୀରେ ଯୋଗ ଦେବାପାଇଁ ଆଗ୍ରହ ସୃଷ୍ଟି କରାଇଥିଲେ। ପୁରୀ ଜିଲ୍ଲା ସ୍କୁଲରୁ ଶିକ୍ଷା ଶେଷ କରି ଦ୍ୟୁତିକୃଷ୍ଣ ବାବୁ କଟକ ମେଡ଼ିକାଲ ସ୍କୁଲରେ ଅଧ୍ୟୟନ କରିଥିଲେ। ସେଠାରୁ ଶିକ୍ଷା ସମାପ୍ତ ହୋଇଛି କି ନାହିଁ ତାଙ୍କୁ ମଞ୍ଜୁଷା ରାଜା ଘରୋଇ ଡ଼ାକ୍ତର ଭାବେ ନିଯୁକ୍ତ କରିଥିଲେ। ସେଠାରେ ସେ ଦୁଇ ବର୍ଷ କାର୍ଯ୍ୟ କରିଥିଲେ। ତାଙ୍କ କାର୍ଯ୍ୟରେ ସନ୍ତୋଷ ପ୍ରକାଶ କରି ରାଜା ତାଙ୍କୁ ଗୋଟିଏ ତରବାରୀ ଉପହାର ଦେଇଥିବାର ଜଣାଯାଏ। ୧୯୪୨ ମସିହାରେ ଦ୍ୟୁତିକୃଷ୍ଣ ବାବୁ ଯୋଗ ଦେଇଥିଲେ ରୟାଲ୍ ଇଣ୍ଡିଆନ୍ ଆର୍ମି ମେଡ଼ିକାଲ କୋର୍‌ରେ। ଟ୍ରେନିଂ ଶେଷ ପରେ ସେ ଜାମସେଦପୁରର ଗୋଟିଏ ଛୋଟ ବିମାନ ବନ୍ଦରରେ ରିଜର୍ଭ ମେଡ଼ିକାଲ ଅଫିସର ଭାବେ କାର୍ଯ୍ୟ କରିଥିଲେ। ସେନାବାହିନୀରେ କାର୍ଯ୍ୟ କରୁଥିବା ସମୟରେ ତାଙ୍କ ପିତାଙ୍କର ପରଲୋକ ଘଟିଥିଲା। ପରିସ୍ଥିତିର ଚାପରେ ପଡ଼ି ସେ ସେନାବାହିନୀ କାର୍ଯ୍ୟରୁ ଇସ୍ତଫା ପ୍ରଦାନ କରିଥିଲେ। ତା'ପରେ ଦ୍ୟୁତିକୃଷ୍ଣ ବାବୁ ରାଜ୍ୟ ସରକାରଙ୍କ ଅଧୀନରେ

Digitized by srujanika@gmail.com

ଜଣେ ଡ଼ାକ୍ତର ଭାବେ ଯୋଗ ଦେଇଥିଲେ। ଦୀର୍ଘ ୧୪ ବର୍ଷ କାର୍ଯ୍ୟ କରିବା ପରେ ଅବସର ଗ୍ରହଣ କରି ସେ ଦାଣ୍ଡମୁକୁନ୍ଦପୁରଠାରେ ଘରୋଇ ଚିକିତ୍ସା ଆରମ୍ଭ କରିଥିଲେ। ସେ ଥିଲେ ଗରିବ ଲୋକମାନଙ୍କ ପାଇଁ ଜଣେ ପରମ ବନ୍ଧୁ। ସେଥିପାଇଁ ସେ ଅତ୍ୟନ୍ତ ଲୋକପ୍ରିୟ ହୋଇ ପାରିଥିଲେ। ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଲୋକପ୍ରିୟତା ଅକ୍ଷୁଣ୍ଣ ରହିଥିଲା। ସରକାରୀ ଚାକିରୀରୁ ଅବସର ଗ୍ରହଣ କରିବା ପରେ ଦୁଇ ଥର ପିପିଲି ନିର୍ବାଚନ ମଣ୍ଡଳୀରୁ ବିଧାନସଭା ପାଇଁ କମ୍ୟୁନିଷ୍ଟ ଦଳରୁ ପ୍ରାର୍ଥୀ ହୋଇଥିଲେ। ପିପିଲିରେ ସାଂସ୍କୃତିକ ବିପ୍ଳବ ଆଣିବା ଦିଗରେ ତାଙ୍କର ଅବଦାନ ସ୍ୱୀକାର୍ଯ୍ୟ। ଜଣେ କୁଶଳୀ ମଞ୍ଚ ଅଭିନେତା ଭାବେ ସେ ସୁନାମ ଅର୍ଜନ କରିଥିଲେ। ତାଙ୍କର ମଞ୍ଚ ଅଭିନୟ ଏବେ ମଧ୍ୟ ଜନମାନସରେ ଉଜ୍ଜୀବିତ ହୋଇ ରହିଛି। ଏହିପରି ଏକ ଘଟଣା ବହୁଳ ଜୀବନ ଯାପନ କରି କ୍ୟାପ୍ଟେନ୍ ଦ୍ୟୁତିକୃଷ୍ଣ ମହାନ୍ତି ୧୯୯୩ ମସିହା ମେ' ମାସ ୩୧ ତାରିଖ ଦିନ ମରଶରୀର ତ୍ୟାଗ କରିଥିଲେ।

## ନଗେନ୍ଦ୍ର କୁମାର ମହାନ୍ତି

୧୯୦୬ ମସିହା ଅକ୍ଟୋବର ମାସ ୨୭ ତାରିଖ ଦିନ ପିପିଲିରେ ନଗେନ୍ଦ୍ର କୁମାର ମହାନ୍ତିଙ୍କର ଜନ୍ମ। ପିପିଲିରେ ଜନୈକ ଆଦି ଖ୍ରୀଷ୍ଟ ଧର୍ମାବଲମ୍ବୀ ପ୍ରସନ୍ନ କୁମାର ମହାନ୍ତିଙ୍କର ସେ ଥିଲେ ଜଣେ ଯୋଗ୍ୟ ସନ୍ତାନ। ନଗେନ୍ଦ୍ର କୁମାର ଅଟୋମୋବାଇଲ ଇଞ୍ଜିନିୟରିଂ ପାଶ୍ କରି ସରକାରଙ୍କର ଏକ ପଦସ୍ଥ ଚାକିରୀରେ ନିଯୁକ୍ତି ପାଇଥିଲେ। ମାତ୍ର ତାଙ୍କ ଜୀବନ ଥିଲା ଭିନ୍ନ ଉପାଦାନରେ ଗଢ଼ା। ତେଣୁ ସେ ଉକ୍ତ ଚାକିରୀରେ ବେଶୀ ଦିନ ରହି ପାରି ନଥିଲେ। ସେଥିରୁ ସେ ଇସ୍ତଫା ପ୍ରଦାନ କରି ନିଜକୁ ସମାଜସେବାରେ ଉତ୍ସର୍ଗ କରିଥିଲେ। ଏହା ସେତେବେଳେ ତାଙ୍କର କିଛି କମ୍ ତ୍ୟାଗର ନିଦର୍ଶନ ନଥିଲା। ପିପିଲିରେ ଶିକ୍ଷାର ପ୍ରସାର ପାଇଁ ସେ ହେଲେ ଆଜୀବନ ବ୍ରତୀ। ତାଙ୍କରି ଉଦ୍ୟମ ଓ ବାପ୍‌ଟିଷ୍ଟ ମିଶନାରୀଙ୍କ ସହାୟତାରେ ୧୯୪୪ ମସିହାରେ ପିପିଲିରେ ପ୍ରତିଷ୍ଠିତ ହେଲା ମିଶନ ମଧ୍ୟ ଇଂରାଜୀ ବିଦ୍ୟାଳୟ। ଏହି ବିଦ୍ୟାଳୟର ପରିଚାଳନା କମିଟିର ସଂପାଦକ ଭାବେ ସେ ୧୯୪୪ ରୁ ୧୯୫୩ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ। ପିପିଲି ଜବାହର ବିଦ୍ୟାପୀଠ ତାଙ୍କର ଅନ୍ୟତମ ଅକ୍ଷୟ କୀର୍ତ୍ତି। ସେ ମଧ୍ୟ ଉକ୍ତ ବିଦ୍ୟାପୀଠର ପରିଚାଳନା କମିଟିର ସଦସ୍ୟ ଭାବେ ୧୯୫୯ ରୁ ମୃତ୍ୟୁ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ। ସେହି ବିଦ୍ୟାଳୟର କିପରି ଉନ୍ନତି ହେବ ତାହା ତାଙ୍କର ଚିନ୍ତା ରାଜ୍ୟରେ ସଦା ସର୍ବଦା ଆଲୋଡ଼ନ ସୃଷ୍ଟି କରୁଥିଲା। ଥରେ

Digitized by srujanika@gmail.com

ରାତିରେ ପରିଚାଳନା କମିଟି ବୈଠକରେ ଯୋଗ ଦେଇ ବିଳମ୍ବିତ ପ୍ରହରରେ ଘରକୁ ଫେରୁଥିବା ସମୟରେ ସେ ରାସ୍ତାରେ ପଡ଼ି ଯାଇ ଅଚେତ ହୋଇ ଯାଇଥିଲେ। କେବଳ ଶିକ୍ଷାର ଉନ୍ନତି କଳ୍ପେ ଯେ ସେ ଚିନ୍ତା କରୁଥିଲେ ତା' ନୁହେଁ, ସାର୍ବଜନୀନ ଉନ୍ନତି ପାଇଁ ଉଦ୍ୟମ କରି ସେ ପିପିଲି ସମବାୟ ସମିତି ଗଠନ କରି ତା'ରି ସଭାପତି ଭାବେ ୧୯୬୬ ମସିହା ଅକ୍ଟୋବର ୧୦ ତାରିଖରୁ ୧୯୭୦ ମସିହା ଏପ୍ରିଲ ୨୫ ତାରିଖ ପର୍ଯ୍ୟନ୍ତ ଦାୟିତ୍ୱ ବହନ କରିଥିଲେ। ସେ ଆହୁରି ମଧ୍ୟ ସାକ୍ଷୀଗୋପାଳ ଆଞ୍ଚଳିକ ସେବା ସମବାୟ ସମିତିର ଅନ୍ୟତମ ସଦସ୍ୟ ଥିଲେ। ପୁରୀ ଜିଲ୍ଲା କୋର୍ଟରେ ମଧ୍ୟ ସେ ଜଣେକ ଜୁରୀ ଭାବେ ଅଧିଷ୍ଠିତ ହୋଇଥିଲେ। ଏହିପରି ଏକ ମହାନ ଓ ମହନୀୟ ବ୍ୟକ୍ତିଙ୍କର ୧୯୭୨ ମସିହା ଅକ୍ଟୋବର ୧୮ ତାରିଖ ଦିନ ପରଲୋକ ଘଟିଥିଲା।

## ନରସିଂହ ଦାସ ଅଗ୍ରୱାଲା

ନରସିଂହ ଦାସ ଅଗ୍ରୱାଲା, ହରିଆନା ପ୍ରଦେଶର ଭୀବାନୀ ଜିଲ୍ଲା ଅନ୍ତର୍ଗତ ଚରଖିଦାଦରା ଗ୍ରାମରେ ୧୯୨୪ ମସିହାରେ ଜନ୍ମ। ପିତାଙ୍କ ନାମ ରାମଜୀଲାଲ ଅଗ୍ରୱାଲା। ୧୯୫୨ ମସିହାରେ ଶ୍ରୀ ଅଗ୍ରୱାଲା ବ୍ୟବସାୟ ଉଦ୍ଦେଶ୍ୟରେ ଓଡ଼ିଶା ଆସନ୍ତି। ପ୍ରଥମେ ସେ କଟଣୀରେ ତାଙ୍କର ବ୍ୟବସାୟ ଆରମ୍ଭ କରିଥିଲେ। କିଛି ଦିନ ପରେ ପିପିଲି ପ୍ରତି ଆକୃଷ୍ଟ ହୋଇ ସେ ପିପିଲିକୁ ତାଙ୍କ ବ୍ୟବସାୟ ସ୍ଥାନାନ୍ତରିତ କରିଥିଲେ। ଏହା ପରେ ପିପିଲିରେ ସେ ସ୍ଥାୟୀ ବାସିନ୍ଦା ହୁଅନ୍ତି। ପିପିଲିରେ ମାରୱାଡ଼ି ସମ୍ପ୍ରଦାୟର ସେ ହେଉଛନ୍ତି ପ୍ରଥମ ବ୍ୟକ୍ତି। ବ୍ୟବସାୟ କରିବା ସଙ୍ଗେ ସଙ୍ଗେ ପିପିଲିର ଉନ୍ନତି କରିବାର ବାସନା ତାଙ୍କର ହୃଦୟରେ କ୍ରମେ ବଳବତୀ ହେବାକୁ ଲାଗିଲା। ସେ ଜବାହର ବିଦ୍ୟାପୀଠ ପରିଚାଳନା କମିଟିର ପ୍ରଥମେ ସଦସ୍ୟ ଓ ପରେ ପରେ ତା'ର ସଭାପତି ପଦରେ ଅଧିଷ୍ଠିତ ହୋଇଥିଲେ। ପିପିଲି ଅଞ୍ଚଳରେ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ସେ ଅକୁଣ୍ଠିତ ଚିତ୍ତରେ ଲୋକମାନଙ୍କୁ ସାହାଯ୍ୟ କରୁଥିଲେ। ନିଜର ଜୀବନ କାଳ ମଧ୍ୟରେ ପିପିଲି ଡ଼ାକ୍ତରଖାନାରେ ଗୋଟିଏ ପ୍ରସୂତି ସଦନ ଖୋଲିବା ପାଇଁ ସେ ବହୁ ବାର ଉଦ୍ୟମ କରିଥିଲେ। ମାତ୍ର ତାହା ଫଳବତୀ ହୋଇ ନଥିଲା। ୧୯୮୩ ମସିହା ସେପ୍ଟେମ୍ବର ୧୩ ତାରିଖ ଦିନ ତାଙ୍କର ମୃତ୍ୟୁ ପରେ ତାଙ୍କର ପୁତ୍ରମାନେ ପିତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ପିପିଲି ଡ଼ାକ୍ତରଖାନାରେ ଏକ ପ୍ରସୂତି ସଦନ ନିର୍ମାଣ କରିଛନ୍ତି। ଏହାକୁ ନରସିଂହ ଦାସ ଅଗ୍ରୱାଲା ପ୍ରସୂତି ସଦନ ନାମରେ ନାମିତ କରା ଯାଇଛି।

Digitized by srujanika@gmail.com

## ନାରାୟଣ ଚନ୍ଦ୍ର ଦାଶ

ନାରାୟଣ ଚନ୍ଦ୍ର ଦାଶଙ୍କର ଘର ସୁମଣା ଶାସନ ଗ୍ରାମରେ। ପିତାଙ୍କ ନାମ ଚିନ୍ତାମଣି ଦାଶ। ନାରାୟଣ ଚନ୍ଦ୍ର ଆରୁହା ପାଟଣାଣୀପୁର ଗ୍ରାମର ବନମାଳୀ ମହାପାତ୍ରଙ୍କ କନ୍ୟା ଲାବନ୍ୟ ଦେବୀଙ୍କୁ ବିବାହ କରିବା ପରେ ନିଜ ଗ୍ରାମ ଛାଡ଼ି ଶ୍ୱଶୁରଙ୍କ ଘରେ ଘର ଜ୍ୱାଇଁଆ ଭାବେ ରହିଥିଲେ। ପୁରୀ ଜିଲ୍ଲା ସ୍କୁଲରେ ନବମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିବା ପରେ ତାଙ୍କ ପଢ଼ାରେ ଇତିଶ୍ରୀ ହୋଇଥିଲା। ତା' ପରେ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ସମୟରେ ମୟୂରଭଞ୍ଜ ଜିଲ୍ଲାର ଅମର୍ଦ୍ଦା ରୋଡ଼ଠାରେ ସେ ଜଣେ କମ୍ପାଉଣ୍ଡର ଭାବେ ଯୋଗ ଦେଇଥିଲେ। ଇତି ମଧ୍ୟରେ ତାଙ୍କ ଶ୍ୱଶୁରଙ୍କର ମୃତ୍ୟୁ ହୁଏ। ଘରେ ଏକାକୀ ଥିବାରୁ ସେ କମ୍ପାଉଣ୍ଡର ଚାକିରୀ ଛାଡ଼ି ଗାଁକୁ ଚାଲି ଆସନ୍ତି। ପରେ ପରେ ସେ ପିପିଲି ବଜାରରେ ଏକ ହୋମିଓପ୍ୟାଥିକ୍ କ୍ଲିନିକ୍ ଆରମ୍ଭ କରିଥିଲେ। ଏହି ସମୟରେ ସେ କଂଗ୍ରେସର ଜଣେ କର୍ମୀ ଭାବେ ଯୋଗ ଦେଇଥିଲେ। ତା' ପରେ ପିପିଲି ଅଞ୍ଚଳରେ ଶିକ୍ଷାର ପ୍ରସାର ଦିଗରେ ସେ ନିଜକୁ ନିୟୋଜିତ କରନ୍ତି। ନିଜର ଶ୍ୱଶୁର ଘର ଆରୁହା ପାଟଣାଣୀପୁର ଗ୍ରାମରେ ସେ ପ୍ରତିଷ୍ଠା କରନ୍ତି ଏକ ପ୍ରାଥମିକ ବିଦ୍ୟାଳୟ। ଉକ୍ତ ଅନୁଷ୍ଠାନ ଓ ପିପିଲି ମିଶନ ସ୍କୁଲର ସମ୍ପାଦକ ରୂପେ ମୃତ୍ୟୁ ପର୍ଯ୍ୟନ୍ତ ସେ ନିଷ୍ଠାପର ଭାବେ ଦାୟିତ୍ୱ ବହନ କରିଥିଲେ। ତାଙ୍କରି ଉଦ୍ୟମରେ ୧୯୫୫ ମସିହାରେ ଦଇସ୍‌ପାଟଣାଠାରୁ ଆରୁହା ପର୍ଯ୍ୟନ୍ତ ଗୋଟିଏ ରାସ୍ତା ନିର୍ମାଣ କରା ଯାଇ ପାରିଥିଲା। ଏହିପରି ଏକ କର୍ମ ମୁଖର ଜୀବନ ଯାପନ କରିବା ପରେ ସେ ଗୁରୁତର ଭାବେ ଅସୁସ୍ଥ ହୋଇ ପଡ଼ିଲେ। ଦୀର୍ଘ ଦିନ ଧରି ଅସୁସ୍ଥ ହୋଇ ଶେଷରେ ୧୯୬୩ ମସିହା ଅଗଷ୍ଟ ୧୪ ତାରିଖ ଦିନ ନିଜର ଝିଅ ଶୈଳବାଳା ତ୍ରିପାଠୀଙ୍କର ଭୁବନେଶ୍ୱରସ୍ଥିତ ବାସଭବନରେ ପ୍ରାଣ ତ୍ୟାଗ କରିଥିଲେ।

## ନାରାୟଣ ସେନାପତି

୧୮୮୦ ମସିହା ଫେବୃୟାରୀ ୨୦ ତାରିଖରେ ମଙ୍ଗଳପୁର ପଞ୍ଚାୟତ ଅନ୍ତର୍ଗତ ସିଂହାରପୁର ଗ୍ରାମରେ ନାରାୟଣ ସେନାପତିଙ୍କର ଜନ୍ମ। ନାରାୟଣ ଥିଲେ ଦାମୋଦର ସେନାପତିଙ୍କର ଜଣେ ଯୋଗ୍ୟ ସନ୍ତାନ। ସେ ଏକାନ୍ତ ଧର୍ମ ପରାୟଣ ବ୍ୟକ୍ତି ଥିଲେ। ନିଜର ଜୀବନ କାଳ ମଧ୍ୟରେ କେତୋଟି ଦେବାଳୟ ସହିତ ଓତପ୍ରୋତ ଭାବେ ଜଡ଼ିତ ଥିବାରୁ ସେ ଅତ୍ୟନ୍ତ ଜନପ୍ରିୟ ହୋଇ ପାରିଥିଲେ। ତନ୍ମଧ୍ୟରୁ ସାକ୍ଷୀଗୋପାଳସ୍ଥିତ ଗୋପାଳଜୀଉ ମନ୍ଦିର ଅନ୍ୟତମ। ଦୀର୍ଘ ୨୫ ବର୍ଷ ଧରି ଉକ୍ତ ମନ୍ଦିରର ଟ୍ରଷ୍ଟି ଭାବେ କାର୍ଯ୍ୟ କରି ପିପିଲି ସମେତ ସାକ୍ଷୀଗୋପାଳ

Digitized by srujanika@gmail.com

ଅଞ୍ଚଳରେ ତାଙ୍କର ଖ୍ୟାତି ପରିବ୍ୟାପ୍ତ ହୋଇପାରିଥିଲା । ସେହି ସମୟରେ ଜୀର୍ଣ୍ଣ ଅବସ୍ଥାରେ ଥିବା ଗୋପାଳଜୀଉ ମନ୍ଦିର ଭୋଗ ମଣ୍ଡପର ସଂସ୍କାର ଆଣି ସେ ଲୋକପ୍ରିୟ ହୋଇ ପାରିଥିଲେ। ସେ ମଧ୍ୟ କଂଗ୍ରେସ ଦଳର ଜଣେ ନିଷ୍ଠାପର ସମର୍ଥକ ଥିଲେ। ନିଜେ ଜଣେ ଜମିଦାର ଥାଇ ମଧ୍ୟ ନିଜ ଅଞ୍ଚଳରେ କୃଷିର କିପରି ବିକାଶ ହୋଇ ପାରିବ ସେଥିପାଇଁ ସେ ଯତ୍ନବାନ ଥିଲେ। ନିଜ ଜମିରେ ନୂଆ ନୂଆ ପନି ପରିବା ଓ ଫସଲ ଚାଷ କରି ସେ ତାହା କରିବାକୁ ଅନ୍ୟ ଚାଷୀମାନଙ୍କୁ ପ୍ରବର୍ତ୍ତାଉଥିବାର ଦେଖା ଯାଉଥିଲା। ଜଣେ ଅଗ୍ରଣୀ ଓ ଲବ୍ଧ ପ୍ରତିଷ୍ଠ ଚାଷୀ ହିସାବରେ ତାଙ୍କର ଖ୍ୟାତି ସମଗ୍ର ପୁରୀ ଜିଲ୍ଲାରେ ପ୍ରସାର ଲାଭ କରିଥିଲା। ସେ ମଧ୍ୟ ଥିଲେ ଜଣେ ଦାନଶୀଳ ବ୍ୟକ୍ତି। ପ୍ରତ୍ୟହ କିଛି ଦାନ ନ କଲେ ସେ ଅନ୍ନ ସ୍ପର୍ଶ କରୁ ନଥିଲେ। ସେଥିପାଇଁ ବହୁ ଦୁଃଖୀ ରଙ୍କୀ ତାଙ୍କ ଘର ଆଗରେ ସମବେତ ହେଉଥିଲେ। ଏହିପରି ଭାବେ ପର ଜୀବନର ପାଥେୟ ରୂପେ ବହୁ ପୁଣ୍ୟ ଅର୍ଜନ କରି ଶେଷରେ ୧୯୬୫ ମସିହା ଡ଼ିସେମ୍ବର ୧୨ ତାରିଖ ଦିନ ୮୫ ବର୍ଷ ବୟସରେ ସେ ତାଙ୍କର ପାର୍ଥିବ ଶରୀର ତ୍ୟାଗ କରିଥିଲେ।

## ପୀତବାସ ପଣ୍ଡା

ଦାଣ୍ଡମୁକୁନ୍ଦପୁର ଗ୍ରାମରେ ୧୯୧୪ ମସିହା ଜୁଲାଇ ମାସ ୧୪ ତାରିଖ ଦିନ ପୀତବାସ ପଣ୍ଡାଙ୍କର ଜନ୍ମ। ପିତାଙ୍କର ନାମ ମଦନ ମୋହନ ପଣ୍ଡା। ମାତ୍ର ୧୪ ବର୍ଷ ବୟସରେ ପିତାଙ୍କୁ ହରାଇଥିବାରୁ ଜୀବନରେ ତାଙ୍କୁ ବହୁ ଘାତ ପ୍ରତିଘାତ ଦେଇ ଗତି କରିବାକୁ ପଡ଼ିଛି। ଅବଶ୍ୟ ସେ ସ୍ୱାଧୀନତା ସଂଗ୍ରାମରେ ଜେଲ ବରଣ କରି ନାହାନ୍ତି, ହେଲେ ସେ ଗାନ୍ଧିଜୀଙ୍କର ଗଠନମୂଳକ କାର୍ଯ୍ୟ ପାଇଁ ଅଧିକ ମନୋନିବେଶ କରିଥିଲେ। ଗାନ୍ଧିଜୀଙ୍କର ପଦଯାତ୍ରା ଓ ବେରବୋଇ ସଭାରେ ସକ୍ରିୟ ଅଂଶ ଗ୍ରହଣ କରି ସେ ଯୁବ ସଂଗଠନର ଦାୟିତ୍ୱ ବହନ କରିଥିଲେ। ତତ୍‌କାଳୀନ ପଞ୍ଚସଖାଙ୍କ ସହ ତାଙ୍କର ନିବିଡ଼ ସମ୍ପର୍କ ଥିଲା। ସେ ମଧ୍ୟ ଥିଲେ ପଣ୍ଡିତ ନୀଳକଂଠ ଦାସଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ। ପଣ୍ଡିତ ଦାସ ଓଡ଼ିଶା ବିଧାନ ସଭାର ବାଚ୍‌ସ୍ପତି ଥିବା ବେଳେ ପୀତବାସ ବାବୁ ଥିଲେ ତାଙ୍କର ବ୍ୟକ୍ତିଗତ ସହାୟକ। ସେ ମଧ୍ୟ ପଣ୍ଡିତ ନୀଳକଂଠ ଦାସଙ୍କଦ୍ୱାରା ପ୍ରତିଷ୍ଠିତ ନବଭାରତ ପ୍ରେସର ମେନେଜର ଭାବେ ୧୯୬୦ ରୁ ୧୯୬୨ ପର୍ଯ୍ୟନ୍ତ କାର୍ଯ୍ୟ କରି ନିଜର ଦକ୍ଷତା ପ୍ରତିପାଦନ କରିଥିଲେ। ଜଣେ କୁଳୀନ ବ୍ରାହ୍ମଣ ହୋଇ ପିପିଲି

Digitized by srujanika@gmail.com

ଅଞ୍ଚଳରେ ବହୁ ମୁସଲମାନ ଓ ଖ୍ରୀଷ୍ଟିୟାନମାନଙ୍କର ସେ ପାରିବାରିକ ବନ୍ଧୁ ଥିଲେ। ଅସ୍ପୃଶ୍ୟତା ବିରୁଦ୍ଧରେ ସେ ହିଁ ପିପିଲି ଅଞ୍ଚଳରେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ। ଏହିପରି ସମାଜସେବା ପାଇଁ ସେ ପୁରୀ ଜିଲ୍ଲାବୋର୍ଡ଼ର ଜଣେ ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ। ନିଜର ଲୋକପ୍ରିୟତା ପାଇଁ ସେ ନିରବଚ୍ଛିନ୍ନ ଭାବେ ଦୀର୍ଘ ୧୮ ବର୍ଷ ଧରି ଦାଣ୍ଡମୁକୁନ୍ଦପୁର ପଞ୍ଚାୟତର ସରପଞ୍ଚ ହୋଇଥିଲେ। ତାଙ୍କରି କର୍ମ ତତ୍ପରତା ପାଇଁ ସେହି ସମୟରେ ଦାଣ୍ଡମୁକୁନ୍ଦପୁର ଏକ ଆଦର୍ଶ ପଞ୍ଚାୟତ ରୂପେ ପୁରସ୍କାର ଲାଭ କରିଥିଲା। ତାଙ୍କରି ନିଷ୍ଠାପର ଉଦ୍ୟମ କ୍ରମେ 'ମା ଚମ୍ପାଦେଈ ସୋସାଇଟି' ସ୍ଥାପିତ ହୋଇ ଏହା ବର୍ତ୍ତମାନ ପିପିଲିର ଏକ ପ୍ରମୁଖ ସୋସାଇଟି ରୂପେ ପରିଗଣିତ ହୋଇଛି। ଗୋପବନ୍ଧୁ ଦାସଙ୍କ ମୃତ୍ୟୁ ପରେ ତାଙ୍କରି ନାମରେ ଥିବା ମଧ୍ୟ ଇଂରାଜୀ ବିଦ୍ୟାଳୟକୁ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କରିବା ଦିଗରେ ପୀତବାସଙ୍କର ଉଲ୍ଲେଖନୀୟ ଭୂମିକା ଥିଲା। ସେ ମଧ୍ୟ ରାମଚଣ୍ଡୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପ୍ରତିଷ୍ଠା ପାଇଁ ଜମି ଦାନ କରିଥିଲେ। ତାହା ଏବେ ୟୁ.ଜି.ଏମ.ଇ. ସ୍କୁଲରେ ପରିଣତ ହୋଇ ପୀତବାସ ବାବୁଙ୍କ ନାମରେ ନାମିତ କରା ଯାଇଛି। ଏହିପରି ଏକ କର୍ମମୟ ଜୀବନ ଯାପନ କରି ୧୯୭୨ ମସିହା ଜୁଲାଇ ମାସ ୧୪ ତାରିଖ ଦିନ ତାଙ୍କର ବୈକୁଣ୍ଠ ବାସ ହୋଇଥିଲା। ସେହି ଦିନଟି ଥିଲା ତାଙ୍କର ୬୮ତମ ଜନ୍ମ ଦିବସ।

## ବାମଦେବ ରଥ

ଯେଉଁ କେତେଜଣ ମୁଷ୍ଟିମେୟ ବ୍ୟକ୍ତି ନିଜର ମହାନ ଅବଦାନ ପାଇଁ ପିପିଲି ଇତିହାସକୁ ମହିମାନ୍ୱିତ କରିଛନ୍ତି, ତନ୍ମଧ୍ୟରୁ ବାମଦେବ ରଥ ଥିଲେ ଅନ୍ୟତମ। ୧୮୯୬ ମସିହା ଜୁଲାଇ ୧୭ ତାରିଖ ଦିନ ତେଇଶପୁର ଗ୍ରାମରେ ତାଙ୍କର ଜନ୍ମ। ତାଙ୍କ ପିତାଙ୍କ ନାମ ଜଗନ୍ନାଥ ରଥ। ବାମଦେବଙ୍କର ଶିକ୍ଷାଗତ ଯୋଗ୍ୟତା ଥିଲା ନିମ୍ନ ପ୍ରାଥମିକ ପାଶ୍। ହେଲେ କ'ଣ ହେବ, ପିପିଲି ଅଞ୍ଚଳରେ ଶିକ୍ଷାର ବିକାଶ ପାଇଁ ସେ ସ୍ୱପ୍ନ ଦେଖୁଥିଲେ ଓ ତାକୁ ଚରିତାର୍ଥ କରିବା ପାଇଁ ନିଜର ଜୀବନ ଉତ୍ସର୍ଗ କରିଥିଲେ। ତାଙ୍କରି ଉଦ୍ୟମରେ ତେଇଶପୁରରେ ଗୋଟିଏ ନିମ୍ନ ପ୍ରାଥମିକ ବିଦ୍ୟାଳୟ, ବାଳିକା ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ପାରିଥିଲା। ବିଭିନ୍ନ ସମୟରେ ସେ ଉକ୍ତ ଶିକ୍ଷାନୁଷ୍ଠାନ ପରିଚାଳନା କମିଟିର ସଭାପତି ଓ ସମ୍ପାଦକର ଗୁରୁ ଦାୟିତ୍ୱ ବହନ କରିଥିଲେ। ସେ ମଧ୍ୟ ଥିଲେ ଦାଣ୍ଡମୁକୁନ୍ଦପୁର ଗୋପବନ୍ଧୁ ମେମୋରିଆଲ ହାଇସ୍କୁଲ ପରିଚାଳନା

Digitized by srujanika@gmail.com

କମିଟିର ଜଣେକ ସକ୍ରିୟ ସଦସ୍ୟ। କେବଳ ସେତିକି ନୁହେଁ; ଜଗନ୍ନାଥ ସଂସ୍କୃତିରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା। ଥରେ ବମ୍ବେ ସମୁଦ୍ର କୂଳରେ ସ୍ୱର୍ଗତ ପଣ୍ଡିତ ସଦାଶିବ ରଥଶର୍ମା ତାଙ୍କ ସହିତ ଜଗନ୍ନାଥ ସଂସ୍କୃତି ଉପରେ ଆଲୋଚ଼ନା ଅବସରରେ ତାଙ୍କର ପାଣ୍ଡିତ୍ୟର ପରିଚ଼ୟ ପାଇ ତାଙ୍କୁ ଆନନ୍ଦରେ କୁଣ୍ଢାଇ ପକାଇଥିବାର ଜଣାଯାଏ। ଏହିପରି ଏକ ଆଦର୍ଶ ଓ ଶୁଦ୍ଧପୂତ ଜୀବନ ଯାପନ କରି ବାମଦେବ ବାବୁ ୧୯୭୯ ମସିହା ଡ଼ିସେମ୍ବର ୩୦ ତାରିଖ ଦିନ ବମ୍ବେସ୍ଥିତ ନିଜର ନାତି ବିଜୟ କୁମାର ଦାସଙ୍କ ବାସ ଭବନରେ ସ୍ୱର୍ଗାରୋହଣ କରିଥିଲେ। ଯଥାର୍ଥରେ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ତେଇଶପୁର ନିମ୍ନ ପ୍ରାଥମିକ, ମଧ୍ୟ ଇଂରାଜୀ ଓ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପରିସର ମଧ୍ୟରେ ଏବେ ତାଙ୍କର ଗୋଟିଏ ପ୍ରତିମୂର୍ତ୍ତି ସ୍ଥାପିତ ହୋଇଛି। ପ୍ରତିମୂର୍ତ୍ତି ଉନ୍ମୋଚ଼ନ ଦିବସରେ ପଣ୍ଡିତ ସଦାଶିବ ରଥଶର୍ମା ଓ ପ୍ରଫେସର ହୃଦାନନ୍ଦ ରାୟ ଯୋଗ ଦେଇ ତାଙ୍କର ସ୍ମୃତି ଚ଼ାରଣ କରିଥିଲେ।

## ଭଗବାନ ମିଶ୍ର

ଭଗବାନ ମିଶ୍ରଙ୍କର ଜନ୍ମ ରୂପଦେଇପୁର ଗ୍ରାମରେ। ତାଙ୍କର ପିତାଙ୍କ ନାମ ମାଧବ ମିଶ୍ର। ପିପିଲି ଅଞ୍ଚଳରେ ଜଣେ ଗାନ୍ଧିବାଦୀ ନେତା ଭାବେ ଭଗବାନ ବାବୁ ଖ୍ୟାତି ଅର୍ଜନ କରିଥିଲେ। ସେ ନିଜେ ଚ଼ରଖାରେ ସୂତା କାଟିବା ସଙ୍ଗେ ସଙ୍ଗେ ତାକୁ ବୟନ କରି ଖଦଡ଼ ବସ୍ତ୍ର ପରିଧାନ କରୁଥିଲେ। ଚ଼ରଖାରେ ସୂତାକଟା ଓ ଖଦଡ଼ ବସ୍ତ୍ର ପରିଧାନ ପିପିଲି ଅଞ୍ଚଳର ଲୋକମାନେ ତାଙ୍କରିଠାରୁ ଶିକ୍ଷା କରିଥିଲେ। ଗାନ୍ଧିଜୀଙ୍କ ଆଗମନ ଉପଲକ୍ଷେ ଆୟୋଜିତ ବେରବୋଇ ସେବାସଂଘ ବୈଠକରେ ପିପିଲି ଅଞ୍ଚଳରୁ ଯୋଗ ଦେଇଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଭଗବାନ ମିଶ୍ର ଥିଲେ ଅନ୍ୟତମ। ଏ ଅଞ୍ଚଳର କୃଷିର ବିକାଶ ପାଇଁ ଲୋକମାନଙ୍କୁ ସଂଗଠିତ କରାଇ ସେ ଭାର୍ଗବୀ ଓ ରତ୍ନଚ଼ିରା ନଦୀ ଦ୍ୱୟକୁ ସଂଯୋଗ କରି ଏକ ନାଳ ଖନନ କରାଇଥିଲେ। ମାତ୍ର କେନାଲ ଖନନ ହେବା ପରେ ଏହି ନାଳର ଅସ୍ତିତ୍ୱ ରହିଲା ନାହିଁ। ଭଗବାନ ବାବୁ ମଧ୍ୟ ରୂପଦେଇପୁର ପଞ୍ଚାୟତର ସରପଞ୍ଚ ଭାବେ ନିର୍ବାଚ଼ିତ ହୋଇଥିଲେ। ତାଙ୍କରି ଉଦ୍ୟମରେ ରୂପଦେଇପୁର ନିମ୍ନ ପ୍ରାଥମିକ ସ୍କୁଲଟି ଉଚ୍ଚ ପ୍ରାଥମିକ ସ୍କୁଲରେ ପରିଣତ ହୋଇଥିଲା। ମୃତ୍ୟୁ ପର୍ଯ୍ୟନ୍ତ ମଧ୍ୟ ସେ ଏହାର ସମ୍ପାଦକ ଭାବେ କାର୍ଯ୍ୟ କରିଥିଲେ। ୧୯୫୩ ମସିହା ବୈଶାଖ ସପ୍ତମୀ ଦିନ ଏହି ମହାନ ପୁରୁଷଙ୍କର ଅକାଳ ବିୟୋଗ ଘଟିଥିଲା।

Digitized by srujanika@gmail.com

## ଯଦୁମଣି କୋଦମାସିଂ

ପୋପରଙ୍ଗା ପଞ୍ଚାୟତ ଅନ୍ତର୍ଗତ ଶୁଆବରେଇ ଗ୍ରାମରେ ୧୯୧୧ ମସିହା ମାର୍ଚ୍ଚ ୧୧ ତାରିଖ ଦିନ ଯଦୁମଣି କୋଦମାସିଂଙ୍କର ଜନ୍ମ। ତାଙ୍କର ପିତାଙ୍କର ନାମ ସତ୍ୟବାଦୀ କୋଦମାସିଂ। ଯଦୁମଣିଙ୍କୁ ପିପିଲି ଅଞ୍ଚଳରେ ସମସ୍ତେ ଶ୍ରଦ୍ଧାରେ 'ଯଦୁ' ବୋଲି ଡ଼ାକି ଥାଆନ୍ତି। ଯଦୁମଣିଙ୍କର ଶିକ୍ଷା ମାଇନର ପାଶ୍ ଓ ଏଥି ସହିତ ସେ ଅମୀନ ଟ୍ରେନିଂ ନେଇଥିଲେ। ମାତ୍ର, ବିଶେଷ କିଛି ଶିକ୍ଷାଗତ ଯୋଗ୍ୟତା ନ ଥିଲେ ମଧ୍ୟ ଜଣେ ଶିକ୍ଷାନୁରାଗୀ ବ୍ୟକ୍ତି ଭାବେ ସେ ପ୍ରତିଷ୍ଠା ଅର୍ଜନ କରି ପାରିଥିଲେ। ପ୍ରଥମେ ନିଜ ଗାଁ ଶୁଆବରେଇର ପିଲାମାନଙ୍କୁ ଶିକ୍ଷା ଦେବା ପାଇଁ ସେ ୧୯୫୯ ମସିହା ଜାନୁୟାରୀ ୨୬ ତାରିଖ ଦିନ ଏକ ପ୍ରାଥମିକ ବିଦ୍ୟାଳୟର ଶୁଭାରମ୍ଭ କରିଥିଲେ। ତା'ର ଦୁଇ ବର୍ଷ ପୂର୍ବରୁ ୧୯୫୭ ମସିହାରେ ପୋପରଙ୍ଗା ପଞ୍ଚାୟତର ଅପ୍ରତିଦ୍ୱନ୍ଦୀ ସରପଞ୍ଚ ଭାବେ ସେ ଅଧିଷ୍ଠିତ ହୋଇଥିଲେ। ଏହାର ପ୍ରଥମ ସରପଞ୍ଚ ଓ ଏହି ପଦବୀରେ ସେ ଏକାଦିକ୍ରମେ ଦୀର୍ଘ ୧୫ ବର୍ଷ ଧରି ରହି ବହୁ ଜନ ହିତକର କାର୍ଯ୍ୟ କରିଥିଲେ। ପୁଣି ପ୍ରାକୃତିକ ବିପର୍ଯ୍ୟୟ ଥିଲା ପଞ୍ଚାୟତର ଚିର ସହଚର। ଏହା ସତ୍ତ୍ୱେ ସେ ୧୯ଟି ଗ୍ରାମକୁ ରାସ୍ତା ଓ ପାନୀୟ ଜଳ ଯୋଗାଇ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ। କୃଷକଙ୍କର ଆର୍ଥିକ ବିକାଶ କଳ୍ପେ ସେ ନିଜ ଗ୍ରାମରେ ୧୯୫୫ ମସିହାରେ ଏକ କୃଷି ଋଣ ସହଯୋଗ ସମିତି ସ୍ଥାପନ କରିଥିଲେ। ତା'ର ମଧ୍ୟ ଦୀର୍ଘ ଦିନ ଧରି ସେ ସଭାପତି ହୋଇଥିଲେ। ଯଦୁ ବାବୁ ଜଣେ ଗାନ୍ଧିବାଦୀ ନେତା ଭାବେ ସୁପରିଚିତ ଥିଲେ। ପୁରୀ ଜିଲ୍ଲାର କେତେ ଜଣ ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରୁ ସେ ଥିଲେ ଅନ୍ୟତମ। ଅନ୍ୟ କେତେ ଜଣଙ୍କ ପରି ସେ ମଧ୍ୟ ଗାନ୍ଧିଜୀଙ୍କର ବେରବୋଇ ସଭାରେ ଯୋଗ ଦେଇଥିଲେ। ଶେଷରେ ୧୯୮୮ ମସିହା ଫେବୃୟାରୀ ୫ ତାରିଖ ଦିନ ୭୭ ବର୍ଷ ବୟସରେ ସେ ମରଶରୀର ତ୍ୟାଗ କରିଥିଲେ। ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ଶୁଆବରେଇ ପ୍ରାଥମିକ ବିଦ୍ୟାଳୟଟି ତାଙ୍କରି ନାମରେ ନାମିତ ହୋଇଛି।

## ଯଦୁମଣି ମିଶ୍ର

ହାଟସାହି ପଞ୍ଚାୟତ ଅନ୍ତର୍ଗତ ବନ୍ତଳସିଂ ଗ୍ରାମରେ ୧୯୦୧ ମସିହା ମେ' ମାସ ଦୁଇ ତାରିଖ ଦିନ ଯଦୁମଣି ମିଶ୍ରଙ୍କର ଜନ୍ମ। ପିତାଙ୍କର ନାମ ନରହରି ମିଶ୍ର ଓ ମାତାଙ୍କର ନାମ ମୋତିଦେବୀ। ଯଦୁ ବାବୁ ଥିଲେ ସତ୍ୟବାଦୀସ୍ଥିତ ଐତିହାସିକ ବନ ବିଦ୍ୟାଳୟର ଛାତ୍ର ଓ ସେହି ଅନୁଷ୍ଠାନରୁ ସେ ମେଟ୍ରିକ୍ ପାଶ୍

Digitized by srujanika@gmail.com

କରିଥିଲେ। ଉକ୍ତ ଅନୁଷ୍ଠାନର ଛାତ୍ର ହୋଇଥିବାରୁ ବାଲ୍ୟାବସ୍ଥାରୁ ଗାନ୍ଧିଜୀ ଓ ଗୋପବନ୍ଧୁଙ୍କର ଆଦର୍ଶରେ ସେ ବିଶେଷ ଭାବେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ। ପିପିଲି ଅଞ୍ଚଳର ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରୁ ସେ ଥିଲେ ଅନ୍ୟତମ। ଗାନ୍ଧିଜୀଙ୍କର ପଦଯାତ୍ରାରେ ଯୋଗଦେବା ସଙ୍ଗେ ସଙ୍ଗେ ବେରବୋଇଠାରେ ଅନୁଷ୍ଠିତ ଗାନ୍ଧୀ ସେବା ସଂଘ ବୈଠକରେ ସେ ଯୋଗ ଦେଇଥିଲେ। ନିଜର ଜୀବନ କାଳ ମଧ୍ୟରେ ସେ ପିପିଲି ଅଞ୍ଚଳର କେତୋଟି ଗଠନ ମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ। ତନ୍ମଧ୍ୟରୁ ପିପିଲିରେ ସ୍ଥାପିତ 'ଲେବର କୋଅପରେଟିଭ ସୋସାଇଟି' ଥିଲା ତାଙ୍କର ଏକ ସ୍ମରଣୀୟ କୃତୀ। ସେ ମଧ୍ୟ ପୁରୀ ଲୋକାଲ ବୋର୍ଡ଼ ଓ ଦାଣ୍ଡମୁକୁନ୍ଦପୁରସ୍ଥିତ ଗୋପବନ୍ଧୁ ମେମୋରିଆଲ ହାଇସ୍କୁଲ ପରିଚାଳନା କମିଟିର ଜଣେ ସକ୍ରିୟ ସଦସ୍ୟ ଥିଲେ। ଏହିପରି ଏକ ପବିତ୍ର ଜୀବନ ଯାପନ କରି ସେ ୧୯୮୪ ମସିହା ଏପ୍ରିଲ ୨୯ ତାରିଖ ଦିନ ମୃତ୍ୟୁ ବରଣ କରିଥିଲେ। ସେତେବେଳେ ତାଙ୍କୁ ୮୩ ବର୍ଷ ବୟସ ହୋଇଥିଲା।

## ରାଜ କିଶୋର ପଟ୍ଟନାୟକ

ରୂପଦେଇପୁର ପଞ୍ଚାୟତ ଅନ୍ତର୍ଗତ କମାକଣ୍ଠିଆ ଗ୍ରାମରେ ୧୯୧୧ ମସିହାରେ ରାଜ କିଶୋର ପଟ୍ଟନାୟକଙ୍କର ଜନ୍ମ। ସେ ଥିଲେ ଜଗତାନନ୍ଦ ପଟ୍ଟନାୟକଙ୍କର ପୁତ୍ର ଓ ବିଶିଷ୍ଟ ଜମିଦାର ଗୋବର୍ଦ୍ଧନ ପଟ୍ଟନାୟକଙ୍କର ନାତି। ରାଜ କିଶୋରଙ୍କର ଶିକ୍ଷାଗତ ଯୋଗ୍ୟତା ଥିଲା ମି.ଇ. ପାଶ୍। ଜଣେ ଶିକ୍ଷାନୁରାଗୀ ଓ ପରୋପକାରୀ ବ୍ୟକ୍ତି ଭାବେ ସେ ପିପିଲି ଅଞ୍ଚଳରେ ଅତ୍ୟନ୍ତ ଲୋକପ୍ରିୟ ଥିଲେ। ସେ ରୂପଦେଇପୁର ପଞ୍ଚାୟତର ପ୍ରଥମ ସରପଞ୍ଚ ହେବାର ସୌଭାଗ୍ୟ ଅର୍ଜନ କରି ପାରିଥିଲେ। ତାଙ୍କରି ନିଷ୍ଠାପର ଉଦ୍ୟମ ବଳରେ କମାକଣ୍ଠିଆ ଗ୍ରାମରେ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଓ ଡ଼ାକ ଘର ସ୍ଥାପିତ ହୋଇ ପାରିଥିଲା। ସେ ଥିଲେ ଗୋ ସଂପଦର ଜଣେ ପ୍ରମୁଖ ପ୍ରବକ୍ତା। ''ଗୋ ଜାତିର ସମୃଦ୍ଧି ବିନା ଦେଶର ବିକାଶ ଅସମ୍ଭବ''- ଗ୍ରାମରୁ ଗ୍ରାମ ଯାଇ ଏହି ଉକ୍ତିର ମର୍ମ ପ୍ରଚାର କରିବା ଫଳରେ ଲୋକମାନଙ୍କ ହୃଦୟରେ ଏକ ନୂତନ ଚେତନା ସୃଷ୍ଟି ହୋଇ ପାରିଥିଲା। ବହୁ ବାର ସେ ପିପିଲି, ଦାଣ୍ଡମୁକୁନ୍ଦପୁର, ରୂପଦେଇପୁର ଓ ମଙ୍ଗଳପୁରଠାରେ ସରକାରଙ୍କର ସହାୟତାରେ ଗୋ ପ୍ରଦର୍ଶନୀ କରାଇ ଲୋକମାନଙ୍କୁ ଗୋପାଳନ ଦିଗରେ ପ୍ରୋତ୍ସାହିତ କରାଇଥିଲେ। ତାଙ୍କରି ଉଦ୍ୟମରେ ପିପିଲିରେ ଏକ ପଶୁ ଡ଼ାକ୍ତରଖାନା ପ୍ରତିଷ୍ଠା କରା ଯାଇ ପାରିଥିଲା। ସେ ମଧ୍ୟ ନିଜେ ଥିଲେ ଜଣେ ବରିଷ୍ଠ କୃଷକ।

Digitized by srujanika@gmail.com

କଦଳୀ ଚାଷ କରିବା ଦିଗରେ ପୁରୀ ଜିଲ୍ଲାରେ ସେ ପ୍ରଥମ ସ୍ଥାନ ଅଧିକାର କରି ପାରିଥିଲେ। ଜଗନ୍ନାଥ ସଡ଼କରୁ ଦୁର୍ଗାଦାସପୁର ଦେଇ ମଉଛୀବେଗ ଗ୍ରାମ ପର୍ଯ୍ୟନ୍ତ ପଡ଼ିଥିବା ରାସ୍ତାଟି ରାଜୁ ବାବୁଙ୍କର ଏକ ଅମ୍ଳାନ କୀର୍ତ୍ତି। ସେ ମଧ୍ୟ କଂଗ୍ରେସ ଦଳର ଜଣେ ସକ୍ରିୟ କର୍ମୀର ଭୂମିକା ଗ୍ରହଣ କରିଥିଲେ। ଏହିପରି ଜଣେ ପ୍ରତିଭାବାନ ବ୍ୟକ୍ତିଙ୍କୁ ୧୯୭୩ ମସିହା ପ୍ରଥମାଷ୍ଟମୀ ଦିନ ଚିରଦିନ ପାଇଁ ପିପିଲି ହରାଇ ବସିଥିଲା।

## ସେକ୍ ଅବଦୁଲ୍ଲା

ସେକ୍ ଅବଦୁଲ୍ଲାଙ୍କ ଘର ପିପିଲି ଏନ୍.ଏ.ସି. ର ଭବାନୀପୁର ମୌଜାରେ। ପିତାଙ୍କ ନାମ ସେକ୍ ସାବୁଦ୍ଦିନ। ପିପିଲିବାସୀ ଶ୍ରଦ୍ଧାରେ ସେକ୍ ଅବଦୁଲ୍ଲାଙ୍କୁ ପାପୁ ମିଆଁ ବୋଲି ଡାକୁଥିଲେ। ସେତେବେଳର ସେ ଥିଲେ ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି। ପାଟନା ବିଶ୍ୱବିଦ୍ୟାଳୟରୁ ଏଫ୍.ଏ. ପାଶ୍ କରି ୧୯୨୭ ମସିହାରେ ସେ ବନ ବିଭାଗରେ ଚାକିରୀ କରିଥିଲେ। ୧୯୫୭ ମସିହାରେ ସରକାରୀ ଚାକିରୀରୁ ଅବସର ନେଇ ସେ ପିପିଲିର ପ୍ରଥମ ସରପଞ୍ଚ ଭାବେ ନିର୍ବାଚିତ ହୋଇଥିଲେ। ସେ ୧୯୫୮ ମସିହା ଅଗଷ୍ଟ ୧୨ ତାରିଖ ଦିନ ପିପିଲିର ପ୍ରମୁଖ ଶିକ୍ଷାନୁଷ୍ଠାନ ଜବାହର ବିଦ୍ୟାପୀଠ ପାଇଁ ଏକ ଏକର ୨୦ ଡେସିମିଲ ଜମି ଦାନ କରିଥିଲେ। ପିପିଲିରେ ସାଂପ୍ରଦାୟିକ ସଦ୍‌ଭାବ ରକ୍ଷା ପାଇଁ ସେ ବହୁ ହିନ୍ଦୁ ଧର୍ମାନୁଷ୍ଠାନରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ। ନିଜର ବଗିଚାରେ ବିଭିନ୍ନ ପ୍ରକାରର ଫଳ ଚାଷ କରି ସେ ପିପିଲି ଅଞ୍ଚଳରେ ଜଣେ ଫଳଚାଷୀ ଭାବେ ସୁପରିଚିତ ଥିଲେ। ସରପଞ୍ଚ ଥିବା ଅବସ୍ଥାରେ ୧୯୬୦ ମସିହା ଅକ୍ଟୋବର ୬ ତାରିଖ ଦିନ ପିପିଲି ଅଧିବାସୀ ତାଙ୍କର ପ୍ରିୟ ପାପୁ ମିଆଁଙ୍କୁ ହରାଇ ବସିଲେ।

ଏହା ହେଉଛି ପିପିଲି ଅଞ୍ଚଳର କୃତୀ ସନ୍ତାନମାନଙ୍କ ବିଷୟରେ ଏକ ସଂକ୍ଷିପ୍ତ ବିବରଣୀ।

□ □ □

Digitized by srujanika@gmail.com



ପୁସ୍ତକର ଲେଖକ ଡ଼କ୍ଟର ଜଗନ୍ନାଥ ପଟ୍ଟନାୟକ ଜଣେ ବିଶିଷ୍ଟ ଐତିହାସିକ ଭାବେ ସୁବିଦିତ। ଜନ୍ମ ୧୯୩୩ ମସିହା ମାର୍ଚ୍ଚ ୧୫ ତାରିଖ ଭଦ୍ରକ ଜିଲ୍ଲା ଅନ୍ତର୍ଗତ ବାସୁଦେବପୁର ଥାନାର ରାଧାବଲ୍ଲଭପୁର ଗ୍ରାମରେ। ପିତାଙ୍କ ନାମ ଭୋଳାନାଥ ପଟ୍ଟନାୟକ ଓ ମାତାଙ୍କ ନାମ ରତ୍ନାମଣି ଦେବୀ।

୧୯୫୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି - ସେହିବର୍ଷ ରେଭେନ୍ସା ମହାବିଦ୍ୟାଳୟର ଇତିହାସ ବିଭାଗରେ ଅଧ୍ୟାପକଭାବେ ନିଯୁକ୍ତି। ପରେ ପରେ ବହୁ ସରକାରୀ ମହାବିଦ୍ୟାଳୟରେ ଅବସ୍ଥାପିତ। ୧୯୭୦ ମସିହାରେ ପ୍ରାଧ୍ୟାପକ ପଦବୀକୁ ଉନ୍ନୀତ। ୧୯୮୮ରେ ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗର ପ୍ରଫେସର ଭାବେ ନିଯୁକ୍ତି। ଅଧୁନା ଇତିହାସ ବିଭାଗର ମୁଖ୍ୟଭାବରେ ଅଧିଷ୍ଠିତ। ଫିଉଡ଼ାଟାରୀ ଷ୍ଟେଟ୍ସ ଅଫ ଓଡ଼ିଶା ଅଣ୍ଡର ଦି ବ୍ରିଟିଶ ରୁଲ ବିଷୟରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡ଼ି.ଲିଟ୍. ଡ଼ିଗ୍ରୀ ଲାଭ।

୩ଟି ଆନ୍ତର୍ଜାତିକ, ୮ଟି ଜାତୀୟ ଓ ୧୪ଟି ଆଲୋଚନାଚକ୍ରରେ ଯୋଗଦାନ ଓ ସନ୍ଦର୍ଭପାଠ। ତାଙ୍କର ୪୦୦ ଟି ନିବନ୍ଧ ବହୁ ପ୍ରତିଷ୍ଠିତ ପତ୍ର-ପତ୍ରିକାରେ ପ୍ରକାଶିତ। ଆକାଶବାଣୀ କଟକ, କେଉଁଝର, ଓଡ଼ିଶାର ଦୂରଦର୍ଶନରେ ସନ୍ଦର୍ଭପାଠ ଓ ଆଲୋଚନା ଚକ୍ରରେ ଅଂଶଗ୍ରହଣ - ଦୂରଦର୍ଶନରେ ପ୍ରଚାର ପାଇଁ ଚଳଚିତ୍ରପାଇଁ ତଥ୍ୟ ଯୋଗାଣ।

ବିଭିନ୍ନ ସମୟରେ ଇଣ୍ଡିଆନ ଏକାଡ଼େମି ଅଫ ସୋସିଆଲ ସାଇନସର ସଭ୍ୟ, ଓଡ଼ିଶା ଇତିହାସ କଂଗ୍ରେସର ସମ୍ପାଦକ, ସଭାପତି, ଭାରତ ଇତିହାସ କଂଗ୍ରେସର ସଭ୍ୟ, ଓରିଶାନ ଇନଷ୍ଟିଚ୍ୟୁଟ ଅଫ ସାଉଥ ଇଷ୍ଟ ଏସିଆ ଏଣ୍ଡ ମେରିଟାଇମ ଷ୍ଟଡ଼ିଜର କାର୍ଯ୍ୟକାରୀ ସଦସ୍ୟ, ନୀଳକଣ୍ଠ ଦାସ ଗବେଷଣା ପ୍ରତିଷ୍ଠାନର କାର୍ଯ୍ୟକାରୀ କମିଟି ସଭ୍ୟ ଓ ବହୁ ସାଂସ୍କୃତିକ ସଂସ୍ଥା ସହିତ ସଂପୃକ୍ତ।

ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ପ୍ରାବନ୍ଧିକ ଓ ସମାଲୋଚକ ଭାବେ ୧୯୯୩ରେ ରକ୍ତତୀର୍ଥ ଇରମ ପୁସ୍ତକପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ। ଖୋର୍ଦ୍ଧା ସାହିତ୍ୟ ସଂସଦ, କେଦାରନାଥ ଗବେଷଣା ପ୍ରତିଷ୍ଠାନ, ବାଲେଶ୍ୱରର ବାର୍ତ୍ତା ପ୍ରତିଷ୍ଠାନ, ଜଗନ୍ନାଥ ପାଣି ସ୍ମୃତି ସଂସଦ ଓ ବାସୁଦେବପୁରସ୍ଥିତ 'ସୃଷ୍ଟି ଓ ସ୍ରଷ୍ଟା' ଦ୍ୱାରା ସମ୍ବର୍ଦ୍ଧିତ।

Digitized by srujanika@gmail.com